

# ସିଂହଭୂମିର ଗୋପବନ୍ଧୁ

ଲକ୍ଷ୍ମୀଧର ଷଡ଼ଙ୍ଗୀ

# ସିଂହଭୂମିର ଗୋପବନ୍ଧୁ

ଲକ୍ଷ୍ମୀଧର [illegible]

ଦୀପ୍ତି ବୁକ୍ସ
କଶୋଶ୍ୱ ଭବନ
ପୋ: ଜଟଣୀ ଜି: ପୁରୀ
ଫୋନ—ଜଟଣୀ : ୭୩

ଲେଖକ :

ଲକ୍ଷ୍ମୀଧର ନାୟକ

ଯଶୋଶ୍ରୀ ଭବନ
ଜଟଣୀ, ଜି: ପୁରୀ
ଫୋନ : ଜଟଣୀ ୬୩

ପ୍ରଥମ ପ୍ରକାଶ :
୯ ଅକ୍ଟୋବର ୧୯୭୭

ପ୍ରକାଶକ :
**ଦୀପ୍ତି ବୁକ୍ସ**
ପୋ: ଜଟଣୀ, ଜି: ପୁରୀ

ମୁଦ୍ରଣ :
**ଲକ୍ଷ୍ମୀ ଆର୍ଟ ପ୍ରେସ୍**
ଜଟଣୀ ଜି: ପୁରୀ

ମୂଲ୍ୟ – ପନ୍ଦର ଟଙ୍କା

**SINGHBHUMI-RA GOPABANDHU**

by Laxmidhar Nayak

**1st Edition 9th. October 1977**

**Publisher .**

**DIPTI BOOKS.**
**JATNI, Puri.**

**Price Rs. 15 - 00**

## ॥ ଟିକିଏ ସୂଚନା ॥

ବହିଟିର ଲେଖା ଆରମ୍ଭ କରିଥିଲି ଜାମସେଦ୍‌ପୁରଠି ।

'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ'ର ୧୯୭୬ ମସିହା ବାର୍ଷିକ ଅଧିବେଶନଟି 'ଗୋପବନ୍ଧୁ-ଜନ୍ମ-ଶତ-ବାର୍ଷିକୀ' କାର୍ଯ୍ୟ-କ୍ରମ ଉପରେ ଆଧାରିତ ହେବ, ଏବଂ ସେଇ ଅବକାଶରେ 'ସିଂହଭୂମିର ଗୋପବନ୍ଧୁ' ବହିଟି ପ୍ରକାଶ ପାଇବ ଏଇ ବ୍ୟବସ୍ଥା କରିରଖିଥିଲି । କିନ୍ତୁ ଘଟଣା-ଚକ୍ରରେ ଜିଲ୍ଲା-ସ୍ତରୀୟ 'ସିଂହଭୂମି ଗୋପବନ୍ଧୁ-ଜନ୍ମ-ଶତବାର୍ଷିକୀ କମିଟି ଯେତେବେଳେ ଗଢ଼ାହେଲା ଏବଂ ମୁଁ ପ୍ରଥମରୁ ସ୍ଥିର କରିଥିବା ସେଇ ନଭେମ୍ବର ମାସଟିରେ ମଧ୍ୟ ଜିଲା-ସ୍ତରୀୟ ଅଧିବେଶନ ହେବ ବୋଲି ନିଷ୍ପତ୍ତି ନିଆଗଲା, 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ' ଅଧିବେଶନଟିକୁ ଘୁଞ୍ଚେଇ ଦେବା ପାଇଁ ଅନୁରୋଧ ଆସିଲା । ଜିଲା-ସ୍ତରୀୟ କମିଟିରେ ମତେ ଉପ-ସଭାପତି ଭାବରେ ରଖାଯାଇଥିବାରୁ ଏ ପ୍ରସ୍ତାବରେ ରାଜି ହେବା ଛଡ଼ା ଅନ୍ୟ ଉପାୟ ନଥିଲା । ଯଦି ଓ ଗୋପବନ୍ଧୁ-ଜନ୍ମ-ଶତବାର୍ଷିକୀରେ ଯେତେ ସଭା ସମିତି ଘନ ଘନ ହୋଇ ପାରିଥାଆନ୍ତା, ପ୍ରକୃତ କାର୍ଯ୍ୟଟି ସେତେ ଭଲ ହୋଇଥାଆନ୍ତା ।

ଅଥଚ ଜିଲା-ସ୍ତରୀୟ ସଭାଟି ନଭେମ୍ବରରେ ହେବା ପରିବର୍ତ୍ତେ ଡେରି ହେଇ ହେଇ ଶେଷକୁ ମାର୍ଚ୍ଚରେ ଯାଇଁ ପହଞ୍ଚିଲା ଏବଂ ଘଟଣା-ଚକ୍ରରେ ମତେ ସେ କାର୍ଯ୍ୟକ୍ରମରେ ଭାଗ ନେବା ପାଇଁ ଯଥେଷ୍ଟ ସୁଯୋଗ ବି ଆଉ

ଦିଆ ଗଲା ନାହିଁ । ଦିଆ ଯାଇଥିଲେ ଏ ବହିଟିର 'ଉନ୍ମୋଚନ' ଉତ୍ସବ ସେଇ ଅଧିବେଶନରେଇ ହୋଇ ଥାଆନ୍ତା । ଗୋପବନ୍ଧୁଙ୍କ 'ନଚିକେତା' ଉପାଖ୍ୟାନକୁ ନେଇ ଯେଉଁ ନାଟକଟି ଲେଖିଥିଲି, ବିଚିତ୍ରା କାର୍ଯ୍ୟକ୍ରମରେ ଦେଖାଇବା ପାଇଁ···ତା ବି କଳ୍ପନାରେ ଇ ରହିଗଲା ।

ମାର୍ଚ୍ଚ ପରେ ଏ ଲେଖାଟିକୁ ପୁଣି ବର୍ଦ୍ଧିତ ତତ୍ପରତାରେ ଆରମ୍ଭ କଲି । ଲେଖା ଶେଷ୍ ହେବ ଏବଂ ଜନ୍ମ-ଶତ-ବାର୍ଷିକୀର ଉଦ୍ଯାପନ ଦିନରେ ଅନ୍ତତଃ ପ୍ରକାଶ ପାଇ ପାରିବ, ଏ ବିଶ୍ୱାସ ଏକା ପ୍ରକାର ନ ଥିଲା । ଯା' ହେଉ ତା' ଯେ ସମ୍ଭବ ହୋଇ ପାରିଲା ସେଥିପାଇଁ ପ୍ରଥମେ ଧନ୍ୟବାଦ ଦେବି ଜାମସେଦ୍‌ପୁରରେ ମୋର ବନ୍ଧୁ ଶ୍ରୀଯୁକ୍ତ ରଘୁନାଥ ମିଶ୍ରଙ୍କୁ । କାରଣ ବହିଟିର ଲେଖା ଶୀଘ୍ର ଶୀଘ୍ର ସାରି ଦେବାକୁ ରଘୁବାବୁ ବରାବର ମନେ ପକାଇ ଦେଉଥିଲେ ।

ଶେଷରେ ସବୁଜ ଯୁଗର ପ୍ରବୀଣ ସାହିତ୍ୟିକ, ପାଟନା ହାଇକୋର୍ଟର ଅବସର-ପ୍ରାପ୍ତ ବିଚାରପତି ଶ୍ରୀଯୁକ୍ତ ହରିହର ମହାପାତ୍ର ଏକ ସାକ୍ଷାତକାରରେ ମୋର ବହୁ ପ୍ରଶ୍ନର ଉତ୍ତର ଦେଇଥିବାରୁ ସେଥିପାଇଁ ଏଇ ସୁଯୋଗରେ ତାଙ୍କୁ ମଧ୍ୟ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ତା ୯ । ୧୦ । ୭୭
କଣୋଣ୍ଣ ଭବନ
ପୋ: ଜଟଣୀ (ପୁରୀ)
ଫୋନ—ଜଟଣୀ : ୬୩

# ସୂଚୀ-ପତ୍ର

| ପୃଷ୍ଠା | ବିଷୟ |
| --- | --- |
|  |

## ॥ ମୋ ସ୍ମୃତିରେ ଏବେ ବି ଜାଗ୍ରତ ॥

ସିଂହଭୂମିର ଗୋପବନ୍ଧୁ !

ଗୋପବନ୍ଧୁଙ୍କର ଅନ୍ୟ ନାମ 'ଉତ୍କଳମଣି' !!

ଯେ' ଉତ୍କଳର ମଣି ତାଙ୍କୁ ଖୁବ୍ ହେଲେ ସିଂହଭୂମିର ମଜଡ଼ମଣି ବୋଲି କୁହାଯାଇପାରେ, ଏକ ସାହିତ୍ୟିକ ଉଚ୍ଛ୍ୱାସରେ, କିନ୍ତୁ ତାଙ୍କୁ ସିଧାସଳଖ ସିଂହଭୂମିର ଗୋପବନ୍ଧୁ ବୋଲି କହିବ କେମିତି ?

ସୁଆଣ୍ଡୋ ଗ୍ରାମ ସିଂହଭୂମିଠୁ ଶହଶହ ମାଇଲ ଦୂରରେ । ସେଠି ଜନ୍ମ ହୋଇ, ଓଡ଼ିଶାର ଦେଢ଼ କୋଟି ଲୋକଙ୍କ ପାଇଁ ଯେ' ଏତେ ଭାବିଥିଲେ ଏତେ କରିଥିଲେ, ସେ ମାତ୍ର ଦେଢ଼ ଲକ୍ଷ ଲୋକଙ୍କର ସ୍ୱାର୍ଥ-ସର୍ବସ୍ୱ ବ୍ୟକ୍ତି, ସିଏ' କେମିତି ହୋଇପାରିବ ?

ଏ ଜାତିର ପ୍ରତିଟି କାର୍ଯ୍ୟରେ, ବନ୍ୟା, ଦୁର୍ଭିକ୍ଷ, ଶିକ୍ଷା, ଯାହା କୁହ, ଦେଶମିଶ୍ରଣଠୁ ନେଇ କଂଗ୍ରେସର ଆନ୍ଦୋଳନ ପର୍ଯ୍ୟନ୍ତ, ସବୁଥିରେ ଯେ' ଏତେ ନେତୃତ୍ୱ ନେଇଥିଲେ, ସାଂସ୍କୃତିକ ବିକାଶର ପୁରୋଧା ଭାବରେ ଏକ ନୂତନ ଧାରାର ପ୍ରବର୍ତ୍ତକ ଥିଲେ, ସେ ମାତ୍ର ଗୋଟିଏ ବିଚ୍ଛିନ୍ନ ଅଞ୍ଚଳର ଏକାନ୍ତ 'ପ୍ରାଣ-ପୁରୁଷ' ଇଏତ ଏକ ଅପରିମାଣଦର୍ଶୀର ଉଦ୍ଭଟ ଚିନ୍ତା !

ଓଡ଼ିଆ ମାତ୍ରେଇ ହସିବେ । କହିବେ, ଯୁକ୍ତି କ'ଣ ?

ତର୍କ କରିପାରିବନି ନିଶ୍ଚୟ । ହେଲେ କହିବି ପାରିବ, ମୋ ପାଇଁ, ସେ ଥିଲେ ଖାସ୍ ସିଂହଭୂମିର ! 'ସିଂହଭୂମିର ଗୋପବନ୍ଧୁ' ।

ଯାହାଙ୍କୁ ପିଲାବେଳେ ଏଇଠି ଦିନେ ଦେଖିଥିଲି, ଅଥଚ ତା' ପରଠୁ ଗଲା ପଚିଶ ବର୍ଷ ଭିତରେ ଓଡ଼ିଶାର ଗୃହଆଡ଼େ ଖୋଜି ଖୋଜି ହତାଶ ହେଇଚି, କୋଉଠି ପାଇନି, ସେ ତ ମୋ ପାଇଁ ଏକ 'ପରମ-ପୁରୁଷ' । ଏଇ ସିଂହଭୂମିର ମାଟିରେ, ତାଙ୍କର ସାକ୍ଷାତ ମୋ ପାଇଁ ତ ଏକ ଶାଶ୍ୱତ ଅନୁଭୂତିର କଥା !!

ଏଇଠି ସେ ମୋ ପାଇଁ ଯେତେ ସତ୍ୟ ଆଉ ପ୍ରତ୍ୟକ୍ଷ, ତା' କ'ଣ ପୁରୀ, କଟକ, ବାଲେଶ୍ୱରରେ କେଉଁଠି ସମ୍ଭବ ?

ଯେତେ ଅପ୍ରିୟ ହେଲେ ବି କହିବି, ଓଡିଶାର ପ୍ରାଣକେନ୍ଦ୍ର କଟକରେ, ସେ କେବଳ ନେତାଙ୍କର ବକ୍ତୃତା-ସର୍ବସ୍ୱ । ଅଥଚ ସିଂହ-ଭୂମିର ଜନମାନସରେ ସେ ଆରାଧ୍ୟ ଦେବତା । 'ଗୋପବନ୍ଧୁ ବାଗ୍'ରେ ସେ ଏକ ନିଶ୍ଚଳ ମୂର୍ତ୍ତି, କିନ୍ତୁ ସିଂହଭୂମିର ଘରେ ଘରେ ସେ ଜୀବନ୍ତ ଭବ-ମୂର୍ତ୍ତିର ଏକ ସଦା-ଜାଗ୍ରତ ଆତ୍ମା !

ଓଡିଶାରେ ତାଙ୍କୁ ଖୋଜିବାକୁ ପଡେ । ଏଠି ସେ ନିଜେ ଧରା ଦିଅନ୍ତି । ତାଙ୍କର ସ୍ମୃତି-ରୂପ ଏଠି ଯେମିତି ପରିକ୍ରମା କରୁଚି ଚକ୍ରଧରପୁରଠୁ ବହଡାଗୋଡା, ପଞ୍ଚରୁଳିଆଠାରୁ ପୋଡ଼ାହାଟ । ସେ ପରିକ୍ରମାର ଶେଷ୍ ନାହିଁ ଯୁଗ ଯୁଗ ଧରି ।

ଯୋଉଠି ସେ ସବୁଦିନ ଯାଉଛନ୍ତି ସେଠି ସେ ଆଉ ନାହାନ୍ତି । ଯୋଉଠି ତାଙ୍କ କଲା କାମ ଲୋପ ପାଇ ଆସୁଚି, ସେଇଠି ତାଙ୍କର ନିଃଶବ୍ଦ ପଦକ୍ଷେପ । ସେଇଠି ତାଙ୍କର କରୁଣ ଦୀର୍ଘଶ୍ୱାସ !!

ଏଇଠି ସେ 'ସ୍ମୃତି'ରେ ସାକାର । ଏଇଠି ସେ ଅମର···ମୃତ୍ୟୁର ନିର୍ବାଣରେ ।

ଏଇଠି ତାଙ୍କ ଚିନ୍ତା ମୋ ପାଇଁ ମହାର୍ଘ ! ଏଇଠି ତାଙ୍କ ବାଣୀ ମୋ ପାଇଁ ମହତ୍ତ୍ୱ !

ସେଇଥି ପାଇଁ ଲେଖିଲି 'ସିଂହଭୂମିର ଗୋପବନ୍ଧୁ' । ଯିଏ ଯାହା କହୁ, ଯିଏ ଯାହା ଭାବୁ ।

ଥରେ ପଢ଼ିଲାପରେ ମନେ ହେଉଛି କୋଉଠି ଜଣେ ଇଂରେଜୀ ଲେଖକର ଗୋଟିଏ ଧାଡ଼ି ' under an English sky ' ! ପଢ଼ିସାରି ଭାବିଥିଲି ଏ' କ'ଣ ? ଶୂନ୍ୟ ଆକାଶ ! ଅପରସୀମ ! ତାକୁ ପୁଣି ବିଭକ୍ତ କରି ଖଣ୍ଡ ଖଣ୍ଡ କରି କାଟି, ସେଠି ଇଂଲଣ୍ଡର ଏକଚାଟିଆ ଅଧିକାରକୁ ଦାବୀ କରିଛନ୍ତି କିପରି ଲେଖକ ? ପରେ ବୁଝିଲି, ଇଏ ଖୁବ୍ ଖାଣ୍ଟି କଥା । ଭଲ ପାଇବାର ଭାଷା ତ ସବୁଦିନ ଏକଚାଟିଆ !!

ଏଇ ଦୃଷ୍ଟିରୁ ମୁଁ ବି ଯଦି ଗୋପବନ୍ଧୁଙ୍କୁ ଖାସ୍ ସିଂହଭୂମିର ବୋଲି କହି ପକେଇଥାଏ, କ୍ଷତି କ'ଣ ?

ହଁ, କହିବ, ହେଲେ ତାଙ୍କର ବିରାଟ ବ୍ୟକ୍ତିତ୍ୱକୁ ତ ମୁଁ ଖର୍ବ କରିନାଇ । ସିଂହଭୂମିର ଏକଚାଟିଆ ଅଧିକାରକୁ ବଜ୍ଞପିତ କରିଛି ଅବଶ୍ୟ, ହେଲେ ତାଙ୍କର ସର୍ବ-ଉତ୍କଳୀୟ ମହତ୍ତ୍ୱକୁ ତ ନ୍ୟୁନ କରି ଦେଖେଇ ନାଇ । ଆକାଶ ଅପରସୀମ ବୋଲି ତ ଗୋଟିଏ ମୁଠାରେ ତାକୁ ଧରି ରଖିବାର ଏମିତି ପ୍ରୟାସ । ଗୋପବଂଧୁ ସାରା ଉତ୍କଳର ବୋଲି ତ, ଏ ଲେଖକ ତାଙ୍କୁ ଗୋଟିଏ ଜିଲାର ଚୌହଦୀ ଭିତରେ ଆବଦ୍ଧ କରି ନିଜର ବୋଲି ଜାବୁଡ଼ି ଧରି ନାଚିବାକୁ ଏମିତି ଅସ୍ଥିର !!

ଜାମସେଦ୍‌ପୁରରେ ଦେଖିଥିଲି ଗୋପବଂଧୁଙ୍କୁ, ପିଲାଦିନେ । ମୁଁ ପୁରୀ ଜିଲାର ଲୋକ । ଡେଲାଙ୍ଗ ଆଖ ପାଖ ଗାଁ ଗୁଡ଼ୁପାଇଲୋରେ ଜନ୍ମ ହୋଇଥିଲି । କିନ୍ତୁ ଜାମସେଦପୁରରେ ରହିଥିଲି ସେଇ ଗୃରିବର୍ଷ ଦିନୁ ।

ମତେ ଯେତେବେଳେ ଏଗାର କି ବାର, ଗୋପବନ୍ଧୁଙ୍କୁ ଦେଖିଥିବା ଘଟଣାଟି ସେଇ ସମୟର ।

ପୁଣି ଏକା ଗୋପବଂଧୁଙ୍କୁ ନୁହେଁ, ତାଙ୍କ ସାଙ୍ଗରେ ଦୀନବଂଧୁ ଆଣ୍ଡ୍ରୁଜଙ୍କୁ ମଧ୍ୟ ।

କୋଉ ସାଲ କଥା, ଠିକ୍ କହି ପାରିବିନି । ତେବେ ୧୯୨୫ କଥା ହୋଇପାରେ ।

ଯେତେବେଳେ ବ୍ରହ୍ମଗିରିଠାରେ ଭାର୍ଗବୀ ନଦୀରେ ପ୍ରବଳ ବଢ଼ି ଆସି ଘର ଦ୍ୱାର, ଫସଲ ସବୁ ନଷ୍ଟ ହୋଇଯାଇଥିଲା । ଗୋପବଂଧୁ ମହାତ୍ମା ଗାନ୍ଧିଙ୍କ ପାଖକୁ ଚିଠି ଲେଖିଥିଲେ । ବନ୍ୟା ପ୍ରପୀଡିତ ଦୁଃସ୍ଥ ଲୋକଙ୍କୁ ସାହାଯ୍ୟ ପଠେଇବା ପାଇଁ ଅନୁରୋଧ କରିଥିଲେ । ସେ ଚିଠି ପାଇ ମହାତ୍ମା ଗାନ୍ଧି ତାଙ୍କର ବିଶ୍ୱସ୍ତ ବନ୍ଧୁ ରେଭରେଣ୍ଡ ସି. ଏଫ୍. ଆଣ୍ଡ୍ରୁଜ୍‌ଙ୍କୁ ପଠାଇଥିଲେ । ଉଦ୍ଦେଶ୍ୟ—ସେ ବନ୍ୟାଞ୍ଚଳ ଭ୍ରମଣ କରି, ଦେଖନ୍ତୁ କ୍ଷୟକ୍ଷତି କ'ଣ ହୋଇଛି । ଗୋଟାଏ ପ୍ରତ୍ୟକ୍ଷ ଧାରଣା ନେଇ ତାଙ୍କୁ ଚିଠି ଲେଖନ୍ତୁ, କି ପରିମାଣରେ ଆର୍ଥିକ ସାହାଯ୍ୟ ଦରକାର ।

ଦୀନବନ୍ଧୁ ଆଣ୍ଡ୍ରୁଜ ୪-୧୦-୧୯୨୫ରେ ଆସି ପୁରୀରେ ପହଞ୍ଚିଥିଲେ । ସେଠାରେ ତାଙ୍କୁ ବିରାଟ ସମ୍ମାନ ଦିଆଯାଇ ଅଭ୍ୟର୍ଥନା କରାଯାଇଥିଲା । ଚାରି, ପାଞ୍ଚ ତାରିଖ ଦୁଇଦିନ ପ୍ରବଳ ବର୍ଷା ହେବା ସତ୍ତ୍ୱେ ଆଣ୍ଡ୍ରୁଜ ସାହେବଙ୍କୁ ସାଙ୍ଗରେ ଧରି ବନ୍ୟା ବିଧ୍ୱସ୍ତ ପୁରୀର ବହୁ ଅଞ୍ଚଳ, ଚନ୍ଦନପୁର, ପ୍ରଭୃତି ଗାଁ ଗଣ୍ଡା ବୁଲି ଦେଖାଇଥିଲେ ଗୋପବନ୍ଧୁ । ଅନେକ ଗୃହସ୍ଥଙ୍କ ଘରକୁ ଯାଇ, ଆଣ୍ଡ୍ରୁଜ ସାହେବ ନିଜେ ସେମାନଙ୍କର ଆର୍ଥିକ ଅବସ୍ଥା କଥା ବୁଝିଥିଲେ । ଲୋକଙ୍କର ଦୈନ୍ୟ ଦୁର୍ଦ୍ଦଶା ଦେଖି ସେ ଏତେ ସ୍ତମ୍ଭୀଭୂତ ହୋଇ ଯାଇଥିଲେ, କାନ୍ଦି କାନ୍ଦି କହି ପକାଇଥିଲେ—ମୁଁ ଦାରିଦ୍ର୍ୟର ଏପରି ଶୋଚନୀୟ ରୂପ ଆଉ କୌଣସିଠାରେ ଦେଖି ନାହିଁ ।

ଚାରି ତାରିଖରୁ ନଅ ତାରିଖ ଯାଏଁ ଓଡ଼ିଶାରେ ରହି ଆଣ୍ଡ୍ରୁଜ ସତ୍ୟବାଦୀ ବନ ବିଦ୍ୟାଳୟଠାରେ ମଧ୍ୟ ଗୋପବନ୍ଧୁଙ୍କର ଶିକ୍ଷା ସମ୍ବନ୍ଧୀୟ ପରିକଳ୍ପନା ସମ୍ବନ୍ଧରେ ସବୁ ବିଷୟ ପଚାରି ବୁଝିଥିଲେ । ସେଦିନ ରାତିରେ ଶୋଇବାକୁ ଗଲାବେଳେ ସେ ହାର୍ଦ୍ଦିକ ବିହ୍ୱଳତାରେ କହି ପକାଇଥିଲେ—ଭଗବାନ ଦୁର୍ଭିକ୍ଷ ପ୍ରପୀଡ଼ିତ ନିରାଶ୍ରୟ ଓଡ଼ିଶାବାସୀଙ୍କୁ ସାହାଯ୍ୟ କରନ୍ତୁ । ଭଗବାନ ଆପଣଙ୍କୁ ସାହାଯ୍ୟ କରନ୍ତୁ । **May God help the distressed people, May God help you** । କହିସାରି ଈଶ୍ୱରଙ୍କୁ ପ୍ରାର୍ଥନା କରିଥିଲେ ।

ଏଣୁ ଜାମସେଦ୍‌ପୁରକୁ ଆସିବାର ଘଟଣାଟି ନିଶ୍ଚିତ ଭାବରେ ଏହା ସମମୂର । ତେବେ ଦିନେ ଅଧେ ଏପାଖ ସେପାଖ ଯଦି ହେଉଥାଏ, ସେଥିରେ ଘଟଣାଟିକୁ ବର୍ଣ୍ଣନା କରିବାରେ କିଛି କ୍ଷତି ନାହିଁ । କାରଣ ଯାହା ମୋ ମନର ସ୍ମୃତିରେ ଏବେ ବି ଜାଗ୍ରତ, ତା'ହା ବର୍ଷ, ମାସ, ଦିନର ପ୍ରମାଣକୁ ଅପେକ୍ଷା ରଖେନା ।

ଆଣ୍ଡ୍ରୁଜଙ୍କୁ କାହିଁକି ନେଇ ଆସିଥିଲେ ସିଂହଭୂମ ତା ବି ଖୁବ୍ ସହଜରେ ଅନୁମାନ କରାଯାଇପାରେ ।

ଉଦ୍ଦେଶ୍ୟ, ଆଣ୍ଡ୍ରୁଜ ବନ୍ଧୁଙ୍କର କ୍ଷୟକ୍ଷତି ସମ୍ବନ୍ଧରେ ପ୍ରତ୍ୟକ୍ଷ ଧାରଣା ନେଇଯାଇ ମହାତ୍ମା ଗାନ୍ଧିଙ୍କୁ ସବୁକଥା ବୁଝାଇ କହିଲେବେଳେ ସିଂହଭୂମିରେ, ଓଡ଼ିଆ ଅଧିବାସୀଙ୍କୁ କିପରି ହଇରାଣ କରାଯାଉଛି, ନିଜ ମାତୃଭାଷା ଓଡ଼ିଆରେ ଶିକ୍ଷା ନଦିଆ ଯାଇ ହିନ୍ଦି ପଢ଼ିବାକୁ ବାଧ୍ୟ କରାଯାଉଛି ସେକଥା, ସ୍ୱଚକ୍ଷୁରେ ଦେଖିଯାଇ ମହାତ୍ମା ଗାନ୍ଧିଙ୍କୁ କୁହନ୍ତୁ । ତା'ହେଲେ ଗାନ୍ଧୀଙ୍କ ଆଡୁ ହୁଏତ କିଛି ପ୍ରତିକାରର ବ୍ୟବସ୍ଥା ଯଦି ହୋଇପାରେ ।

ଦିନ ଏଗାରଟା ବେଳେ ଟ୍ରେନରୁ ଓହ୍ଲାଇଲେ ଗୋପବନ୍ଧୁ । ଷ୍ଟେସନ ବାହାରେ ହଜାର ହଜାର ଓଡ଼ିଆ ଶ୍ରମିକ ସେତେବେଳକୁ ଆସି ଅପେକ୍ଷା କରି ଠିଆହୋଇଥାଆନ୍ତି । ଫୁଲ ମାଳରେ ପୋତି ହୋଇଯାଉ ବାହାରକୁ ଯେମିତି ଆସିଛନ୍ତି ଓ' ନେତାଏ, ଆଣ୍ଡ୍ରୁଜ ସାହେବଙ୍କ ଜୟ, ଉତ୍କଳମଣିଙ୍କ ଜୟ, ନାଦରେ ଆକାଶଫାଟିଲା ସମସ୍ତେ ଆଗକୁ ମାଡ଼ିଯାଇ ଗୋପବନ୍ଧୁଙ୍କୁ ଟେକି ଧରିଲାପରି ମଟରଭିତରେ ଆଣି ବସେଇ ଦେଇଥିଲେ । ତା'ପରେ ଏକ ବିରାଟ ପଟୁଆର, ଖୋଳ, କରତାଳ, ହରିବୋଲ ଦେଇ ବାହାରିଥିଲା ସେଇଠୁ ।

ଆମେ ସେତେବେଳେ ରହୁଥିଲୁ ବିଷ୍ଟୁପୁର, 'କ୍ୟୁ' ରୋଡ଼ରେ । ଏବେ ଆଉ ସେ ଘର ବି ଦର୍ଶି ନାହିଁ ।

ଏବର ଟାଟାନଗର ଷ୍ଟେସନର ଡାକ ନାମ ଥିଲା 'କାଲିମାଟି' । ସେଇ ଷ୍ଟେସନରୁ ଯୋଉ ରାସ୍ତାଟା ଆସିଥିଲା ସହର ଭିତରକୁ, ତାକୁ କହୁଥିଲେ 'ସାକ୍‌ଚୀ ବୁଲଭାର୍ଡ଼ ।'

ଆମ ବସାଟି ଥିଲା ରାସ୍ତାକଡ଼କୁ । ଟିସ୍କୋ କେମିକାଲ ଲାବ୍ରେଟୋରୀରେ ବାପା ସେତେବେଳେ ନିଯୁକ୍ତ ପାଇଥିଲେ କେମିଷ୍ଟ ପୋଷ୍ଟରେ ।

ଟାଟା କମ୍ପାନୀରେ ପ୍ରଥମ ଓଡ଼ିଆ କର୍ମକର୍ତ୍ତା ହେଉଛନ୍ତି ବାପା । ଅଗରୁ କାମ କରୁଥିଲେ ରେଲ୍‌ୱେ୍‌ରେ । ସେ ଚାକିରି ଛାଡ଼ିଦେଇ ଆସିଥିଲେ ୧୯୧୧ରେ । ସେଠି ଚାକିରିରୁ ଉଠି ଉଠି 'କେମିଷ୍ଟ' ପୋଷ୍ଟକୁ ପାଇଥିଲେ । ଏ ସବୁ କଥା ମୋର ଆତ୍ମ-କାହାଣୀ । 'ସେପାଖେ ଆରମ୍ଭ ଏପାଖେ ଶେଷ୍' । ବହିରେ ବିଶଦ ଭାବରେ ଲେଖିଚି । ଏଠି ସେ ସବୁର ପୁନରାବୃତ୍ତି କରିବି ନାହିଁ ।

ଏତିକ ଅବଶ୍ୟ କହିଦେବା ଦରକାର, ୧୯୨୫ ବେଳକୁ ଅନେକ ଓଡ଼ିଆ ଆସି ଟାଟା କମ୍ପାନୀରେ ଭର୍ତ୍ତି ହୋଇଯାଇଥିଲେ, ବିଭିନ୍ନ ଡିପାର୍ଟ-ମେଣ୍ଟରେ, କିରାଣୀଠୁ ଆରମ୍ଭ କରି କୁଲି ମଜ୍‌ଦୁର୍ ପର୍ଯ୍ୟନ୍ତ ।

ଗୋପବନ୍ଧୁ ଆସୁଛନ୍ତି, ଏ କଥା କେମିତି ଆଗରୁ ପ୍ରଚାର ହୋଇ ଯାଇଥିଲା । ସେ ଦିନର କଥା ମୋର ଖୁବ୍ ମନେ ଥିଲେ ବି, ବୋଉକୁ ପଚାରିଲେ ସେ ବରଂ ଆହୁରି ସୁନ୍ଦର କରି କୁହେ—ଷ୍ଟେସନ ଆଡ଼ୁ ପ୍ରସେସନ ଆସି ଆମ ଘର ରାସ୍ତା ପାଖରେ ପହଞ୍ଚିଲା ବେଳକୁ ଲୋକେ ଥାଟପଟାଳି ଭାଙ୍ଗୁଥାଆନ୍ତି ।

ଖୋଳ, କରତାଳ, ହରିବୋଲରେ ଚାରିଆଡ଼ ଉଛୁଳି ପଡ଼ୁଥାଏ । ଖୋଲା ମଟରରେ ବସିଥାଆନ୍ତି ଦି' ନେତା । ଫୁଲମାଳରେ ଏମିତି ପୋତି ହୋଇ ପଡ଼ିଥାନ୍ତି, ମୁହଁ, ଆଖି କିଛି ଦେଖା ଯାଉନଥାଏ ।

ପ୍ରସେସନ ବି କଡ଼ରେ ଘୋଡ଼ା ସବାର ପୁଲିସ ଧାଡ଼ଧାଡ଼ି ହୋଇ ଚାଲିଥାଆନ୍ତି । ଏ କଡ଼ା ଜଗିବା ବ୍ୟବସ୍ଥା ହୋଇଥାଏ ଗୋରା ସରକାରଙ୍କ ଆଡ଼ୁ ।

ଆମ ଦୁଆର ବାଟ ଦେଇ ସେମାନେ ସିଧା ଚାଲିଗଲେ ତିଳକ ପୁସ୍ତକାଳୟ ଭବନକୁ । ସେଠୁ ମିଟିଙ୍ଗ୍ ସାରି ଆମ ଘରଠିକି ଖାଇବାକୁ ଆସିଲା ବେଳକୁ ଦିନ ଗୋଟାଏ କି ଦେଢ଼ଟା ।

ଏ ସବୁ ମୋର ବି କିଛି କିଛି ମନେ ଅଛି । ବେଶୀ ମନେଅଛି, ଯେତେବେଳେ ଠେଲା ପେଲା ଗହଳି ଭିତରୁ ଗୋପବନ୍ଧୁ ଆଉ ଆଣ୍ଡ୍ରୁଜ ସାହେବ ଆସି ଆମ ଦୁଆର ମୁହଁରେ ପହଞ୍ଚିଲେ, ତାଙ୍କୁ ସେଠୁ ପାଛୋଟି

ଆଣି ଘର ଭିତରେ ବସେଇଦେଇ ସାରିଲା ପରେ, ମତେ ଗୋପବଂଧୁଙ୍କ ଆଗରେ ଠିଆ କରେଇ ଦେଇ, ବାପା କହିଲେ—ମୁଣ୍ଡିଆ ମାର ।

ଆଣ୍ଡ୍ରୁଜ ସାହେବଙ୍କ ଦାଢ଼ୀ ଆଉ ଲମ୍ବା ଚେହେରା ଦେଖି ମୁଁ ଖୁବ୍ ଡରିଗଲି । ଗୋପବଂଧୁଙ୍କ ମୁହଁକୁ ବଲ ବଲ କରି ଚାହିଁଲି । ସେ ଟିକିଏ ହସିଦେଲେ । ତାଙ୍କ ମୁହଁକୁ ହସଟି ଏମିତି ସୁନ୍ଦର ମାନିଲା, ଡରଭୟ କୁଆଡ଼େ ଉଭେଇ ଗଲା ମୋର । ବାପା ଦ୍ୱିତୀୟ ଥର ପାଇଁ, ମୁଣ୍ଡିଆ ମାର୍ ବୋଲି ଆକଟିଲା ବେଳକୁ, ମୁଁ ତଳେ ଢୋ କରି ମୁଣ୍ଡ ପିଟି ସାରିଥିଲି ।

ପିଲା ଦିନର କେତେ କଥା, କାହା ଜୀବନରେ ନ ଘଟୁଚି । କିନ୍ତୁ ସେଇ ଏଗାର ବାର ବର୍ଷ ବୟସର ଏଇ ଯୋଉ ଘଟଣା, ଗୋପବଂଧୁଙ୍କୁ ଦେଖିବାର, ଆଣ୍ଡ୍ରୁଜ ସାହେବଙ୍କ ଗହଣରେ, ବେଶ୍ ତିନି ଚାରି ଘଣ୍ଟା ପାଇଁ, ସେଇ ଦିନ ଗୋଟାଏରୁ ଗୁଲନେଉଟା ପର୍ଯ୍ୟନ୍ତ, ଆମ ଘରେ ସେଇ ଲୋକ ଗହଳି, ଗୋପବଂଧୁ ଆଉ ଆଣ୍ଡ୍ରୁଜ ସାହେବଙ୍କ ଗୋଡ଼ତଳେ ସାଷ୍ଟାଙ୍ଗ ପ୍ରଣିପାତ ହେଇ, ପାଦଧୂଳି ନେଇ ମୁଣ୍ଡରେ ମାରି, ଯୋଉ ଭକ୍ତ ଗଦ୍ ଗଦ୍ ଭାବ, ଏକାଗ୍ର ଚିତ୍ତରେ ଗୋପବଂଧୁଙ୍କୁ ଶୁଣିବାର ସେଇ ଯୋଉ ଆଗ୍ରହ ସମସ୍ତଙ୍କର, କାହିଁ ସେମିତି ଦୃଶ୍ୟ ତ ଆଉ କେବେ ଦେଖିଥିଲା ପରି ମନେ ପଡୁନି ।

ଥରେ ସେଇ ପିଲାଦିନେ, ଆଠ-ନଅ ବର୍ଷ ବେଳେ, ଆଉ ଗୋଟିଏ ଘଟଣାର ସ୍ମୃତି । ଭିତର ଘରେ ବୋଉ ମାଛ ଭାଜୁଥିଲା । ଭଜା ମାଛ ଖଣ୍ଡେ ଖାଇବାକୁ, ପଢ଼ିଲାଠୁ ଉଠି ଧାଇଁ ଯାଇଥିଲି । ହୁଦେସ୍ ଚୁଲା ମୁଣ୍ଡରେ ବସି ପଡ଼ିଲା ବେଳେ, ମଝି ପିଠି ହାଡ ପିଟି ହେଇ ଯାଇଥିଲା ଥାଳ ଉପରେ । ଅଚେତ ହେଇପଡ଼ିଯାଇଥିଲି । ସେଇ ମୂର୍ଚ୍ଛିତ ଅବସ୍ଥାରେ, ଦେଖିଲା ପରି ଲାଗିଥିଲା, କେତେ ଗୁଡ଼ାଏ ଭୟଙ୍କର ରୂପ, କୁଆଡୁ ଘେରି ଆସି ମତେ ଟଣାଟଣି କରୁଛନ୍ତି । ପ୍ରାୟ ଅଧଘଣ୍ଟା ପରେ, ମୋ କାନ ଫୁଙ୍କା ଫୁଙ୍କି କରି ମତେ ଚେତା କରେଇଲା ପରେ, ଆମ ମଦନ ଅବଧାନଙ୍କ ଆଗରେ ସେ କଥାକୁ ପ୍ରାଞ୍ଜଳ ଭାବରେ ବଖାଣିବାର ସେଇ ସ୍ମୃତି ଯେମିତି ଏଯାଏଁ ବି ଖୁବ୍ ସତେଜ ଆଉ ପ୍ରଖର ହେଇ ରହିଛି, ସେଇପରି ଗୋପ-ବଂଧୁ ଆଉ ଆଣ୍ଡ୍ରୁଜ ସାହେବଙ୍କୁ ଦେଖିବାର ଘଟଣାଟିକୁ ମନେ ରଖିବା

ପାଇଁ କେବେ କୌଣସି ଚେଷ୍ଟା ନକର ବ, ଏମିତ ଆଶ୍ଚର୍ଯ୍ୟ ଭାବରେ ମନେ ରହିଯାଇଚ, ଭାବ ବସିଲେ ଦେହର ରୁମ ଟାଙ୍କୁର ଉଠେ ।

ମନେ ରହିଯାଇଛୁ, ସେଇ ପୁଣ୍ୟାତ୍ମା ମହାପୁରୁଷଙ୍କ ପାଖରେ ବସି, ତାଙ୍କ ସ୍ପର୍ଶ ପାଇବାର ସୁଯୋଗ, ତାଙ୍କ ଉଚ୍ଛିଷ୍ଟ ଖାଇବାର ସୌଭାଗ୍ୟ ।

ଅନେକ ସମୟ ଧରି, ଲୋକଙ୍କ ସାଙ୍ଗରେ କଥାଭାଷା କରି ସାରିଲା ପରେ, ଗୋପବନ୍ଧୁଙ୍କୁ ଖାଇବାକୁ ଡାକିଲେ ବାପା ।

ସେଦିନ ସକାଳୁ, ବୋଉ କଂଶସବୁ ବଣ୍ଟାବଣ୍ଟି କରିବାରେ ଲାଗିଥିଲା ଭିତର ଘରେ ଦେଖିଥିଲି ।

କାଂସ୍ୟ ଭୋଜରେ ବସାଇବାଇଥିର ଦୁଇଟି ବଖରା । ସମ୍ମୁଖପାଖ ପଶ୍ଚିମ ପଟ ରୁମ୍‌ଟି ଟିକିଏ ବଡ । ପାଖକୁ ଲାଗି ପୂର୍ବପଟ ବଖରାଟି ଆୟତନରେ ଅପେକ୍ଷାକୃତ ଶ୍ରେଷ୍ଠ । ବଡ ବଖରାଟିରେ ସମସ୍ତେ ରୁଣ୍ଡ ହୋଇ ଗୋପବନ୍ଧୁଙ୍କୁ ଶୁଣୁଥାଆନ୍ତି । ଶ୍ରେଷ୍ଠ ବଖରାଟିରେ ବୋଉ ବଢା ବଢି କରି ଦେଇଗଲା । ମୁଁ ସେଠି ଛିଡ଼ା ହୋଇଥାଏ । ବଢା ବଢି କରିଦେଇ ସାରି ବୋଉ ମୋ ହାତ ଧରି ଟାଣିଲା—ଚାଲିଆ ସେମାନେ ଆସି ଖାଇବେ ।

ମନେ ପଡୁଚି, ଯେତେ ଟଣା ଓଟରା କଲେ ବି ମୁଁ ଅଚଳ ମହାମେରୁ ପରି ଛିଡ଼ା ହୋଇଥାଏ ସେଇମିତି । ଶେଷକୁ ବାପା କହିଲେ, ହଉ, ନ ଯାଉଚତ ନାହିଁ । ଟିକିଏ ଜଗିଥାଅ । ମୁଁ ସେମାନଙ୍କୁ ଡାକିଆଣେ ।

ବୋଉର ବୟସ ସେତେବେଳେ ଅଳ୍ପ । ବୋହୂମାନେ ହାତେ ଓଢଣା ଟାଣି ଲୁଚି-ଲୁଚ କରିବାର ଯୋଗ୍ୟ ବୟସ ଆମ ଓଡ଼ିଆ ଘରେ ।

ମତେ ନଜଗି, କେବଳ ବାରମ୍ବାର ମାରିବାକୁ ହାତ ଉଠୁଥିଲି, ଦୁଆର ମୁହଁକୁ ଘୋଷାଡ଼ ଘୋଷାଡ଼ ନେଇ, ଶେଠରେ ଛାଡ ଛୁଡ଼ ଦେଇ ପଳେଇଗଲା ଅଗଣା ପଟକୁ ।

ଦାଣ୍ଡବାଟେ ଘର ଭିତରକୁ ଆସିଲେ ଆଣ୍ଡ୍ରୁଜ । ତାଙ୍କ ପଛେ ପଛେ ପଣ୍ଡିତ ଗୋପବନ୍ଧୁ ।

—ଏତେ ପ୍ରକାର ସବୁ କ'ଣ କରିଛନ୍ତି, ଗୋପବନ୍ଧୁ କହିଲେ, ଏତେ ଏତେ ଗୁଡ଼ାଏ କାହିଁକି ବଢ଼ା ହେଇଚି ?



ରେଭେରେଣ୍ଡ ସି· ଏଫ୍· ଆଣ୍ଡ୍ରୁଜ୍
ପୃଷ୍ଠା ୫



୰ ବଳଭଦ୍ର ନାୟକ
(ଲେଖକଙ୍କ ପିତା)



୰ ଈଶ୍ବର ହୋତା
(ପରେ) ପଣ୍ଡିତ ଈଶ୍ବର ପ୍ରକାଶ ବ୍ରହ୍ମଋଷି
ପୃଷ୍ଠା ୭୫



କଉଶାଲ୍ୟା ମଣି ଦେବୀ
(ଲେଖକଙ୍କ ମାତା) ପୃଷ୍ଠା-୯

ଚୁପ୍‌ହୋଇ ଛିଡ଼ା ହୋଇଥାଆନ୍ତି ବାପା !

ଧଳାଟା ପିଢ଼ା ପଡ଼ିଥାଏ । ଗୋପବନ୍ଧୁ, ଆଣ୍ଡ୍ରୁଜଙ୍କୁ ଉଦ୍ଦେଶ୍ୟ କରି କହିଲେ, ଆମଆଡ଼େ ପିଢ଼ା ପକେଇ ଖାଇବାକୁ ଦେବାର ଚଳଣି ଅଛି । ଆପଣ ବୋଧହୁଏ ବସି ପାରିବେନ ।

ଆଣ୍ଡ୍ରୁଜ ହସିଲେ ।

ବାପା, ପିଢ଼ା ଉଠେଇ ଦେଇ ଖଣ୍ଡେ ଆସନ ପକେଇଦବାକୁ ଯାଉଥିଲେ ।

ମନାକଲେ ଆଣ୍ଡ୍ରୁଜ ସାହେବ । ଗୋପବନ୍ଧୁଙ୍କ ଆଡ଼କୁ ଅନେଇ ଦେଇ, ତାଙ୍କର ପରି ଡେରିହୋଇ ବସିଲେ ପିଢ଼ା ଉପରେ ।

ମୁଁ ବକ୍ ବକ୍ କରି ଚାହିଁଥାଏ ।

ମୋ ଉପରେ ଦୃଷ୍ଟି ପଡ଼ିଲା ଗୋପବନ୍ଧୁଙ୍କର । କହିଲେ—ଆ, ମୋ ସାଙ୍ଗେ ଖାଇବୁ ।

ବାପାଙ୍କ ପାଖକୁ ଲାଗି ଆସିଲି ମୁଁ ।

—ଆମ ଦାଦାଙ୍କ ଦାଢ଼ୀ ଦେଖି ଡରୁଚୁକି ? ପଚାରିଲେ ।

ବାପା ମତେ ଠେଲି ଦେଲେ ଟିକିଏ ଆଗକୁ । ଖପ୍ କରି ଟାଣି ନେଇଗଲେ ଗୋପବନ୍ଧୁ ।

ସେ ଏକ ଆଶ୍ଚର୍ଯ୍ୟ ସ୍ପର୍ଶ ! ମୋହାବିଷ୍ଟ ହୋଇଗଲି ! ନାଥୁକିନା ବସି ପଡ଼ିଲି ଥାଳି ପାଖରେ ।

ସେ ଥରେ ଖାଇନେଲେ । କହିଲେ : ଖା ।

ମୁଁ ସଙ୍କୁଚି ଆସୁଥିଲି । ଧରି ପକେଇଲେ । ପାଟିରେ ଗୁଞ୍ଜି ଦେଲେ ଗୁଳାଏ ।

ବଲ ବଲ କରି ଚାହିଁଲି । କଳା ଦାଢ଼ୀ ଭିତରେ ଗୋରା ଚକ ଚକ ମୁହଁ । ଆଖିର ଚାହାଣୀ ସ୍ଥିର, ଶାନ୍ତ, ସସ୍ମିତ !

ହଁ, ଖୁବ୍ ମନେ ପଡୁଚି । ସେ କଅଁଳ ଚାହାଣୀର ଯାଦୁକରୀ ପ୍ରଭାବ ।

—ଇଏ ସବୁ କୋଉଥିରେ ତିଆରି ହୋଇଚି ? ପଚାରିଲେ ଆଣ୍ଡ୍ରୁଜ୍ ସାହେବ !

—ବଣ୍ଟା ଆଉ ଚୁଡ଼ାଳରେ । ଏ ପିଠା-ପଣା ଆମ ଓଡ଼ିଆ ଘରର ସଂସ୍କୃତି । କହ, ବାପାଙ୍କୁ ଉଦ୍ଦେଶ୍ୟ କରି ପଚାରିଲେ ଗୋପବନ୍ଧୁ—ଏ ତରକାରିରେ କି ପରିବା ସବୁ ପଡ଼ିଚି ବଳଭଦ୍ର ବାବୁ ?

—ପାଟିରେ ଦେଉ ଦେଉ ତ ମିଳେଇ ଯାଉଚି, ଆଶ୍ଚର୍ଯ୍ୟରେ କହିଲେ ଆଣ୍ଡ୍ରୁଜ୍ ସାହେବ ।

ବାପା ଅଗଣାପଟକୁ ଯାଇଁ ବୋଉଠୁ ବୁଝି ଆସି କହିଲେ, ପାଣି-କଖାରୁରେ ବଡ଼ ଆଉ ନଡ଼ିଆ ପଡ଼ି ରାନ୍ଧି ହୋଇଚି ।

ଆଣ୍ଡ୍ରୁଜ୍ ସାହେବ କିଛି ବୁଝି ପାରି ନଥିଲେ । ହେଲେ ଖୁବ୍ ଆଗ୍ରହରେ ଶୁଣୁଥିବାର ମୁଁ ଲକ୍ଷ୍ୟ କରିଥିଲି । ପଚାରିଲେ, ଏସବୁ ମିଠା ମିଠା ଲାଗୁଚି କ'ଣ ?

—ନଡ଼ିଆ ଆଉ ଗୁଡ଼ ଚକଟା ହୋଇ ପୁର ଦିଆ ହୋଇଚି, ପିଠା ଭିତରେ ।

ଚାଟିଆରେ ଅଲଗା ଅଲଗା କ୍ଷୀରି ଦିଆଯାଇଥାଏ । ଗୋପବନ୍ଧୁ ଆଣ୍ଡ୍ରୁଜଙ୍କୁ କହିଲେ, କ୍ଷୀରିରେ ଚକଟି ଚକଟି ଖାଆନ୍ତୁ ।

ଗୋପବନ୍ଧୁଙ୍କ ଦେଖା ଦେଖି ଆଣ୍ଡ୍ରୁଜ୍ ବି ସେଇମିତି ଚକଟି ଚକଟି ଖାଇଲେ ।

—ବହୁଦିନ ପରେ ଏମିତି ସରୁଚକୁଲି, ଆଉ ଏଣ୍ଡୁରି ପିଠା ଖାଇଲି ବଳଭଦ୍ର ବାବୁ, କହିଲେ ଗୋପବନ୍ଧୁ । ଏ ଡାଲମା, ଶାଗ- ବଡ଼ ସନ୍ତୁଳା, ନଡ଼ିଆ ଚଟଣି ସବୁ ଭାରି ସୁଆଦ ଲାଗୁଚି । ବଡ଼ ତୃପ୍ତିରେ ଆମେ ଆଜି ଖାଇଲୁ ।

ଦୀନ ଦୁଃଖୀର ସେବାରେ ଯେ ସମସ୍ତ ଜୀବନ ବିତେଇ ଦେଇଥିଲେ ଭୋକ-ଉପାସରେ, ସେଇ ମହାପୁରୁଷ ଦିନେ ଏଇ ଅଧମ ଲେଖକର ପରିବାରରେ ଖଣ୍ଡିଏ ପିଠା ଖାଇ, ବଡ଼ ତୃପ୍ତି ପାଇଛନ୍ତି ବୋଲି ଯୋଉ ମହାନୁଭବତା ଦେଖେଇଥିଲେ, ସେ ସ୍ମୃତି ଯେ କି ଅମୂଲ୍ୟ ସମ୍ପଦ, ତା' ଏଇ ଜନ୍ମ-ଶତବାର୍ଷିକୀ ଅବକାଶରେ ମନେ ପଡ଼ିଯିବାରୁ 'ସିଂହଭୂମିର ଗୋପବନ୍ଧୁ' ପରିଚ୍ଛେଦ କେତୋଟି ଲେଖି ପକେଇବାକୁ ମନ ବଳେଇଲି ।

ବର୍ଷ, ମାସ, ତାରିକର ସଠିକତା ହୁଏତ ରହିପାରିନି ଏ ଲେଖାରେ । କାରଣ ସିଂହଭୂମିକୁ ଗୋପବନ୍ଧୁ କାର୍ଯ୍ୟ ସୂତ୍ରରେ କେବେ ଆସିଥିଲେ, କେତେଥର ଆସିଥିଲେ, କୋଉଠି କ'ଣ କରିଥିଲେ, ତା'ର ଧାରାବାହିକ ବିବରଣୀ କିଛି ନାହିଁ । ପୁଣି କେବେ ଗଲେ ଶେଷ ବିଦାୟ ନେଇ, ସେ କଥା ବି କେହି କହିପାରୁନାହାନ୍ତି ।

ଘଟଣା ପ୍ରବାହର ଆଲୋଚନାରୁ, ଏଠୁ ସେଠୁ ଯାହା ଯେମିତି ପାଇଛି, ତାକୁଇ ନେଇ ଏ ଲେଖାର ଅବତାରଣା । ଏଥିରେ ତଥ୍ୟ ଅପେକ୍ଷା ଆବେଗ ବେଶୀ, ଏତକ ସ୍ୱୀକାର କରିବାରେ ମୋର କିଛି ଦ୍ୱିଧା ନାହିଁ ।

## ॥ 'ଦିବ୍ୟଜ୍ୟୋତି' ପରିକ୍ରମା ॥

ଧୁମ୍‌ଧାମ୍ ଚାରିଆଡ଼େ । ଗୋପବନ୍ଧୁ ଜନ୍ମ-ଶତବାର୍ଷିକୀ ପାଳନପାଇଁ ରାଜ୍ୟବ୍ୟାପି ପ୍ରସ୍ତୁତି । ଖବର କାଗଜ ପୃଷ୍ଠା ପରେପୃଷ୍ଠା ଭରିଯାଉଛି ସମ୍ବାଦରେ ୧୯୭୭ ଅକ୍ଟୋବର ୯ ତାରିଖଟି ଶୁଭ-ଉଦ୍‌ବୋଧନର ଦିନ । ଦଳମତ ନିର୍ବିଶେଷରେ ରାଜ୍ୟସ୍ତରରେ କମିଟି ଗଠନ କରାଯାଇଛି । ସେଥିରେ ଅଛନ୍ତି ମୁଖ୍ୟମନ୍ତ୍ରୀଙ୍କଠୁ ନେଇ କଂଗ୍ରେସ ଦଳର ସଭାପତି ପର୍ଯ୍ୟନ୍ତ । ଏହି ପୁଣ୍ୟାତ୍ମାଙ୍କ ପ୍ରତି, ଶ୍ରଦ୍ଧା ନିବେଦନରେ ଭାରତର ସବୁ ପ୍ରଦେଶର ଲୋକେ କିପରି ଉତ୍ସାହରେ ଆଗଭର ହୋଇ ବାହାରିବେ ସେଇ ବ୍ୟବସ୍ଥାଟି କରାଇବା ଦିଗରେ ଏ' କମିଟି ସବୁ ଆୟୋଜନ କରିବ ।

ସାରା ଓଡ଼ିଶାରେ ଗୋପବନ୍ଧୁଇ ଏକମାତ୍ର ବ୍ୟକ୍ତି, ତାଙ୍କୁ କବି କୁହ, ବାଗ୍ମୀ କୁହ, ନେତା ବା ତପସ୍ୱୀ କୁହ, ସବୁଥିରେ ପ୍ରଥମ ଆଉ ପ୍ରଧାନ । ହୁଏତ ଏକାଧାରରେ ସବୁ ।

ସେ ସମୟରେ କୁଳବୃଦ୍ଧ ମଧୁସୂଦନ ଦାସ ବି ଥିଲେ । ଜଗବନ୍ଧୁ ସିଂହ, ବିଶ୍ୱନାଥ କର ଆଉ ବ୍ରଜସୁନ୍ଦର ଦାସ ବି ଥିଲେ । ସେମାନେ ସମସ୍ତେ କିଛିନା କିଛି କରୁଥିଲେ ଓଡ଼ିଶା ପାଇଁ, ଓଡ଼ିଆଙ୍କ ପାଇଁ । ହେଲେ, ଗୋପବନ୍ଧୁଙ୍କର ବିଶେଷତ୍ୱ ଥିଲା, ସମସ୍ତେ ମିଳିମିଶି ଯାହା କରୁଥିଲେ, ସେ ଏକାଟିଆ ତାଠୁ ବେଶୀ କରିବାକୁ ଛଟପଟ ହେଉଥିଲେ । ପୁଣି ଅନ୍ୟମାନଙ୍କର କର୍ମକୁଶଳତା ଯେତେବେଳେ ଗୋଟିଏ ନିର୍ଦ୍ଦିଷ୍ଟ ଗଣ୍ଡି ଭିତରେ ସୀମାବଦ୍ଧ ଥିଲା, ଗୋପବନ୍ଧୁଙ୍କର କାର୍ଯ୍ୟାନୁଷ୍ଠାନ ଥିଲା ବହୁମୁଖୀ, ସୁଦୂର-ପ୍ରସାରୀ । ଏଣୁ

ଗୋପବନ୍ଧୁ ବେଶୀ ଲୋକପ୍ରିୟ ହୋଇ ଉଠୁଥିଲେ ସର୍ବସାଧାରଣଙ୍କ ପାଖରେ ।

ଦର୍ପଣରେ ଛବି ଦେଖାଯାଏ । ଯେତିକି ଦେଖାଯାଏ ସେତିକି ଦେଖିବା ଶେଷ । କିନ୍ତୁ ଭୂତ-ଭବିଷ୍ୟତ ଦେଖିବାର ଏକ ଆଶ୍ଚର୍ଯ୍ୟ ଆଇନା ଥିଲା ଗୋପବନ୍ଧୁଙ୍କ ପାଖରେ । ସେଇଥିପାଇଁ ତାଙ୍କ କାର୍ଯ୍ୟାବଳୀର ଝଲକ, ଜାତୀୟ-ଜୀବନ ଦର୍ପଣରେ ଏବେ ବି ଝଟକୁଚି ।

ତାଙ୍କର କୃତିତ୍ୱ ଥିଲା—ଓଡ଼ିଶାର ସାଧାରଣ ଜୀବନ ଭିତରୁ ବିରାଟ ଏକ ଓଡ଼ିଆ ବ୍ୟକ୍ତିତ୍ୱକୁ କାଢ଼ିଆଣି ଦେଖାଇବା ସର୍ବଭାରତୀୟ ସ୍ତରରେ । ତାଙ୍କର ଏଇ ପ୍ରଚେଷ୍ଟା ତାଙ୍କୁ ମହାନ୍ କରିଥିଲା ! ଏଇ ପ୍ରଗାଢ଼ ଆନ୍ତରିକତା ଭିତରେ ତାଙ୍କ ଭାବନାର ବିରାଟ ପରିଧି ଦେଖି ବିସ୍ମିତ ହେବାକୁ ପଡ଼େ ।

ଜଣେ ପରମ ସାଧକ ସେ ଥିଲେ ସବୁ ଦୃଷ୍ଟିରୁ । ପୁରୁଷୋତ୍ତମ ସଂସ୍କୃତିର ପ୍ରତୀକ ଥିଲେ ବୋଲି ଲେଖିଛନ୍ତି ପଣ୍ଡିତ ନୀଳକଣ୍ଠ । ଆଚାର୍ଯ୍ୟ ହରିହର, ଐତିହାସିକ କୃପାସିନ୍ଧୁ, ପଣ୍ଡିତ ଗୋଦାବରୀଶ, ସମସ୍ତେ ପ୍ରଭାବିତ ହୋଇଥିଲେ ତାଙ୍କ ଆଦର୍ଶରେ ! ପ୍ରଭାବିତ ହୋଇଥିଲେ ଓଡ଼ିଶାର ଦୁଇ କୋଟି ଲୋକ ।

କାରଣ କ'ଣ ? କ'ଣ ଥିଲା ତାଙ୍କଠି ?

ହୁଏତ ଗୋଟିଏ କାରଣ । ଶ୍ରେଷ୍ଠ ବଡ଼ ସମସ୍ତଙ୍କ ସାଙ୍ଗରେ ମିଶିବାକୁ ଚେଷ୍ଟା କରୁଥିଲେ ସେ ! ଛୁଆଁ-ଅଛୁଆଁର ବାଛବିଚାର ନଥିଲା । ଭୋକି-ଭିକାରୀ ସମସ୍ତଙ୍କ ଦୁଃଖ ଦୁର୍ଦ୍ଦଶା କଥା ପଚାରି ବୁଝୁଥିଲେ । ଗ୍ରାମ ଗ୍ରାମ ବୁଲୁଥିଲେ ସାରା ଓଡ଼ିଶା । ଯେପରି ପଦବ୍ରଜରେ ବୁଲିଥିଲେ ମହାତ୍ମା ଗାନ୍ଧୀ, ସାରା ଭାରତବର୍ଷ । କଂଗ୍ରେସ ଆଦର୍ଶରେ ଜନସାଧାରଣଙ୍କୁ ପ୍ରଭାବିତ କରିବା ପାଇଁ, 'ଦାଣ୍ଡୀ ଯାତ୍ରା' ଆରମ୍ଭ କରିଥିଲେ ! କିନ୍ତୁ ତା'ର କୋଡ଼ିଏ ବର୍ଷ ଆଗରୁ ବାହାରି ପଡ଼ିଥିଲେ ଗୋପବନ୍ଧୁ ଓଡ଼ିଶାର ଏପ୍ରାନ୍ତରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ, ଜନ ସେବାର ମହାବ୍ରତ ନେଇ, କୃଷୀ ମୂଲିଆଙ୍କୁ ଆପଣାର କରିବା ପାଇଁ ।

ତାଳୁଫଟା ଖରାରେ ଧୂଳି ଧୂସର, ପୁଣି ଝଡ଼ ବର୍ଷାରେ ଓଦା ଜୁଡୁବୁଡୁ । ଘୁରି ବୁଲୁଥିଲେ ସେ କେତେବେଳେ ଦଇତା କଣ୍ଟା ମାଡ଼ି, କେତେବେଳେ ଖାଲ ଗାଡ଼ିରେ, କାଦୁଅ ପଙ୍କରେ ।

୧୯୦୭ରେ ବ୍ରାହ୍ମଣୀ-ବୈତରଣୀ-ଖରସ୍ରୁଆଁ ନଦୀରେ ବଢ଼ି ଆସିଲା । କେନ୍ଦ୍ରାପଡ଼ାର ବିସ୍ତୃତ ଅଞ୍ଚଳ ବୁଡ଼ ରହିଲା ପାଣିରେ ! ଲୋକଙ୍କ ଦୁର୍ଦ୍ଦଶା ଦେଖିବା ପାଇଁ ବାହାରିଥିଲେ ସେ ଏ ଗାଁରୁ ସେ ଗାଁ । ଏଇ ବୁଲିବା ଅଭ୍ୟାସ ତାଙ୍କର ରହିଯାଇଥିଲା ଜୀବନର ଶେଷ ପର୍ଯ୍ୟନ୍ତ ।

ବୁଲିବାର ଢଙ୍ଗ ତାଙ୍କର ପୁଣି ଥିଲା ଅଦ୍ଭୁତ । ମହାତ୍ମାଙ୍କ ପରି ଦଳବଳ ନେଇ ନୁହେଁ । ଏକା ଏକା । ଦେହ ମୁଣ୍ଡକୁ ଲକ୍ଷ୍ୟ ନାହିଁ । ଖାଇବା-ପିଇବା ପ୍ରତି ଧ୍ୟାନ ନାହିଁ । ଯୋଉଠି ଯାହା ମିଳିଲା । ଚୂଡ଼ା-ଗୁଡ଼ ଲୁଣ-ଲଙ୍କା, ସେତିକି ହୋଇଗଲେ ହେଲା । ଚାଳ କୁଡ଼ିଆ ଘରେ, ମାଟି ଚଟାଣରେ ବସି ପଡ଼ୁଥିଲେ ସେ । ନିରଳସ, ନିର୍ବିକାର । ଘୃଣା ନାହିଁ କି ଦ୍ୱିଧାଭାବ ନାହିଁ । ସୃଷ୍ଟି ମୂଳଆଁର ଦୁଃଖ ବୁଝିବାରେ ବ୍ୟାକୁଳ ଆଉ ଚଞ୍ଚଳ । କିଛି କରିବାକୁ ହେବ ଏଇ ଅଭାବୀ ମଣିଷମାନଙ୍କ ପାଇଁ । ମୁଠାଏ ପେଟ ପୂରା ଖାଇବାକୁ ଦେବାକୁ ହେବ ଏମାନଙ୍କୁ । ପିନ୍ଧିବା ପାଇଁ ଖଣ୍ଡିଏ ଲୁଗା, ଏଇ ଚିନ୍ତାରେ ବ୍ୟସ୍ତ ଆଉ ଅସ୍ଥିର ସବୁବେଳେ ।

ହୁଏତ ଅନେକ ସମୟରେ ଠିକ୍ କ'ଣ କରିବାକୁ ହେବ ଖୋଜି ପାଇ ନାହାନ୍ତି । ଚିନ୍ତାର ଜ୍ୱାଳାରେ ଛଟପଟ ହୋଇଛନ୍ତି । କଷ୍ଟ ପାଇଛନ୍ତି ଅନେକ । ପାଦରେ କଣ୍ଟା ପଶିଯାଇ ରକ୍ତ ବାହାରିଛି । କିନ୍ତୁ ବାଟଚଲା ବନ୍ଦ ହୋଇନାହିଁ । 'ମିଶୁ ମୋର ଦେହ ଏ ଦେଶ ମାଟିରେ' ଏଇ ଆଦର୍ଶ ନେଇ ଦୂରଦୂରାନ୍ତ-ପଥ-ଯାତ୍ରୀ ସେ, ସବୁ ଦିନ ।

ନିଜ ମାତୃଭାଷାରେ ଓଡ଼ିଆ ପିଲାଏ କାହିଁକି ଶିକ୍ଷା ପାଇବେନି, ଏ ଅଭିଯୋଗ ନେଇ ବିହାର ବ୍ୟବସ୍ଥାପକ ସଭାରେ ଲଢ଼ିବାରେ ଯେତିକି ଦୁର୍ଦ୍ଦାନ୍ତ, ବ୍ରିଟିଶ ଶାସକ ହାତରୁ ଭାରତକୁ ମୁକ୍ତ କରିବା ପାଇଁ ଓଡ଼ିଶାର ସ୍ୱାର୍ଥକୁ ଜଳାଞ୍ଜଳି ଦେବାରେ ଜଣେ ସେତିକି ଉଦାର ଜନନାୟକ ।

ଏଇ ଆଶ୍ଚର୍ଯ୍ୟ ମଣିଷଟି ଯେ କି ବିରାଟ ବ୍ୟକ୍ତିତ୍ୱ ନେଇ ଜନ୍ମ ହୋଇ ଥିଲେ, ଓଡ଼ିଶାର ଏକ ଛୋଟ ପଲ୍ଲୀ ଗ୍ରାମରେ, ତା' ଆଜି ଭାବିଲେ ବାସ୍ତବିକ ସ୍ତବ୍ଧ ହୋଇଯିବାକୁ ପଡ଼େ । ସେତେବେଳର ଅଖ୍ୟାତ ସୁଆଣ୍ଡୋ ଗ୍ରାମ, ଆଜି ଅବଶ୍ୟ ବିଖ୍ୟାତ । ୧୮୭୭ ମସିହାର ସେଇ ଅକ୍ଟୋବର ୯ ତାରିକଟି ଆଜି

ଅବଶ୍ୟ ଏକ ଐତିହାସିକ ଦିବସ । ପୁଣି ସେଇ ପରିପ୍ରେକ୍ଷୀରେ ଏଇ ମହା-ପୁରୁଷଙ୍କ ଜନ୍ମ-ଶତବାର୍ଷିକୀ ପାଳନର ଯୋଡ଼-ଯୋଜ ତା' ବି ଏକ ବିରାଟ ଜାତୀୟ କାର୍ଯ୍ୟ, ସନ୍ଦେହ ନାଇ । ହେଲେ ସେଇ କାର୍ଯ୍ୟଟି ସମ୍ପନ୍ନ କରିବାରେ ରାଜ୍ୟ ସ୍ତରର କମିଟି ଆଉ ଓଡ଼ିଶାର ଜନସାଧାରଣ କେତେଦୂର ସଫଳ ହୋଇ ପାରିଲେ, ତା' ଯେ ଆମ ସମସ୍ତଙ୍କ ପାଇଁ ଏକ ଗଭୀର ଅନୁଧାନର କଥା, ଏଇଆ ବିଚାର କରି ଏ ଲେଖାଟି ଆରମ୍ଭ କଲି ।

ସେପ୍‌ଟେମ୍ବର ସାତ ତାରିଖ । ଜମସେଦପୁରଠି 'ଫର୍ଷ୍ଟି' ପ୍ରେସ୍‌ରେ ବସିଚି, ଦିନ ବାରଟାରେ ଆସି ପହଞ୍ଚିଲେ ଦିନେଶ ବାବୁ । କହିଲେ—ଆଜ ସନ୍ଧ୍ୟା ଟ୍ରେନ୍‌ରେ ଚାଲନ୍ତୁ ଚକ୍ରଧରପୁର । କିଛି ତଥ୍ୟ ସଂଗ୍ରହ କରିବାକୁ କହୁଥିଲେ ଗୋପବନ୍ଧୁଙ୍କ ସମ୍ବନ୍ଧରେ । ତାଙ୍କ ସମସ୍ତର ଜଣେ ଦି'ଜଣ ଅଛନ୍ତି । ପଚାରି ବୁଝିବା, କିଛି ମିଳିପାରେ ଯଦି । ସେଇଠୁ ଯିବା ସୋଣୁଆ । କମଳ କୃଷ୍ଣ ପ୍ରଧାନ ଅନେକ କଥା କହିବେ । ଟେପ୍ ରେକର୍ଡ଼ର ନେଇ ଆସିଚି ।

ଧଳଭୂମିର ନରସିଂହପୁର କର୍ମ୍ମୀ ୬ ତାରାପଦ ଷଡ଼ଙ୍ଗୀ । ସତ୍ୟବାଦୀ ବନବିଦ୍ୟାଳୟରେ ପଢ଼ିଥିଲେ । ଗୋପବନ୍ଧୁଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ସିଂହଭୂମିରେ ଓଡ଼ିଆ ଶିକ୍ଷା ପ୍ରଚାର କାର୍ଯ୍ୟରେ ଆଜୀବନ ଲାଗି ରହିଥିଲେ । ଓଡ଼ିଶା ସହିତ ସିଂହଭୂମିକୁ ମିଶାଇବା ଆନ୍ଦୋଳନର ଅଗ୍ରଭାଗରେ ମଧ୍ୟ ଥିଲେ ସେ । ତାଙ୍କର ସୁଯୋଗ୍ୟ ସନ୍ତାନ ଭାବରେ ଦିନେଶ ବାବୁ, ଡାକ୍ତରୀ ବ୍ୟବସାୟର ବ୍ୟସ୍ତତା ଭିତରେ ବି ଓଡ଼ିଆ ସମସ୍ୟା ନେଇ କର୍ମତତ୍ପର ।

କିଛିଦିନ ତଳେ, ବାହାଡ଼ାଗୋଡ଼ାରେ ତାଙ୍କ 'ଷଡ଼ଙ୍ଗୀ କ୍ଲିନିକ'ରେ ବସି ଆଲୋଚନା ପ୍ରସଙ୍ଗରେ, ଗୋପବନ୍ଧୁଙ୍କ ଜନ୍ମ-ଶତବାର୍ଷିକୀ କାର୍ଯ୍ୟ-କ୍ରମକୁ ସିଂହଭୂମିରେ ବ୍ୟାପକ ଆକାରରେ ପାଳନ କରିବାକୁ ପ୍ରସ୍ତାବ ଦେଇଆସିଥିଲି ।

ସନ୍ଧ୍ୟା ଏକ୍‌ସ୍‌ପ୍ରେସ୍‌ରେ ବାହାରିଗଲୁ ଚକ୍ରଧରପୁର । ସେଠି ରାତିରେ ରହି ବିଜୟ ବାବୁଙ୍କ ସହିତ ଗୋପବନ୍ଧୁଙ୍କ ପରିସିଜିଆ ପଣ୍ଡ କଥା ଆଲୋଚନା କଲୁ । ନିସ୍କ୍ରିୟ ହୋଇପଡ଼ି ରହିଥିବା 'ସିଂହଭୂମି ଉତ୍କଳ ସଙ୍ଘ'ର ଏକ ଜିଲ୍ଲାସ୍ତରୀୟ ଅଧିବେଶନ ଆୟୋଜିତ ହେଉଚି ବୋଲି ସୂଚନା ଦେଲେ ଦିନେଶ ବାବୁ । ତହିଁ ଆରଦିନ ସକାଳେ ଗଲୁ ସୋଣୁଆ । ବିଯୋ-

ବୃଦ୍ଧ ନେତା କମଳକୃଷ୍ଣ ପ୍ରଧାନଙ୍କ ପାଖକୁ । ସେ ଘରେ ଥିଲେ । ବୟସ ଚଉରାଅଶିକୁ ଟପି ଗଲଣି । ହେଲେ ଚଲ ବୁଲ ବେଶ୍ କରି ପାରୁଛନ୍ତି । ସ୍ମରଣ ଶକ୍ତି କମିଯାଇଛି ଅବଶ୍ୟ । ପଚାରିଲୁ—ଗୋପବନ୍ଧୁଙ୍କ ସମ୍ବନ୍ଧରେ କ'ଣ ଜାଣନ୍ତି କହନ୍ତୁ । ଟେପ୍ ରେକର୍ଡର ସଜଡା-ସଜଡ଼ି କରି ମାଉଥ-ପିସ୍‌ଟି କମଳବାବୁଙ୍କ ମୁହଁ ପାଖରେ ଟେକିଧରିଲେ ଡାକ୍ତର ଦିନେଶ । ମତେ ଲକ୍ଷ୍ୟ କରି କହିଲେ : ପ୍ରଶ୍ନ ପଚାରନ୍ତୁ ।

ପଚାରିଲୁ ଅନେକ କଥା । ପଣ୍ଡିତ ଗୋଦାବରୀଶ, ଅନନ୍ତ ମିଶ୍ରଙ୍କ କଥା ବି ଉଠିଲା । ଜିଲ୍ଲା ଲୋକଙ୍କର ସେତେବେଳର ଉତ୍ସାହ, ପୁଣି ଗୋପବନ୍ଧୁଙ୍କ ପରେ ପରେ ସବୁ କାହିଁକି ବ୍ୟର୍ଥ ହୋଇଗଲା, ସେ ବିଷୟରେ ତାଙ୍କ ମତାମତ ବି ପଚାରି ବୁଝିଲୁ । ପ୍ରଶ୍ନ ଆଉ ଜବାବର ବିବରଣୀ ଏ ବହିରେ ଅଛି ଅନ୍ୟ ଜାଗାରେ ।

ସବୁ ପଚରା-ଉଚରା କରିସାରି, ଟେପ୍‌ରେକର୍ଡର ବଜେଇ ଶୁଣିବାକୁ ଯାଇଁ ଦେଖିଲୁ ଯାନ୍ତ୍ରିକ ଗୋଳମାଳ ଯୋଗୁଁ ସବୁ କଥା ଠିକ୍ ଠିକ୍ ଉଠି ନାହିଁ । ଏତେ ପରିଶ୍ରମ ବୃଥା ହୋଇଗଲା ଭାବି ମନ ଦୁଃଖରେ ଭାଙ୍ଗି ପଡ଼ିଲୁ । ସେଇଠୁ ଫେରିଲୁ ଜାମସେଦ୍‌ପୁର । ଚକ୍ରଧର ପୁରଠି ଦିନେଶବାବୁ ଓହ୍ଲେଇ ଗଲେ ନୂଆମୁଣ୍ଡି ଯିବା ଉଦ୍ଦେଶ୍ୟରେ । ମୁଁ ସିଧା ଫେରିଆସିଲି ଜାମସେଦପୁର ।

ଫେରିଆସି ଦି' ତିନିଦିନ ପରେ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ'ର ବୈଠକଟିଏ ଡକାଗଲା । ସେଥିରେ ସ୍ଥିର କରାଗଲା ୧୯୭୭ରେ ବାର୍ଷିକ ଅଧିବେଶନଟି 'ଗୋପବନ୍ଧୁ ଜନ୍ମ-ଶତବାର୍ଷିକୀ' ପାଳନ କାର୍ଯ୍ୟ-କ୍ରମ ଉପରେ ଆଧାରିତ ହେବ ।

ଏହି ବୈଠକରେ ଯେଉଁ ପ୍ରସ୍ତାବଟି ଉପରେ ଗୁରୁତ୍ୱ ଦିଆଯାଇ ଥିଲା, ତା'ହେଲା—ସିଂହଭୂମିରେ ଓଡ଼ିଆ ଶିକ୍ଷାର ପ୍ରଥମ ପ୍ରବର୍ତ୍ତକ ଭାବରେ କେବଳ ନୁହେଁ, ୧୯୨୦ ମସିହାରେ ନାଗପୁର କଂଗ୍ରେସରୁ ଫେରି, ଚକ୍ରଧରପୁରଠାରେ ଅନୁଷ୍ଠିତ ହେଉଥିବା 'ଉତ୍କଳ ସମ୍ମିଳନୀ'ରେ ମହାଭାରତୀୟ ଜାତୀୟ କଂଗ୍ରେସର ଅସହଯୋଗ ବାର୍ତ୍ତା, ଓଡ଼ିଆ ଜାତି ଉଦ୍ଦେଶ୍ୟରେ ସର୍ବପ୍ରଥମେ ଏଇଠାରୁ ପ୍ରଚାରକରି, ଗୋପବନ୍ଧୁ ସମଗ୍ରଓଡ଼ିଶାରେ ତାଙ୍କର ପ୍ରିୟ କର୍ମସ୍ଥଳୀ ସିଂହଭୂମିକୁ ଯେଉଁ ମହତ୍ତ୍ୱ ପ୍ରଦାନ କରିଥିଲେ

ତାଂର ଏକ ଐତିହାସିକ ଗୁରୁତ୍ୱ ଅଛି । ଗୋପବନ୍ଧୁଙ୍କ ପ୍ରେରଣାରେ ଟାଟା କମ୍ପାନୀରେ କାମ କରୁଥିବା ବହୁ ଓଡ଼ିଆ କର୍ମଚାରୀ ତଥା ସିଂହଭୂମିର ବହୁ ଯୁବକମାନେ, କଂଗ୍ରେସର ଲବଣ ସତ୍ୟାଗ୍ରହ, ସ୍ୱଦେଶୀ ବସ୍ତ୍ର ବର୍ଜନ ଆନ୍ଦୋଳନ ଓ ଅସହଯୋଗ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଏହି ଦୃଷ୍ଟିରୁ ସିଂହଭୂମିରେ ଉତ୍କଳମଣିଙ୍କ କାର୍ଯ୍ୟାବଳୀର ତଥ୍ୟ ସଂଗ୍ରହପାଇଁ ଏକ ସବକମିଟି ଗଢା ହେଉ । ରାଜ୍ୟସ୍ତରରେ ଗଢାଯାଇଥିବା କେନ୍ଦ୍ରୀୟ କମିଟି ସହିତ ଏ କମିଟି ଯୋଗାଯୋଗ ରଖି, ଗୋପବନ୍ଧୁଙ୍କ ସମ୍ବନ୍ଧରେ ସମସ୍ତ ତଥ୍ୟ କିପରି ସଂଗ୍ରହ କରାଯିବ, ତାଂର ବ୍ୟବସ୍ଥା କରିବ ।

ଏ ସମ୍ବାଦଟା ଟି ପ୍ରକାଶ ପାଇଲା ଦୈନିକ 'ସମାଜ'ର ସେପ୍‌ଟେମ୍ବର ୧୯ ତାରିଖ ସଂସ୍କରଣରେ, ପ୍ରଥମ ପୃଷ୍ଠାରେ ।

ତହିଁଆରଦିନ, ସେପ୍‌ଟେମ୍ବର କୋଡ଼ିଏ ତାରିଖରେ ଏହି ଲେଖକ, ରାଜ୍ୟସ୍ତରୀୟ ଗୋପବନ୍ଧୁ ଜନ୍ମ-ଶତବାର୍ଷିକୀ କମିଟିର ଅଧ୍ୟକ୍ଷ, ତଥା ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଶ୍ରୀଯୁକ୍ତ ଚିନ୍ତାମଣି ଜେନାଙ୍କୁ ଏକଟି ପତ୍ର ଲେଖିଲି—

ଶ୍ରଦ୍ଧେୟ ମହାଶୟ,

ଆପଣଙ୍କ ଅଧ୍ୟକ୍ଷତାରେ 'ଗୋପବନ୍ଧୁ ଜନ୍ମ-ଶତ-ବାର୍ଷିକୀ' କମିଟି ଗଠିତହୋଇଥିବା ସମ୍ବାଦ ଦୈନିକ ସମାଜର ୧୯-୮-୭୬ ତାରିଖ ସଂଖ୍ୟାରେ ପଢ଼ି ଖୁବ୍ ଆନନ୍ଦିତ ହେଲୁ । ରାଜ୍ୟରେ ସର୍ବତ୍ର ଏହି ଶତବାର୍ଷିକୀ ପାଳନ କରିବା ପାଇଁ କି ପ୍ରକାର କାର୍ଯ୍ୟକ୍ରମର ସିଦ୍ଧାନ୍ତ ନିଆ ଯାଇଅଛି ତାହା ଜାଣିବା ପାଇଁ ଏ ପତ୍ର ଲେଖିଲି ।

ଦାସେ ଆପଣ ତାଙ୍କର କର୍ମମୟ ଜୀବନର ଅନେକ ଗୁଡ଼ିଏ ବର୍ଷ ବୋଧହୁଏ ୧୯୧୨ରୁ ୧୯୨୩ ପର୍ଯ୍ୟନ୍ତ ବିଚ୍ଛିନ୍ନାଞ୍ଚଳ ସିଂହଭୂମିରେ ଓଡ଼ିଆ ଶିକ୍ଷା ପ୍ରଚାର ପାଇଁ ଅତିବାହିତ କରିଥିଲେ । ଏଣୁ ସେହି ନଅ ଦଶ ବର୍ଷର ଘଟଣା ତଥ୍ୟ ସଂଗ୍ରହ ପାଇଁ ସବୁ ବ୍ୟବସ୍ଥା ହେବା ଦରକାର । କଲିକତାରେ ଉତ୍କଳମଣି ଗୋପବନ୍ଧୁ, ଓଡ଼ିଆ ଶ୍ରମିକ ସଙ୍ଗଠନ କରିଥିବାରୁ ସେଠାରେ ତାଙ୍କର କାର୍ଯ୍ୟାବଳୀ ସମ୍ବନ୍ଧରେ ତଥ୍ୟ ସଂଗ୍ରହ ପାଇଁ ଯେପରି ବ୍ୟବସ୍ଥା କରାଯାଉଛି, ସିଂହଭୂମିରେ ମଧ୍ୟ ଅନୁରୂପ ବ୍ୟବସ୍ଥା ହେବା ଉଚିତ୍ ।

ଗୋପବନ୍ଧୁଙ୍କ ଜନ୍ମ-ଶତବାର୍ଷିକୀ ପାଳନ କରିବା ପାଇଁ ରାଜ୍ୟ-ସ୍ତରରେ କି କି ବ୍ୟବସ୍ଥା ଗ୍ରହଣ କରାଯାଉଛି, ଏବଂ ସର୍ବସାଧାରଣଙ୍କ ପାଇଁ କି କାର୍ଯ୍ୟ-କ୍ରମ ନିର୍ଦ୍ଧାରିତ ହୋଇଛି, ସେ ସମ୍ବନ୍ଧରେ ବିସ୍ତାରିତ ବିବରଣୀ ପାଇଲେ ଆମ୍ଭେମାନେ ମଧ୍ୟ ସେହି ପ୍ରକାର ବ୍ୟବସ୍ଥା କରିବୁ ।

ଏ ଚିଠିର ନିମ୍ନଲିଖିତ ଉତ୍ତର ମିଳିଲା, ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ଚିଠି ଲେଖା ପ୍ୟାଡ୍ କାଗଜରେ, ଏଇପରି :

Sub—Letter from Sri Laxmidhar Nayak

President—Singbhum Oriya Sahitya Samaj.

Dear friend,

The above letter bearing No—002-8-76, Dt 28-8-76 filed in the address of the undersigned requesting certain information in connection with the observance of birth centenary celebration of Late Utkalmoni Gopabandhu Das by " Singbhum Oriya Sahitya Samaj " is forwarded here with for your kind perusal.

I shall be extremely happy and oblige if you very kindly furnish the required particulars as desired by Sri Nayak direct to him under intimation to us.

With regards.

Yours sincerely
Sd. (Chintamoni Jena)
20-9-76

Encl : as above

Sri Matlub Ali, Dy Minister and Convenor of the

Sub-Committee formed Centenary Celebrations

---

Memo No. 1490/P. C. C. Dt.21-9-76

Copy to Sri Laxmidhar Nayak. President " Singbhum Oriya Sahitya Samaj ". 17. L/4 Old Baradwari, Sakchi, P. O. Jamshedpur-1. Dist. Midnapur. West Bengal, for information with reference to his letter as stated above.

Sd.—
(Chintamoni Jena)

କଂଗ୍ରେସ ଅଧ୍ୟକ୍ଷ ମହାଶୟଙ୍କ ଚିଠିଟି ଯାଇଁଲା ପାଏଁ, ଯୋଉ ବିଷୟଟି ଆମକୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା ତା'ହେଲା ଆମ' ପାଖକୁ ଚଳେ ଲେଖା ହୋଇଥିବା ଠିକଣାଟି—ପୋ: ଜାମସେଦ୍‌ପୁର, ଜିଲ୍ଲା : ମେଦିନୀପୁର, ପଶ୍ଚିମବଙ୍ଗ।

ଭାବିଲୁ, ଜାମସେଦପୁର ର ଅବସ୍ଥିତି ସମ୍ବନ୍ଧରେ ସଠିକ୍ ଧାରଣା ନାହିଁ ଯେତେବେଳେ ସଭାପତି ମହାଶୟଙ୍କର--ଜିଲ୍ଲା, ସିଂହଭୂମ୍ ବଦଳରେ ମେଦିନୀପୁର ଲେଖା ହେଉଛି, ବିହାର ଜାଗାରେ ପଶ୍ଚିମବଙ୍ଗ, ସେଠି ଆମ ଚିଠି ଉପରେ ବା କ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ଭବିଷ୍ୟତରେ ?

ଧାରଣା ଆମର ଯଥାର୍ଥ ପ୍ରତିପାଦିତ ବି ହେଲା । ମାର୍ଚ୍ଚ ୧୯୬୭ ପର୍ଯ୍ୟନ୍ତ, କଂଗ୍ରେସ ସରକାର ଶାସନ ଦାୟିତ୍ୱରେ ଥିଲେ ମଧ୍ୟ ରାଜ୍ୟସ୍ତରୀୟ ଶତବାର୍ଷିକୀ କମିଟିର ଆବାହକ ମହାଶୟଙ୍କଠୁ ଆଜି କୌଣସି ଉତ୍ତର ମିଳି ନଥିଲା । ଏ ଭିତରେ ତ କଂଗ୍ରେସର ରାଜୁତି ବୁଡ଼ିଗଲାଣି । ଜନ୍ମ-ଶତବାର୍ଷିକୀ ପାଳନ ବର୍ଷଟି ମଧ୍ୟ ଆସି ଶେଷ ହେଉଗଲାଣି ।

ସିଂହଭୂମିରେ ଗୋପବନ୍ଧୁଙ୍କ କାର୍ଯ୍ୟାବଳୀ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବା ପାଇଁ ଆମେ ଯେଉଁ ଅନୁରୋଧ କରି ଚିଠି ଲେଖିଥିଲୁ, ତା କେବଳ ଅରଣ୍ୟ ରୋଦନରେହିଁ ପର୍ଯ୍ୟବସିତ ହେଲା ।

ଅବଶ୍ୟ, ରାଜ୍ୟସ୍ତରରେ ଗଠିତ କମିଟିର କର୍ମକର୍ତ୍ତାଙ୍କୁ ଅନୁରୋଧ କରି ଏ ଲେଖକ କ୍ଷାନ୍ତ ହୋଇ ନଥିଲା; ଜିଲ୍ଲା ସ୍ତରରେ ଯେତେବେଳେ 'ସିଂହଭୂମି ଗୋପବନ୍ଧୁ ଜନ୍ମ-ଶତବାର୍ଷିକୀ କମିଟି' ଗଢାହେଲା, ସେତେ-ବେଳେ ବି ଏଇ ପ୍ରସ୍ତାବଟି ଦିଆଗଲା—ସିଂହଭୂମିରେ ଗୋପବନ୍ଧୁଙ୍କ କାର୍ଯ୍ୟାବଳୀ ସମ୍ବନ୍ଧରେ ତଥ୍ୟ ସଂଗ୍ରହ ପାଇଁ ।

ଜିଲ୍ଲାସ୍ତରୀୟ ବୈଠକରେ ସିଂହଭୂମିର ବିଭିନ୍ନ ସ୍ଥାନରୁ ବହୁ ଗଣ୍ୟ-ମାନ୍ୟ ବ୍ୟକ୍ତି ଆସି ଯୋଗ ଦେଇଥିଲେ । ଉତ୍କଳ ଆସୋସିଏସନର ଗୋପବନ୍ଧୁ ସଦନରେ ସେଦିନର ବୈଠକଟି ବାସ୍ତବିକ ବଡ଼ ଉତ୍ସାହ-ଜନକ ବୋଲି ମନେ ହୋଇଥିଲା । କିନ୍ତୁ ପରେ, ବହୁ ଆଡମ୍ବର ଲଘୁକ୍ରିୟା ଭାବରେ ଆଶାନୁରୂପ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାଇ ପାରିଲା

ନାହିଁ, ହୁଏତ ଆର୍ଥିକ ଅନାଟନ ଯୋଗୁ । ମାର୍ଚ୍ଚ ୭ ତାରିଖରେ ଜିଲ୍ଲା ସ୍ୱତନ୍ତ୍ରତା ଦିବସ ଆରମ୍ଭ ହୋଇ ଦୁଇଦିନଆ ସଭାଟି ଶେଷହେଲା, ଏକ ଗତାନୁଗତିକ କାର୍ଯ୍ୟକ୍ରମ ଭିତରେ ।

ବରଂ କହୁଁଥା ସ୍ୱାଗତ ଯୋଗ୍ୟ କାର୍ଯ୍ୟାନୁଷ୍ଠାନ କଥା ଉଲ୍ଲେଖ କରାଯାଇପାରେ, ସେଇ ପ୍ରଥମ ଦିନ, ୧୯୭୬ ଅକ୍ଟୋବର ୯ ତାରିଖରେ ଯେଉଁ ଉଦ୍‌ବୋଧନ ବ୍ୟବସ୍ଥା ହୋଇଥିଲା ଜାମସେଦ୍‌ପୁରର ଉତ୍କଳ ଆସୋ-ସିଏସନ ତରଫରୁ ।

ସେଦିନ ଗୋପବନ୍ଧୁ ସଦନରୁ ଉତ୍କଳମଣିଙ୍କ 'ଦିବ୍ୟଜ୍ୟୋତି' ଏକ ପଟୁଆରରେ ବାହାରି ସାରା ଜାମସେଦ୍‌ପୁର ସହର ପରିକ୍ରମା କରିଥିଲା । ଖୋଲ, କରତାଳର ସଂକୀର୍ତ୍ତନ ଭିତରେ ଗୃହଆଡ ଉଚ୍ଛୁଳ ପଡିଥିଲା ।

ସେଇଦିନ ପୁରୀର ସୁଆଣ୍ଡୋ ଗ୍ରାମରୁ ଗୋପବନ୍ଧୁଙ୍କର ଦିବ୍ୟ-ଜ୍ୟୋତି ବି ବାହାରିଥିଲା, ରାଜ୍ୟସ୍ତରୀୟ କମିଟିର ନିର୍ଦ୍ଦେଶରେ କାରଣ ସେଇଟିଥିଲା ତାଙ୍କର ଜନ୍ମସ୍ଥାନ । ଜାମସେଦପୁରରୁ ପୁଣି ଏକ ଦିବ୍ୟଜ୍ୟୋତି ବାହାର କରିବାର ଯଥାର୍ଥତା କେଉଁଠି ବୋଲି ଆମକୁ ଅନେକ ପ୍ରଶ୍ନ କରିଥିଲେ ।

ଏ ପ୍ରଶ୍ନର ଉତ୍ତରରେ ଆମେମାନେ ଗୋଟିଏ ଉତ୍ତର ଦେଉଥିଲୁ, ମଣିଷର 'ଜନ୍ମସ୍ଥାନ' କେବଳ ତା ଜୀବନର ବଡ କଥା ନୁହେଁ, 'କର୍ମସ୍ଥାନ' ମଧ୍ୟ ସମାନ ଭାବରେ ପ୍ରାଧାନ୍ୟ ପାଇବାର ଦାବୀ ରଖେ । ମଣିଷ କୌଣସି ସ୍ଥାନରେ କେବଳ ଜନ୍ମ ହୋଇଗଲେ ପ୍ରସିଦ୍ଧ ହୋଇଯାଏନା, ତା' ଜୀବନର କର୍ମକୁଶଳତାହିଁ ତାକୁ ପ୍ରତିଷ୍ଠିତ କରାଏ, ବିଖ୍ୟାତ କରାଏ, ଦେଶ ଦେଶାନ୍ତରରେ ।

ଏଇ ଦୃଷ୍ଟିରୁ, ଗୋପବନ୍ଧୁ ତାଙ୍କ ଜନ୍ମସ୍ଥାନ, ସୁଆଣ୍ଡୋ ଆଖ ପାଖ ସତ୍ୟବାଦୀରେ, ବନବିଦ୍ୟାଳୟଟିଏ ଆରମ୍ଭ କରି, ସେ ଅଞ୍ଚଳକୁ ଯେପରି ମହତ୍ତ୍ୱ ପ୍ରଦାନ କରିଥିଲେ, ଓଡିଶାର ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ କାର୍ଯ୍ୟରେ ଏକ ସାଂଗଠନିକ ଦୃଷ୍ଟିକୋଣ ନେଇ, ନିରକ୍ଷରତାର ଅନ୍ଧକାର ଭିତରେ ଶିକ୍ଷାର ପ୍ରଥମ ଦୀପଶିଖା ଏଇ ସିଂହଭୂମିରେ ଜାଳିଥିବାରୁ, ଏ ଜିଲ୍ଲାର ବିଶେଷତ୍ୱ ସାରାରାଜ୍ୟ ସ୍ତରରେ ବରଂ ବେଶୀ । ପୁଣି ମହାତ୍ମାଗାନ୍ଧୀଙ୍କ ଜାତୀୟ କଂଗ୍ରେସର ଅସହଯୋଗ ବାର୍ତ୍ତା ସମଗ୍ର ଓଡିଆ ଜାତି ଉଦ୍ଦେଶ୍ୟରେ ଏଇଠୁ ପ୍ରଚାରିତ ହେଲା ପରେ ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲା ତୁଳନାରେ

ସିଂହଭୂମିର ଶ୍ରେଷ୍ଠତ୍ୱ ଯେ ଅଧିକ ସ୍ୱୀକୃତ ହେବା ଉଚିତ୍, ଯୁକ୍ତି ଖୁବ୍ ଯୁକ୍ତିଯୁକ୍ତ କଥା । ଏହି ଦୃଷ୍ଟିରୁ ଗୋପବନ୍ଧୁଙ୍କ ପଦାଙ୍କରେ ପବିତ୍ର ସିଂହଭୂମିର ମାଟି ଏକ ମହାନ୍ ତୀର୍ଥ ବୋଲି ସ୍ୱୀକାର କରି, ଜନ୍ମ-ଶତ-ବାର୍ଷିକୀର କାର୍ଯ୍ୟକ୍ରମ କିପରି ଏଇଠାରୁ ପ୍ରାରମ୍ଭ ହେବ ତା'ର ଆବଶ୍ୟକୀୟ ବ୍ୟବସ୍ଥା ରାଜ୍ୟସ୍ତରରେ ବା ଏହି ସିଂହଭୂମିରୁହିଁ ହେବା କଥାର୍ ଉଚିତଥିଲା ।

କାରଣ ଉତ୍କଳମଣିଙ୍କ ସାଧନାର ଚିରସ୍ମୃତ ସଙ୍କେତ ବହନ କରିଚି ସିଂହଭୂମିର ହୃଦୟକନ୍ଦର । ଆଜିଯେ ଆପଣଙ୍କ ଆଦର୍ଶରେ ଏ ଜିଲ୍ଲାର ଲକ୍ଷାଧିକ ଅଧିବାସୀ, ଓଡ଼ିଆ-ଜାତୀୟତାର ଅଗ୍ନିମନ୍ତ୍ରରେ ସଦା ଉଦ୍‌ବୁଦ୍ଧ । ତେଣୁ ଯେଉଁ ମହା-ପୁରୁଷଙ୍କ ଆତ୍ମା ଏଠି ଚିର-ଜାଗ୍ରତ, ଯାହାଙ୍କ ଜନ୍ମମୟ ଜୀବନର 'ଦିବ୍ୟ-ଜ୍ୟୋତି' ଏଠି ଚିର ଦୀପ୍ତିମାନ, ସେଠି ତାଙ୍କର ଜନ୍ମ-ଶତ-ବାର୍ଷିକୀର ପ୍ରଥମ ଉଦ୍‌ବୋଧନ ଦିନରେ 'ଦିବ୍ୟ-ଜ୍ୟୋତି'ର ପଞ୍ଚୁଆର ନବାହାରି ଆଉ କୋଉଠୁ ବାହାରିବା ଅଧିକ ସୁନ୍ଦର ହୋଇଥାନ୍ତା ? ରାଜ୍ୟସ୍ତରରେ ଏଇଟି ନହେଲା ବା ଯଦି ଜିଲ୍ଲାସ୍ତରରେ ସେଇଟି କରାହେଉ ଏହି ଧାରଣା ନେଇ 'ଦିବ୍ୟଜ୍ୟୋତି'ର ପଞ୍ଚୁଅର ବାହାର କରାଯାଇଥିଲା ଉତ୍କଳ ଆସୋସିଏସନର ଗୋପବନ୍ଧୁ ସଦନରୁ ।

ସେ ଜ୍ୟୋତି ସମ୍ବର୍ଦ୍ଧିତ ହୋଇଥିଲା ବନ୍ଦନା, ଓଡ଼ିଆ ଅନୁଷ୍ଠାନ ଦ୍ୱାରା—ଫୁଲ, ଦୀପ, ଧୂପର ଅର୍ଚ୍ଚନାରେ ।

ଏଇଠି କହିରଖେ, ସୁଆଣ୍ଡୋ ଗ୍ରାମରୁ ବାହାରିଥିବା 'ଦିବ୍ୟଜ୍ୟୋତି'ଟି ଓଡ଼ିଶାର ବିଭିନ୍ନ ସହରକୁ ନିଆଯାଇଥିଲେ ମଧ୍ୟ, ଥରେ ସିଂହଭୂମିକୁ ଆଣିବାର ପ୍ରୟୋଜନୀୟତା ଅନୁଭବ କରିନଥିଲେ ରାଜ୍ୟସ୍ତରୀୟ କମିଟି । ଏହା ଯେ କେତେବଡ଼ ଏକ ଅବମାନନା ସେଇ ସ୍ୱର୍ଗତ ଆତ୍ମାଙ୍କ ପ୍ରତି, କେତେବଡ଼ ଏକ ଅବିଚାର ସିଂହଭୂମିର ଦେଢ଼ଲକ୍ଷ ଓଡ଼ିଆଙ୍କ ପ୍ରତି, ତା ଏ ପର୍ଯ୍ୟନ୍ତ କେହି ଜଣେ ହେଲେ ଭାବି ନ ଦେଖିବା ବାସ୍ତବିକ ଘୋର ପରିତାପର କଥା ।

## ।। କେହି ଭାବିଲେନି ସିଂହଭୂମି କଥା ।।

ଜନ୍ମ-ଶତ-ବାର୍ଷିକୀ ପାଳନ କାର୍ଯ୍ୟକ୍ରମ ଶେଷ ହେଲା । ଗତବର୍ଷ ଅକ୍ଟୋବର ୯ ତାରିଖରେ ଏହି ବର୍ଷଟିର ଶୁଭ ଉଦ୍‌ବୋଧନ ଯେତେବେଳେ କରାଯାଇଥିଲା, ସମସ୍ତେ ଆଶା କରିଥିଲେ ଗୋପବନ୍ଧୁଙ୍କ ଜୀବନୀର କିଛି ଅଶ୍ରୁତପୂର୍ବ ଘଟଣାର ରହସ୍ୟ ଉନ୍ମୋଚିତ ହେବ । ତାଙ୍କ କାର୍ଯ୍ୟାବଳୀର ନୂତନ ବିଶ୍ଳେଷଣ, ବୈଜ୍ଞାନିକ ଦୃଷ୍ଟିକୋଣରୁ ତାଙ୍କ ଜୀବନ ଦର୍ଶନର ଆଲୋଚନା ଏବଂ ତାଙ୍କର ନିଷ୍ଠା, ତ୍ୟାଗ, ଆଉ ଆଦର୍ଶ, ଜାତୀୟ ଜୀବନକୁ ପ୍ରଭାବିତ କରିବା ମୂଳରେ ଅନ୍ତର୍ନିହିତ କାରଣଟି ଥିଲା କ'ଣ, ସେ ବିଷୟରେ ଏକ ତାତ୍ତ୍ୱିକ ବ୍ୟାଖ୍ୟା କରାଯିବ ।

କିନ୍ତୁ କାହିଁ, ଏ ବର୍ଷତମାମ ଯେତେ ଯୋଉଠି ସଭାସମିତି କରାଗଲା, ଓଡ଼ିଶାର ସହର, ନଗର, ପୁରପଲ୍ଲୀରେ, ସେ ସବୁତ ଏକ ଦାୟିତ୍ୱ ତୁଲେଇବା ଦୃଷ୍ଟିରୁ କେବଳ ଗତାନୁଗତିକ ଭାଷଣ, ଆଉ ବକ୍ତୃତା କାର୍ଯ୍ୟକ୍ରମର ପାଳି ଭିତରେଇ ଶେଷ ହେଲା ।

ଗୋପବନ୍ଧୁଙ୍କ ଗୁଣାବଳୀକୁ ଦୋହରେଇ ଦୋହରେଇ କହିବାର ଟିକିଏ ବାକ୍‌ଚାତୁରୀ, କିମ୍ବା କିଛିଟା ଆଗକୁ ବଢ଼ି, ମଣିଷ ରୂପରେ ସେ ଜଣେ ଦେବତା ଥିଲେ, ଏଇ ମତାମତ ଦେଇ କ୍ଷାନ୍ତ ହେବାର ଏକ ହାସ୍ୟାସ୍ପଦ ଆତ୍ମଭଣ୍ଡତା ।

ମନ୍ଦିର-ମାଳିନୀ ଓଡ଼ିଶାରେ, ଓଡ଼ିଆପୁଏ, କାଠ ବା ପଥରର ମୂର୍ତ୍ତିଟାଏ ଗଢ଼ି, ମେଞ୍ଚାଏ ଚନ୍ଦନ ବା ସିନ୍ଦୁର ବୋଳି ଦେଇ, ଠାକୁର ବୋଲି ମୁଣ୍ଡିଆ

ମାରିବାରେ ଖୁବ୍ ପାରଙ୍ଗମ ସ୍ୱା ଆମେ ଜାଣୁ । ଜୀବନର ମୁକ୍ତି ଆଉ ସଦ୍‌ଗତି ହୋଇଯାଏ ସେଇଥିରେ ବୋଲି ଆମର ଏକ ପରମ୍ପରାଗତ ଧାରଣା ।

ଏଇ ଧାରଣାର ବଶବର୍ତ୍ତୀ ହୋଇ, ଜନ୍ମ-ଶତବାର୍ଷିକୀ ଅବକାଶରେ କେଉଁଠି କେଉଁଠି ଗୋପବନ୍ଧୁଙ୍କୁ ମୂର୍ତ୍ତି ଆକାରରେ ଗଢ଼ି, କୋଉଠି ଟାଉନ୍ ହଲରେ, କୋଉଠି ରାସ୍ତାର କି ଛକ ଉପରେ ବସେଇ ଦେଇ, ବାହ୍ଵାସ୍ଫୋଟ ମାରିଛନ୍ତି ଅବଶ୍ୟ, ପୁଣି କେତେକ ଅନୁଷ୍ଠାନ ତରଫରୁ ଖଣ୍ଡେ ଖଣ୍ଡେ ସ୍ମରଣିକା, ବା କୌଣସି ପ୍ରତିଷ୍ଠାନ ତରଫରୁ ତାଙ୍କ କବିତା ବହିରୁ ପାଞ୍ଚ ଦଶ ହଜାର ଛପାହୋଇ ଶସ୍ତା ଦାମରେ ବିକ୍ରୀ ହେଉଛି ସ୍ୱା' ବି ହୁଏତ ଶୁଣିଲୁ । କିନ୍ତୁ ସେଥିରେ ନୂତନତ୍ୱ ବା ଅସାଧାରଣ ଶାଧିତ ହେବାର କୃତିତ୍ୱ ରହିଲା କ'ଣ ? ଗୋପବନ୍ଧୁଙ୍କ କାବ୍ୟ କବିତା କୋଉ ଓଡ଼ିଆ ପୁଅ ଏ ଯାଏଁ ନପଢ଼ିଛି, ବା ଏ ଶହେ ବର୍ଷ ଭିତରେ ସେ ତ୍ୟାଗୀ ମହାପୁରୁଷ କୋଉଠି କ'ଣ କରି ଯାଇଛନ୍ତି ଏ ଜାତି ପାଇଁ, ସେ କଥା ବା କିଏ ନ ଜାଣିଛି ଯେ, ବହି ଗୁଡ଼ି ବାଣ୍ଟି ବାରେ ବା ଓଡ଼ିଶାରେ ଏଠି ସେଠି ଭାଷଣ ଦେଇ ବୁଲିବାରେ ଅସାଧ ସାଧିତ ହୋଇଗଲା ବୋଲି ଏତେ ଗର୍ବ ? ଏଇ ଜନ୍ମଶତବାର୍ଷିକୀଟିକୁ ସର୍ବ-ଭାରତୀୟ ସ୍ତରରେ ଲୋକପ୍ରିୟ କରିବାର ଯେଉଁ ସିଦ୍ଧାନ୍ତ ନିଆଯାଇଥିଲା ପ୍ରଥମେ, ତା'ର କିଛି ଅଗ୍ରଗତି ହେଲାକି ? ଗାନ୍ଧୀ, ନେହେରୁଙ୍କ ସମକକ୍ଷ ନେତା ଭାବରେ ଗୋପବନ୍ଧୁଙ୍କ ଭାବମୂର୍ତ୍ତିକୁ କୋଟି କୋଟି ଲୋକଙ୍କ ଆଗରେ ଠିଆ କରାଇ, ବିଭିନ୍ନ ପ୍ରଦେଶର ଭାଷାଭାଷି ଲୋକଙ୍କ ଭିତରେ ଉତ୍କଳମଣିଙ୍କ ଜୀବନ ଦର୍ଶନକୁ ପ୍ରଚାର କରାଇବା ପାଇଁ ଯୋଉ ପରିକଳ୍ପନା କରା-ଯାଇଥିଲା ପ୍ରାରମ୍ଭରେ, ତା'ର ପରିଣତି କ'ଣ ହେଲା ? ମହାତ୍ମା ଗାନ୍ଧୀଙ୍କ ବହୁତ ଆଗରୁ, ଗୋପବନ୍ଧୁ ସାର୍ବଜନୀନ ଦୃଷ୍ଟିକୋଣ ନେଇ ଜାତି-ବର୍ଣ୍ଣ-ନିର୍ବିଶେଷରେ ପ୍ରତ୍ୟେକ ମଣିଷ ଭିତରେ ପରମବ୍ରହ୍ମ ରହିଛନ୍ତି ବୋଲି ଭଗବତ୍ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇଥିଲେ, । ହାଡ଼ି, ପାଣ, ବାଉରୀ, ଚମାର ସମସ୍ତଙ୍କ ଆଡ଼କୁ ମମତାର ହାତ ପ୍ରସାରିତ କରିଥିଲେ । ଶ୍ରୀ କ୍ଷେତ୍ର-ଧାମ ହିଁଉଛି ଆଚଣ୍ଡାଳ ବ୍ରାହ୍ମଣ ସମସ୍ତଙ୍କର ମୁକ୍ତି ତୀର୍ଥ, ଏଇଠିକି ଆସନ୍ତୁ ବିଶ୍ୱବ୍ରହ୍ମାଣ୍ଡର ଶ୍ରେଷ୍ଠ ବଡ଼ ସମସ୍ତେ, ସେ ଆହ୍ୱାନ ଦେଇଥିଲେ । ଖାଲି ସେତିକି ନୁହେଁ ଭାରତର ଯେ କୌଣସି ପ୍ରାନ୍ତରେ ଥିଲେ ମଧ୍ୟ ସେ ନୀଳାଚଳ ଧାମ୍‌ରେ ଅଛନ୍ତି, ଏ ବିଶ୍ୱ-ମୈତ୍ରୀ-ଭାବ ଥିଲା ତାଙ୍କ ଚରିତ୍ର

ଅନ୍ତରର କଥା । ଏ ଭାବଧାରାକୁ ସର୍ବଭାରତୀୟ ସ୍ତରରେ ପ୍ରଚାର କରିବା ପାଇଁ କି କାର୍ଯ୍ୟାନୁଷ୍ଠାନ ବା ଗ୍ରହଣ କରାଗଲା ଶେଷ୍ ପର୍ଯ୍ୟନ୍ତ ?

ମହାତ୍ମାଙ୍କର ଏକ ମହାନ୍ କାର୍ଯ୍ୟ ଥିଲା ଅସ୍ପୃଶ୍ୟତା ନିବାରଣ । ଅଥଚ ଗାନ୍ଧି, ହରିଜନମାନଙ୍କ ପାଇଁ କହିବାର ବହୁତ ଆଗରୁ, ହାଡ଼ି, ପାଣ, ବାଉରୀଙ୍କ ମୃତ୍ୟୁରେ ନଗ୍ନ ନାଳର ପୋଖ ବଡ଼ିପାଣି ଦୂଷିତ ଆଉ ପଙ୍କିଳ ହୋଇ ବହିଯାଉଥିଲା, ସେଥିରୁ ଆଞ୍ଜୁଳାଏ ଆଞ୍ଜୁଳାଏ ନେଇ ପିଇବାରେ ଗୋପବନ୍ଧୁଙ୍କର କୌଣସି ବିକାର ନଥିଲା । ଗୋପବନ୍ଧୁଙ୍କର ଏ ମହାନୁଭବତା ସମ୍ବନ୍ଧରେ ସର୍ବଭାରତୀୟ ସ୍ତରରେ କିଏ କ'ଣ ଜାଣିଲେ ?

ନେହେରୁଙ୍କୁ ଜଣେ ମହାପୁରୁଷ, ବୋଲି କୁହାଗଲା । କାରଣ ସେ ଉଇଲ୍‌ରେ ଲେଖି ଗଲେ—ମୃତ୍ୟୁପରେ ତାଙ୍କ ଚିତା ଭସ୍ମକୁ ଭାରତର କ୍ଷେତଆଡ଼େ ବିଞ୍ଚିଇ ଦିଆଯାଉ । ଅଥଚ ନେହେରୁଙ୍କର ଏ ଚିନ୍ତାଧାରାର ବହୁ ବହୁ ବର୍ଷ ଆଗରୁ, ଗୋପବନ୍ଧୁ, ଆହୁରି ଚାତ୍ତ୍ୱିକ ଆହୁରି ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ଭାବୋଚ୍ଛ୍ୱାସ ପ୍ରକାଶ କରିଯାଇଥିଲେ ତାଙ୍କ କବିତାରେ—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ,
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।

ଏ ଅନବଦ୍ୟ କବିତାକୁ ଓଡ଼ିଶା ବାହାରେ ଆଉ କୋଉ ପ୍ରଦେଶର ଲୋକେ କେତେଜଣ ବା ଜାଣିଲେ ?

ଗୋପବନ୍ଧୁଙ୍କୁ ଜଣେ ଧର୍ମ-ପ୍ରାଣ, ମାନବବାନ୍ ବ୍ୟକ୍ତି ବୋଲି କହି ଅମେ ତାଙ୍କ ଚରିତ୍ରର ଏକ ଉଦାସ ଦିଗକୁ କେବଳ ପ୍ରାଧାନ୍ୟ ଦେବାକୁ ଚେଷ୍ଟା କରୁ । ଅଥଚ ତରୁଣ ଯୁବ ବୟସରେ ସେ ଜଣେ ଦୁର୍ଦ୍ଦାନ୍ତ ବିପ୍ଳବୀ ଥିଲେ, ସନ୍ନାସବାଦୀ ଶଶୀଭୂଷଣ ଆଉ ଖୁଦିରାମଙ୍କ ସହିତ ମିଶିଥିଲେ, ବଙ୍ଗଳାର ଅନୁଶୀଳନ ସମିତି ଢାଞ୍ଚାରେ ଆଖଡ଼ା ଘର ବସେଇ ଯୁବକଙ୍କୁ କୁସ୍ତି-କସରତ୍, ଲାଠି, ଖଣ୍ଡା ଖେଳ ଶିକ୍ଷାଦେଇ ଗୁପ୍ତ ସମିତିମାନ ଗଢିଥିଲେ ବ୍ରିଟିଶ ଶାସକ ହାତରୁ ଭାରତକୁ ମୁକ୍ତ କରିବାପାଇଁ ଅଗ୍ନି-ଶପଥର ସାଧକ ଥିଲେ, ଏ ସମ୍ବନ୍ଧରେ ଭାରତର ପଚିଶ କୋଟି ଲୋକ ଜାଣନ୍ତି

ନଜାଣିଲୁ, ଅନ୍ତତଃ ଓଡ଼ିଶାର ଜନସାଧାରଣ ବା ବିସ୍ତାରିତ ଭାବରେ ଜାଣିବାର ସୁଯୋଗ ପାଇଲେ କି ?

ପୁଣି ସେଇ ବ୍ରିଟିଶ ଅମଳରେ, ପରାଧୀନତାର ଗ୍ଲାନିରେ ସାରା ଭାରତ ଯେତେବେଳେ ଛଟପଟ ହେଉଥିଲା, ସେତେବେଳେ ବି ଉଗ୍ର ପ୍ରାଦେଶିକତାର ସଂକୀର୍ଣ୍ଣ ଦୃଷ୍ଟିକୋଣ ନେଇ, ବଙ୍ଗାଳି, ବିହାରୀ, ତେଲଗୁ, ଜାତିର ନେତାଏ ନିଜ ନିଜ ପ୍ରଦେଶର ସୀମାନ୍ତ ବଢ଼ାଇବା ପାଇଁ ଦରିଦ୍ର ଓଡ଼ିଆଙ୍କ ଉପରେ ଯେଉଁ ଜୁଲୁମ ଆରମ୍ଭ କରିଥିଲେ, ତାର ପ୍ରତିକାର ପାଇଁ କୁଳବୃଦ୍ଧ ମଧୁସୂଦନ ଦାସ 'ଉତ୍କଳ ସମ୍ମିଳନୀ' ଆରମ୍ଭ କରିଥିଲେ । ଗୋପବନ୍ଧୁ ସେ ଅନୁଷ୍ଠାନର ଜଣେ ପ୍ରଧାନ କର୍ମକର୍ତ୍ତା ଥାଇ ମଧ୍ୟ, ଯେତେ-ବେଳେ କଂଗ୍ରେସ ଅନୁଷ୍ଠାନ ପ୍ରାଦେଶିକ ସ୍ୱାର୍ଥକୁ ବାଦ୍ ଦେଇ, ସ୍ୱରାଜ୍ ପ୍ରାପ୍ତି ପାଇଁ ସମସ୍ତେ ଏକଜୁଟ୍ ହେବା ଉଚିତ୍ ବୋଲି ନାଗପୁର କଂଗ୍ରେସରେ ସିଦ୍ଧାନ୍ତ ନେଲେ ସେ ସିଦ୍ଧାନ୍ତକୁ ଗୋପବନ୍ଧୁ ଯେପରି ସର୍ବାନ୍ତ କରଣରେ ଅନୁମୋଦନ କରି 'ଉତ୍କଳ ସମ୍ମିଳନୀ'ର ଲକ୍ଷ୍ୟ ଜାତୀୟ କଂଗ୍ରେସର ଲକ୍ଷ୍ୟ ଅନୁରୂପ ହେଉ ବୋଲି କହି ନୂତନ ଧାରାର ପ୍ରବର୍ତ୍ତକ ଭାବରେ ଉଦାରତାର ଏକ ବିରାଟ ଆଦର୍ଶ ଦେଖାଇଥିଲେ, ସେ ସମ୍ବନ୍ଧରେ ଓଡ଼ିଶା ବାହାରେ ଅନ୍ୟାନ୍ୟ ପ୍ରଦେଶର ଲୋକ କ'ଣ ଜାଣିଲେ ?

ସର୍ବୋପରି ଗୋପବନ୍ଧୁଙ୍କର ଏଇ ଜନ୍ମ-ଶତବାର୍ଷିକୀ ପାଳନ ଅବ-କାଶରେ କେବଳ ଦିଲ୍ଲୀର ଏକ ସଭାଗୃହରେ ମୁଷ୍ଟିମେୟ କେତେଜଣ ଶ୍ରୋତାଙ୍କ ଆଗରେ ଥରେ ଅଧେ ଭାଷଣ-ଫାଷଣ ସିନା ହେଲା, କିନ୍ତୁ ସର୍ବ-ଭାରତୀୟ ସ୍ତରରେ ଦୂରେ ଥାଉ, ରାଜ୍ୟ ସ୍ତରରେ ବି ଗୋପବନ୍ଧୁଙ୍କ କାର୍ଯ୍ୟା-ବଳୀର କି ରିସର୍ଚ୍ଚ କରାଗଲା ? ଆଗରୁ ସ୍ଥିର କରାଯାଇଥିଲା, କଲିକତାରେ ଗୋପବନ୍ଧୁ ରହୁଥିଲାବେଳେ ଓଡ଼ିଆ ଶ୍ରମିକମାନଙ୍କୁ କିପରି ସଂଗଠିତ କରି-ଥିଲେ, ନୈଶ ବିଦ୍ୟାଳୟମାନ ଆରମ୍ଭ କରିଥିଲେ, ବଙ୍ଗାଳୀମାନଙ୍କ ଦ୍ୱାରା ଲାଞ୍ଛିତ ଓଡ଼ିଆ ଶ୍ରମିକ ଶ୍ରେଣୀ ଭିତରେ ଜାତୀୟତାବୋଧ ଜାଗ୍ରତ କରାଇ-ଥିଲେ, ସେମାନଙ୍କୁ ସାହସୀ ହେବାପାଇଁ ପ୍ରେରଣା ଯୋଗାଇଥିଲେ···ଏ ସବୁ ପଛରେ ତାଙ୍କର ଦୃଷ୍ଟିକୋଣ କ'ଣ ଥିଲା ଏବଂ ତାର ସୁଦୂର ପରିଣତି କ'ଣ ହେଲା ତା'ର ଏକ ଧାରାବାହିକ ଅନୁଶୀଳନ କରାଯିବ । ଅଥଚ ସେ କାର୍ଯ୍ୟ-ଟିତ କାହିଁ ହେଲା ନାହିଁ ?

ପୁଣି ସେଇ ସମ୍ବାଦଟି ପଢ଼ିଲାପରେ ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜର ସଭାପତି ଭାବରେ ମୁଁ ତତ୍‌କାଳୀନ କଂଗ୍ରେସ ଅଧ୍ୟକ୍ଷ ଶ୍ରୀଯୁକ୍ତ ଚିନ୍ତାମଣି ଜେନାଙ୍କୁ, ଜାମସେଦ୍‌ପୁରରୁ ଚିଠି ଲେଖି ଯେଉଁ ଅନୁରୋଧ କରିଥିଲି : ସିଂହଭୂମିରେ ଗୋପବନ୍ଧୁଙ୍କର ଦଶବର୍ଷର ଓଡ଼ିଆ ଶିକ୍ଷା ଆନ୍ଦୋଳନ ସମ୍ବନ୍ଧରେ ଆନୁସଙ୍ଗିକ ତଥ୍ୟ ସଂଗ୍ରହ କରିବା ଦିଗରେ ବ୍ୟବସ୍ଥା ଗ୍ରହଣ କରାଯାଉ, କାହିଁ ସେ ପ୍ରସ୍ତାବଟିକୁ ମଧ୍ୟ କୌଣସି ଗୁରୁତ୍ୱ ଦିଆଗଲାନାହିଁ ।

ସିଂହଭୂମି ଥିଲା ବାସ୍ତେ ଆପଣଙ୍କ କର୍ମମୟ ଜୀବନର ପ୍ରଥମ ଓ ପ୍ରଧାନ କର୍ମଭୂମି । ଓଡ଼ିଶାକୁ କଂଗ୍ରେସ ଆଣିବାର ପ୍ରାରମ୍ଭିକ ଘୋଷଣା ସେ ଏଇଠୁ କରିଥିଲେ । ପୁରୀ, କଟକ, ବାଲେଶ୍ୱରରେ ୧୯୨୦ ପର୍ଯ୍ୟନ୍ତ, ସେ ଥିଲେ ଜଣେ ସମାଜସେବୀ । ବଡ଼ି ମରୁଡ଼ିରେ ଚୁଡ଼ା-ଚାଉଳ-ଗୁଡ଼ ବାଣ୍ଟୁଥିଲେ ସ୍ୱେଚ୍ଛାସେବକ ନେଇ ଗାଁ-ଗଣ୍ଡା ବୁଲି ବୁଲି, କିନ୍ତୁ ସିଂହଭୂମିର ଚକ୍ରଧରପୁରଠାରେ ତାଙ୍କ ରାଜନୈତିକ ଜୀବନର ପ୍ରଥମ ଉନ୍ମେଷ ହେଲା ଉତ୍କଳ ସମ୍ମିଳନୀ ଅଧିବେଶନରେ, ଓଡ଼ିଶାର ତତ୍‌କାଳୀନ ନେତାମାନଙ୍କୁ ବିରୋଧ କରି । କଂଗ୍ରେସ ବାର୍ତ୍ତାକୁ ବିଜ୍ଞାପିତ କରିବାରେ ସେ ହୋଇଥିଲେ ଅଗ୍ରଣୀ । ମୁକ୍ତି ଭଗୀରଥର ପ୍ରଥମ ତରଙ୍ଗ ଧାରାକୁ, ସିଂହଭୂମିର ପୁଣ୍ୟ ମାଟିରୁ ସେ ବୁହାଇ ନେଇଥିଲେ ଶ୍ରୀକ୍ଷେତ୍ର ଧାମର ବେଳାଭୂମି ପର୍ଯ୍ୟନ୍ତ । ଏ ଯେଉଁ କୀର୍ତ୍ତି, ଏ ଯେଉଁ ସାଫଲ୍ୟ ତାଙ୍କ ଜୀବନର, ତାର ତୁଳନା, ତାଙ୍କର ସମସ୍ତ ଜୀବନର କର୍ମ-ସାଧନା ଭିତରେ ଆଜି କେଉଁଠି ଅଛି କି ?

ଏଇ ପରିପ୍ରେକ୍ଷୀରେ ଗୋପବନ୍ଧୁଙ୍କ ଆଦ୍ୟ କର୍ମପୀଠ ସିଂହଭୂମି ଓଡ଼ିଆ ଜାତି ପାଇଁ ତ ଏକ ମହାତୀର୍ଥ ! ସେ ତୀର୍ଥ-ଧାମକୁ ଓଡ଼ିଶାର ଗଣ୍ୟ-ମାନ୍ୟ ବ୍ୟକ୍ତି, ନେତା, ସାମ୍ବାଦିକ, କବି, ସାହିତ୍ୟିକ କେହି ଆସିଲେ କି ଏଇ ଶତବାର୍ଷିକୀ ଅବକାଶରେ ଥରେ ଶ୍ରଦ୍ଧାଞ୍ଜଳି ଦେବା ପାଇଁ ?

ବିପ୍ଳବୀ ବାଘା ଯତୀନଙ୍କ ସ୍ମୃତିକୁ ସମ୍ମାନ ଦେବାପାଇଁ ପଶ୍ଚିମ ବଙ୍ଗର ତିନିକୋଟି ଲୋକଙ୍କ ପ୍ରତିନିଧି ଭାବରେ 'ରକ୍ତ ତୀର୍ଥ-ଯାତ୍ରୀ' ଦଳ ପ୍ରତିବର୍ଷ ଆସନ୍ତି ବାଲେଶ୍ୱର । ବୀର ସହିଦ୍‌ଙ୍କ କର୍ମ-ପୀଠ ଆଜି ସମାଧି ପୀଠରେ ଶ୍ରଦ୍ଧାଞ୍ଜଳି ଦେବା ପାଇଁ । ଅଥଚ ଗୋପବନ୍ଧୁ ଏ ଜାତିର ଜନକ, ଏ ଜାତିର ପୁରୁଷୋତ୍ତମ ସଂସ୍କୃତିର ପ୍ରତୀକ ବୋଲି ଆମେ ମୁହଁରେ କହୁଥିଲେ ବି ତାଙ୍କର ଜନ୍ମ-ଶତବାର୍ଷିକୀରେ ଅଢ଼େଇକୋଟି ଓଡ଼ିଆଙ୍କ

ପ୍ରତ୍ୟକ୍ଷ ଭାବରେ ଅନ୍ତତଃ କେତେ ଜଣ ସଙ୍ଘବଦ୍ଧ ଭାବରେ ଆସି ଧଳଭୂମିର ଚାକୁଲିଆଠାରେ କ ସିଂହଭୂମିର ଚକ୍ରଧରପୁରଠାରେ ଦୁଇଟୋପା ଲୁହ ଢାଳି ଦେଇ ଯାଇପାରିଲେ ନାହିଁ ଏହାଠୁ ବଳି ଅନୁଶୋଚନାର କଥା କ'ଣ ହୋଇପାରେ ?

## ।। ପୁରୀ ଉତ୍କଳ ସମ୍ମିଳନୀରେ ସିଂହଭୂମି ପ୍ରସଙ୍ଗ ।।

ଓଡ଼ିଆ ଜାତିର କର୍ମବିମୁଖତା ହିଁ ଓଡ଼ିଶା ସହିତ ସିଂହଭୂମି ମିଶ୍ରଣ ସମସ୍ୟା ସମ୍ପାଦନ ପାଇଁ ଏକ ଅସମାଧିତ ପ୍ରଶ୍ନ ହୋଇ ରହିଗଲା ।

ଓଡ଼ିଶା ଦିନେ କପିଶାନଦୀର (ମେଦିନୀପୁର ଜିଲ୍ଲାର କଂସାଇ) ଉତ୍ତରରୁ ଆରମ୍ଭ କରି ମେଦିନୀପୁରର ଦକ୍ଷିଣ ପଶ୍ଚିମାଂଶ, ବାଙ୍କୁଡ଼ା, ମାନଭୂମି ଓ ସିଂହଭୂମି ସମେତ ସୁରଗୁଜା ରାଜ୍ୟର ଦକ୍ଷିଣ ପୂର୍ବାଞ୍ଚଳ ଯାଏଁ ବିସ୍ତୃତ ଥିଲା ।

ମୁକୁନ୍ଦଦେବଙ୍କ ସମୟରେ କଳାପାହାଡ଼ ଆସିଥିଲା ଓଡ଼ିଶା । ୧୭୫୦ ବେଳକୁ ପୁରୀ ଜିଲ୍ଲାର ଦକ୍ଷିଣ ସୀମା ମୁସଲମାନ ସାମ୍ରାଜ୍ୟଭୁକ୍ତ ହୋଇ ଯାଇଥିଲା ।

୧୭୬୨ ଏପ୍ରିଲ ମାସରେ ଦିଲ୍ଲୀ ସମ୍ରାଟ ଶାହାଆଲମଙ୍କ ଫରମାନ ମୁତାବକ ଇଂରେଜମାନେ ସମଗ୍ର ଉତ୍ତର ସର୍କାର ଦାନ ସ୍ୱରୂପ ପାଇଥିଲେ । ୧୮୦୩ ବେଳକୁ ସମଗ୍ର ଦକ୍ଷିଣ ଓଡ଼ିଶା ଓ ଉତ୍ତର ଓଡ଼ିଶାରୁ ମେଦିନୀପୁର, ବାଲେଶ୍ୱର ଅଞ୍ଚଳ, ଇଂରେଜମାନେ ଦଖଲ କରିନେଲେ । ବଙ୍ଗ ପ୍ରଦେଶ ସହିତ ମରହଟ୍ଟା ଓ ପୁରୀ ରାଜାଙ୍କ ଅଧୀନରେ ଥିବା କଟକ ଅଞ୍ଚଳ ସାମିଲ ହୋଇଗଲା । ସମ୍ବଲପୁର ଲଗାଏତ ଗଡ଼ଜାତଗୁଡ଼ିକୁ ମରହଟ୍ଟାଙ୍କଠାରୁ ଛଡ଼ାଇ ନେଇ ଦକ୍ଷିଣ ପଶ୍ଚିମ ସୀମାନ୍ତ ଅଞ୍ଚଳ ରୂପେ (**South west frontier Agency**) ବଙ୍ଗ ପ୍ରଦେଶ ସହିତ ମିଶାଇ ଦିଆଗଲା । ଯା'କୁ ରଖାଗଲା ଛୋଟ ନାଗପୁର କମିଶନରଙ୍କ ଅଧୀନରେ ।

ମାନ୍ଦ୍ରାଜ ପ୍ରଦେଶଭୁକ୍ତ ଓଡ଼ିଆ ଅଞ୍ଚଳରେ ତେଲୁଗୁ, ବଙ୍ଗଳାର ଓଡ଼ିଆ ଅଞ୍ଚଳରେ ବଙ୍ଗଳା ଓ ମଧ୍ୟ ପ୍ରଦେଶର ଓଡ଼ିଆ ଅଞ୍ଚଳରେ ହିନ୍ଦୀ ଭାଷା ପାଇଲା ପ୍ରାଧାନ୍ୟ, ଘଟଣା ଚକ୍ରରେ ଓଡ଼ିଆମାନେ ତିନୋଟି ଶାସନାଧୀନରେ ରହିଲେ । ଫଳରେ ଓଡ଼ିଆ ଭାଷାର ଭବିଷ୍ୟତ ହେଲା ଅନ୍ଧକାରାଚ୍ଛନ୍ନ ।

୧୮୯୨ରେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠିତ ହେଲା । ସମ୍ପାଦକ ହେଲେ ଗୌରୀଶଙ୍କର ରାୟ । ସମ୍ମେଳନର ଗଞ୍ଜାମ ଅଧିବେଶନରେ ମଧୁବାବୁ କହିଲେ : ଓଡ଼ିଆମାନେ ବିଭିନ୍ନ ସରକାରଙ୍କ ଅଧୀନରେ ରହି ନିଜର ଭାଷା ଆଉ ସ୍ୱାତନ୍ତ୍ର୍ୟ ହରାଇଲେଣି । ଏକଶାସନାଧୀନ ହେବା ଓଡ଼ିଆଙ୍କ ପକ୍ଷରେ ଏକାନ୍ତ ଦର୍କାର । ଏ ସମ୍ମେଳନୀର ମୂଳ ଲକ୍ଷ୍ୟ ହେଉ—ସ୍ୱତନ୍ତ୍ର ଓଡ଼ିଶା ପାଇବା ପାଇଁ ଆନ୍ଦୋଳନ ।

୧୮୮୫ରେ ପ୍ରତିଷ୍ଠିତ ହେଲା ଭାରତର ଜାତୀୟ କଂଗ୍ରେସ । ୧୯୦୩ରେ ମାନ୍ଦ୍ରାଜଠାରେ ବସିଥିବା ଅଧିବେଶନରେ ମଧୁବାବୁ ଯୋଗ ଦେଲେ । ପ୍ରସ୍ତାବ ଆଣିଲେ—ବିଭିନ୍ନ ପ୍ରଦେଶରେ ଥିବା ଓଡ଼ିଆମାନଙ୍କୁ ଏକ ଶାସନାଧୀନ କରିବା ନିମନ୍ତେ ଏ ସଭା ଅନୁମୋଦନ କରୁ ।

କିନ୍ତୁ ଏ ପ୍ରସ୍ତାବକୁ ବିରୋଧ କଲେ ତେଲେଙ୍ଗା ପ୍ରତିନିଧିମାନେ । ସେମାନେ କହିଲେ—ଗଞ୍ଜାମ ଜିଲ୍ଲା, କିମ୍ବା ମାନ୍ଦ୍ରାଜ ପ୍ରଦେଶରେ ଥିବା କୌଣସି ଅଞ୍ଚଳକୁ ଆମେ ଓଡ଼ିଶା ସହିତ ମିଶିବା ପାଇଁ ସମର୍ଥନ କରିବୁ ନାହିଁ । ଓଡ଼ିଆମାନେ ଏପରି ଦାବୀ କଲେ ଗଣ୍ଡଗୋଳ ହେବ ।

କଂଗ୍ରେସର ବଡ଼ପଣ୍ଡାମାନେ, ତେଲଗୁ ପ୍ରତିନିଧିମାନଙ୍କ ଅଡ଼କୁ ଢଳିଲେ ।

ଏହା ମଧୁବାବୁଙ୍କୁ ଖୁବ୍ ବାଧିଲା । ଓଡ଼ିଆ ସଂଖ୍ୟା ଲଘୁ ହୋଇ କଂଗ୍ରେସ ସେମାନଙ୍କ ଦାବୀ ଗୁରୁତ୍ୱକୁ ନେଲା ନାହିଁ ଏକଥା ସେ ଅନୁଭବ କଲେ । ସେଇଦିନ ମୁହେଁ ମୁହେଁ ପ୍ରତିବାଦ କରି କଂଗ୍ରେସ ଅଧିବେଶନ ଛାଡ଼ି ଚାଲି ଆସିଲେ ।

ତାପରେ ଉତ୍କଳ ସମ୍ମେଳନୀ ଅନୁଷ୍ଠାନକୁ ମଜବୁତ୍ କରିବା କାର୍ଯ୍ୟରେ ଲାଗି ପଡ଼ିଲେ ସେ । ଜନମତ ଜାଗ୍ରତ କରାଇବାପାଇଁ ବୁଲିଲେ ଗ୍ରାମଆଡ଼େ । ସମ୍ମେଳନୀର ସାଂଗଠନିକ ପରିସର ବିସ୍ତରକୁ ଲାଗିଲେ ଓଡ଼ିଶାର

ରାଜା, ମହାରାଜା ଗୁଣୀ, ମାନୀ, ଧନ-ଦରିଦ୍ର ସମସ୍ତଙ୍କୁ । ଜାତି ପ୍ରେମ-ବହ୍ନି ପ୍ରଜ୍ୱଳିତ' କରିବା ଆଦର୍ଶରେ ଅନୁପ୍ରାଣିତ କରାଇଲେ ଜନସାଧାରଣଙ୍କୁ ।

୧୯୦୧ ସାଲକଥା । ମଧୁବାବୁ ଭାଇସ୍‌ରାୟ ଲର୍ଡ କର୍ଜନଙ୍କ ସହିତ ଦେଖାକଲେ ସିମଲାରେ । ପ୍ରାଞ୍ଜଳ ଭାବେ ବୁଝେଇଦେଲେ ଓଡ଼ିଶାର ପରିସ୍ଥିତି । ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ହେଉ, ଓଡ଼ିଆ ଭାଷି ଅଞ୍ଚଳକୁ ଏକ ଶାସନାଧୀନ କରାଯାଉ—ଏ ଦୁଇଟି ଦାବୀକୁ ବହୁ ତଥ୍ୟ ସମ୍ବଳିତ ଯୁକ୍ତିଦେଇ ସେ ବୁଝାଇ ଦେଲେ ।

୧୯୦୩ ଡିସେମ୍ବର ୩୦ରେ ଉତ୍କଳ ସମ୍ମେଳନୀର ଯୋଉ ଅଧି-ବେଶନ ବସିଲା, ସେଥିରେ ଓଡ଼ିଶା ସ୍ୱତନ୍ତ୍ର ଶାସନାଧୀନ ହେବା ଉଚିତ ବୋଲି ଏକ ପ୍ରସ୍ତାବକୁ ମଧ୍ୟ ଅଗ୍ରାଧିକାର ଦିଆଗଲା ।

ଏ ସମ୍ମେଳନୀରେ ଖଲିକୋଟ ମହାରାଜା ହରିହର ମର୍ଦ୍ଦରାଜ, ମୟୂରଭଞ୍ଜ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ, ସିଂହଭୂମିର ବେରାର ଜମିଦାର, ଇଚ୍ଛାପୁର ପୀଠପତି, ସୋଣୁଆର ଜମିଦାର, ପାରଳାଖେମୁଣ୍ଡି ମହାରାଜା, ବାମଣ୍ଡା ରାଜା ପ୍ରଭୃତି ଯୋଗ ଦେଇଥିଲେ ।

ଏ ସଭାରେ ଖରସୁଆଁର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ମଧ୍ୟ ଉପସ୍ଥିତ ଥିଲେ ।

ସଭାର ନେତୃତ୍ୱ ନେଇଥିଲେ ଉତ୍କଳ ଗୌରବ ମଧୁସୂଦନ ଦାସ ।

ଏଇଠାରେ ଉତ୍କଳ ସମ୍ମେଳନୀର ଆହ୍ୱାନରେ ଦେଶ ମିଶ୍ରଣ ଆନ୍ଦୋଳନ ଏକ ଜୀବନ୍ତ ରୂପ ଧାରଣ କଲା । ଏଇ ଆନ୍ଦୋଳନର ବ୍ୟାପକତା, ମଧ୍ୟ-ପ୍ରଦେଶ ଓ ବେରାର ର ଚିଫ୍ କମିଶନର ସାର୍ ଆଣ୍ଡ୍ରୁଜ୍ ଫ୍ରେଜରଙ୍କୁ ପ୍ରଭାବିତ କଲା । ସେ ଓଡ଼ିଶା ଦାବୀର ଯଥାର୍ଥତା ହୃଦୟଙ୍ଗମ କଲେ । ସମ୍ବଲପୁର, କଳାହାଣ୍ଡି, ପାଟଣା ପ୍ରଭୃତି ଅଞ୍ଚଳ ପରିଭ୍ରମଣ କରି ସେ ଦେଖିଲେ—ଓଡ଼ିଆମାନେ ଛତିଶଗଡ଼ ଅଞ୍ଚଳ ସହିତ ସାମିଲ ରହି, ସ୍କୁଲମାନଙ୍କରେ ଓଡ଼ିଆ ଭାଷାରେ ପଢ଼ିବା ଓ କଚେରୀରେ ମାମଲାମକଦ୍ଦମା କାର୍ଯ୍ୟ କରିବାକୁ ସୁବିଧା ନ ପାଇବା ଦ୍ୱାରା ଘୋର ଅସନ୍ତୋଷ ଭିତରେ ଛଟପଟ ହେଉଛନ୍ତି । ହୁଏତ ଏଇ ଅସନ୍ତୋଷ ଦିନେ ବିଦ୍ରୋହରେ ମଧ୍ୟ ପରିଣତ ହୋଇପାରେ ।

ଏପରି ଭାବବା ମୂଳରେ ଅସଲ କାରଣ ଥିଲା, ସେତେବେଳେ ବଙ୍ଗଳାରେ ସନ୍ତ୍ରାସବାଦୀ ବିପ୍ଳବୀମାନେ ବଙ୍ଗ ବ୍ୟବଚ୍ଛେଦ ନାମରେ ଆନ୍ଦୋଳନ ଆରମ୍ଭ କରିଦେଇଥିଲେ । ସେଇ ଆନ୍ଦୋଳନ ମେଦିନୀପୁର ବାଟେ ଓଡ଼ିଶା ଭିତରକୁ ସଂକ୍ରମିତ ହୋଇ ଆସିବାର ଅନେକ ସୂଚନା ମଧ୍ୟ ମିଳୁ-ଥିଲା । ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳର ଦୁଃଖ, କ୍ଷୋଭ, ଓ ରୁଦ୍ଧବେଦନା ଏକ ପ୍ରଚ୍ଛନ୍ନ ବିଦ୍ରୋହରୂପେ ମୁଣ୍ଡ ଟେକିବ, ଏକଥା ସାର୍ ଫ୍ରେଜର୍, ବଡ଼-ଲାଟ ଲର୍ଡ କର୍ଜନଙ୍କୁ ବୁଝାଇ ଦେଇଥିଲେ ।

ଉତ୍କଳ ସମ୍ମିଳନୀର ଏଇ ପ୍ରଥମ ଅଧିବେଶନରେ ଗୋପବନ୍ଧୁ ବି ଯୋଗ ଦେଇଥିଲେ । କିନ୍ତୁ ସେତେବେଳେ ସେ ଥିଲେ କଲେଜ ଛାତ୍ର । କେତେଜଣ ଛାତ୍ର ବନ୍ଧୁଙ୍କୁ ସାଙ୍ଗରେ ନେଇ ସ୍ୱେଚ୍ଛାସେବକ ଭାବରେ ସଭା ସ୍ଥଳକୁ ଆସିଥିଲେ ।

ଦୀର୍ଘ ଆଠବର୍ଷ ଧରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ନିରବଚ୍ଛିନ୍ନ ଆନ୍ଦୋଳନ ଚଳେଇଲା ଉତ୍କଳ ସମ୍ମିଳନୀ । କିନ୍ତୁ ଲର୍ଡ ହାର୍ଡିଞ୍ଜ ୧୯୧୧ ଅଗଷ୍ଟ ୨୫ ତାରିକରେ ବିଲାତ ସରକାରଙ୍କୁ ଏକ ଅଦ୍ଭୁତ ପ୍ରସ୍ତାବ ଦେଇ ବସିଲେ । ବିହାର ଓଡ଼ିଶା ଓ ଛୋଟ ନାଗପୁର ଅଞ୍ଚଳକୁ, ବଙ୍ଗଳା ଦେଶରୁ କାଟି ଆଣି 'ବିହାର ଓଡ଼ିଶା' ପ୍ରଦେଶ ଗଢ଼ାଗଲେ ଶାସନ କାର୍ଯ୍ୟରେ ସୁବିଧା ହେବ ।

ଏହାର ପରିଣାମ ଏଇଆ ହେଲା, ତିନୋଟି ପ୍ରଦେଶରୁ ଯାଇ, ଗୋଟିଏ ପ୍ରଦେଶରେ ଅଧିକ ଦୁଃଖ ଦୁର୍ଦ୍ଦଶାର ସମ୍ମୁଖୀନ ହେଲା ଓଡ଼ିଆ ଜାତି ।

ହାର୍ଡିଞ୍ଜଙ୍କର ଏ ପ୍ରସ୍ତାବ କାର୍ଯ୍ୟକାରୀ ହୋଇଗଲା ୧୯୧୨ରେ । ବିହାର ଓଡ଼ିଶା ପ୍ରଦେଶ ଗଢ଼ା ହୋଇଗଲା, ଓଡ଼ିଶା ନେତାଙ୍କ ମତାମତକୁ ଆଦୌ ଖାତିରକୁ ନ ନେଇ ।

୧୯୧୩ରେ ଉତ୍କଳ ସମ୍ମିଳନୀର ନବମ ଅଧିବେଶନ ବସିଲା ପୁରୀ ଟାଉନରେ ।

ଯଦିଓ ୧୯୦୩ରେ ଉତ୍କଳ ସମ୍ମିଳନୀର ପ୍ରାରମ୍ଭ ଅଧିବେଶନରେ ଗୋପବନ୍ଧୁ ଜଣେ ଛାତ୍ର ନେତା ଭାବେ ପ୍ରଥମେ ଯୋଗ ଦେଇଥିଲେ ଏବଂ ସେତେବେଳେ, ଓଡ଼ିଶାକୁ କୋଉ ପ୍ରଦେଶ ସହିତ ସମିଲ କରାଗଲେ ଭଲ

ହେବ, ସେ ସଂପର୍କରେ ମଧୁବାବୁଙ୍କ ପ୍ରସ୍ତାବ "ବଙ୍ଗଳା ପ୍ରଦେଶ ସହିତ ଓଡ଼ିଶାର ସମସ୍ତ ଓଡ଼ିଆଭାଷି ଅଂଚଳକୁ ସାମିଲ କରିବା ।" ଏହାକୁ ବିରୋଧ କରି ସେ ଖୁବ୍ ଯୁକ୍ତି ବାଢ଼ିଥିଲେ, ତଥାପି ସମ୍ମିଳନୀର ଏହି ପୁରୀ ଅଧିବେଶନରେ ହିଁ ତାଙ୍କର ଉପସ୍ଥିତି ଏବଂ ବିଭିନ୍ନ ପ୍ରସ୍ତାବର ଆଲୋଚନାରେ ସକ୍ରୀୟ ଅଂଶଗ୍ରହଣ ଏକ ଐତିହାସିକ ଘଟଣା ବୋଲି ଏ ଲେଖକ ମନେକରେ ।

କାରଣ ଏହି ପୁରୀ ସମ୍ମେଳନୀରେ, ମଧୁବାବୁଙ୍କ ନେତୃତ୍ୱକୁ ଉଚ୍ଛ୍ୱସିତ ପ୍ରଶଂସା କରି ସୁରଙ୍ଗୀ ରାଜା ଯୋଉ ପ୍ରସ୍ତାବ ଆଗତ କରିଥିଲେ, ଗୋପ-ବନ୍ଧୁ ତାକୁ ସମର୍ଥନ ଜଣାଇବାକୁ ଯାଇଁ ଆବେଗପୂର୍ଣ୍ଣ କଣ୍ଠରେ କହିଥିଲେ : ମଧୁବାବୁଙ୍କୁ ସଭାପତି କରିବାଦ୍ୱାରା ତାଙ୍କର ଯେ ସମ୍ମାନ ବଢ଼ିବ ତା' ନୁହେଁ, ବରଂ ତାଙ୍କୁ ସମ୍ମାନ ଦେବାଦ୍ୱାରା ଆମେମାନେ ସମ୍ମାନିତ ହେବା ।"

ଗୋପବନ୍ଧୁଙ୍କର ଏ ଭାବୋଚ୍ଛ୍ୱାସ କେବଳ ମଧୁବାବୁଙ୍କୁ ନୁହେଁ ଅଧିବେଶନର ସମସ୍ତ ଶ୍ରୋତାଙ୍କୁ ମୁଗ୍ଧ କରିଥିଲା ।

ଏହି ଅଧିବେଶନଟି କଥା ଏଠି ବିଶେଷ ଭାବରେ ଉଲ୍ଲେଖ କରିବାର କାରଣ ହେଲା, ଏହି ସଭାରେ ପ୍ରଥମଥର ପାଇଁ ସିଂହଭୂମିରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ଦାବୀ ଉପରେ ଏକ ପ୍ରସ୍ତାବ ଆଗତ କରି ବିହାର ଓଡ଼ିଶା ସରକାର ତୁରନ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତୁ ବୋଲି ମତବ୍ୟକ୍ତ କରାଯାଇଥିଲା ।

ଅନ୍ୟ ଏକ କାରଣ ହେଲା, ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀଠାରେ ୧୯୦୯ରେ ଯେଉଁ ମଧ୍ୟ ଇଂରାଜୀ ବିଦ୍ୟାଳୟଟି ଆରମ୍ଭ କରିଥିଲେ ତାହା ୧୯୧୨ ଜାନୁୟାରୀ ବେଳକୁ ଏକ ଅଭିନବ ଧରଣର ହାଇସ୍କୁଲରେ ପରିଣତ ହୋଇପାରିଥିଲା । ତା'ର ପ୍ରତିଷ୍ଠାତାମାନଙ୍କୁ ଅଭିନନ୍ଦିତ କରି ଆଉ ଏକ ପ୍ରସ୍ତାବ ମଧ୍ୟ ଆଗତ କରାଯାଇଥିଲା ଏହି ସଭାରେ । ଏବଂ ସେ ପ୍ରସ୍ତାବକୁ ସର୍ବାନ୍ତକରଣରେ ଅନୁମୋଦନ କରିଥିଲେ ପ୍ରତ୍ୟେକ ଶ୍ରୋତା ।

ଏହି ସଭାରେ ମଧୁବାବୁ ଏକ ଓଜସ୍ୱିନୀ ଭାଷଣ ଦେଇ କହିଥିଲେ, ୧୯୧୧ରେ ବିହାରକୁ, ବଙ୍ଗଳାରୁ ଅଲଗା କରି ସେଥିରେ ଓଡ଼ିଶାକୁ ଯୋଡ଼ି ଦେଇ ଘୋର ଅନ୍ୟାୟ କରିଛନ୍ତି ବ୍ରିଟିଶ ସରକାର । ଲର୍ଡ ହାର୍ଡିଞ୍ଜ ଆମକୁ

ସ୍ୱତନ୍ତ୍ର ପ୍ରଦେଶ ଦେବା ବେଳେ ବିହାରୀଙ୍କ ସାଙ୍ଗରେ ନେଇ ଯୋଡ଼ି ଦେଲେ । ଏ ଅନ୍ୟାୟର ପ୍ରତିକାର ପାଇଁ ଓଡ଼ିଆ ଜାତି ବଦ୍ଧପରିକର ।

ଅଥଚ ୧୯୧୨ ରେ ଏ ବିଲ୍‌ର ଆଲୋଚନା ପାର୍ଲାମେଣ୍ଟରେ ଚାଲି-ଥିବାବେଳେ ଲର୍ଡ କର୍ଜନ ସ୍ପଷ୍ଟ କହିଥିଲେ, ଓଡ଼ିଶାକୁ ବିହାର ସହିତ ଯୋଡ଼ି କିଛି ଲାଭ ନାହିଁ । ଭାଷା, ଚଳଣି, କୌଣସିଠାରେ ସମ୍ବନ୍ଧ ନଥିବା ଦୁଇଟି ଜାତିକୁ ଏକାଠି ରଖିବା ଅତ୍ୟନ୍ତ ଅନ୍ୟାୟ । ଓଡ଼ିଆମାନେ ଆନ୍ଦୋଳନ ନ କରୁଥିବା ଯୋଗୁଁ ସେମାନଙ୍କ ସ୍ୱାର୍ଥକୁ ବଳି ଦିଆଯାଉଛି ।

ଲର୍ଡ ସଭାର ଷ୍ଟେଟ ସେକ୍ରେଟେରୀ ଥିଲେ ସେତେବେଳେ ଲର୍ଡ କ୍ରିୟୁ । ସେ ଓଡ଼ିଆଙ୍କ ଦାବୀ ପ୍ରତି ସମର୍ଥନ ଜଣାଇ ସେମାନଙ୍କର ଆବଶ୍ୟକତା ପୂରଣ କରାଯିବା ଉଚିତ୍ ବୋଲି ମତ ଦେଇଥିଲେ ।

କିନ୍ତୁ କମନ୍‌ସ ସଭାରେ ଓଡ଼ିଆଙ୍କୁ ଏକ ଶାସନାଧୀନରେ ରଖିବା ପାଇଁ ପ୍ରଶ୍ନ ଉଠିବାରୁ ଅଣ୍ଡର-ସେକ୍ରେଟେରୀ ମଣ୍ଟେଗୁ ତା'ର ବିରୋଧ କରିଥିଲେ ।

ଏହି ଭଳି ଉଭୟ ସଭାରେ ବାଦାନୁବାଦ ଚାଲିଥିବାବେଳେ ବିହାର ସହିତ ଓଡ଼ିଶା ଅନ୍ତର୍ଭୁକ୍ତ ହୋଇଯାଇଥିଲା । ଖାଲି ଓଡ଼ିଆଭାରୀ ସିଂହଭୂମିରୁ ଓଡ଼ିଆ ଭାଷାକୁ ଉଠେଇ ଦିଆଯାଇ ସ୍କୁଲମାନଙ୍କରେ ହିନ୍ଦୀ ପ୍ରଚଳନ ପାଇଁ ଆଦେଶ ଦେଇ ଦିଆ ଯାଇଥିଲା ।

ଏ ଆଦେଶ ବିରୁଦ୍ଧରେ ତୀବ୍ର ଉଦ୍ବେଳନ କରିଥିଲେ ସରେଇକଳା ଖରସୁଆଁର ଓଡ଼ିଆମାନେ । ଏହି ପ୍ରତିବାଦର ସ୍ୱର ସାରା ଓଡ଼ିଶାରେ ପ୍ରତିଧ୍ୱନିତ ହୋଇ ଥିବାରୁ, ପୁରୀଠାରେ ବସିଥିବା ଉତ୍କଳ ସମ୍ମେଳନୀରେ ସିଂହଭୂମିରେ, ତୁରନ୍ତ ଓଡ଼ିଆ ଭାଷା ପ୍ରଚଳନ କରାଯାଉ ବୋଲି ଏକ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ଏ କଥାଟି ମୁଁ ଆଗରୁ ଲେଖିଛି ।

ଯେତେ ଦୂର ସମ୍ଭବ ଏହି ପ୍ରସ୍ତାବଟି ହିଁ, ଗୋପବନ୍ଧୁଙ୍କୁ, ସିଂହ-ଭୂମିର ଶିକ୍ଷା ସମସ୍ୟା ପ୍ରତି ବିଶେଷ ଧ୍ୟାନ ଦେବା ପାଇଁ ଆଗ୍ରହାନ୍ୱିତ କରିଥିଲା ବୋଲି ଖୁବ୍ ଅନୁମାନ କରାଯାଇ ପାରେ ।

## ।। ଗୋପବନ୍ଧୁଙ୍କ ଅଭିନବ ନେତୃତ୍ୱ ।।

ଓଡ଼ିଶାର ନେତୃତ୍ୱ କ୍ଷେତ୍ରରେ ଗୋପବନ୍ଧୁଙ୍କ ଖ୍ୟାତି ଏବଂ ପ୍ରତିଷ୍ଠା ଏକ ପାରସ୍ୟ କାହାଣୀ ପରି ଚମତ୍କାରପ୍ରଦ ।

ଛାତ୍ର ଜୀବନରୁହିଁ ଗୋପବନ୍ଧୁ ସ୍ଥିର କରିନେଇଥିଲେ, ଦେଶ ଓ ଦଶର ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିବେ । ଓଡ଼ିଶାର ଲକ୍ଷ ଲକ୍ଷ ମୂକ ଜନତା ମୁହଁରେ ଭାଷା ଦେବା ପାଇଁ, ନିରକ୍ଷରତାର ଅନ୍ଧକାର ଭିତରୁ ଲୋକଙ୍କୁ ଆଲୋକକୁ ଆଣିବା ପାଇଁ ସେ ଅଗ୍ରଣୀ ହୋଇ ବାହାରିବେ; ଏଇଆ ଥିଲା ତାଙ୍କର ସଙ୍କଳ୍ପ ।

କଲିକତାରେ ବି. ଏଲ୍. ପରୀକ୍ଷା ଦେଇ ଆସିଲା ପରେ, ସାକ୍ଷିଗୋପାଳଠାରେ ଏକ ହାଇସ୍କୁଲ ଆରମ୍ଭ କାର୍ଯ୍ୟ ହେଲା ତାଙ୍କର ଏହି ଉଦ୍ଦେଶ୍ୟ ସାଧନ ଦିଗରେ ପ୍ରଥମ ପଦକ୍ଷେପ ।

ଏଇଠି ପ୍ରଧାନ ଶିକ୍ଷକଙ୍କର ଦାୟିତ୍ୱ ନେଇ ଥିବାବେଳେ ସେ କଲିକତାଠାରେ ଅନୁଷ୍ଠିତ ହେଉଥିବା କଂଗ୍ରେସ ଅଧିବେଶନରେ ଯୋଗ ଦେବାର ସୁଯୋଗ ପାଇଥିଲେ । ଅଧିବେଶନରେ ସଭାପତିତ୍ୱ କରୁଥିଲେ ଦାଦାଭାଇ ନାଓରୋଜୀ ।

'ସ୍ୱାଧୀନତା ପ୍ରାପ୍ତି କଂଗ୍ରେସର ଏକମାତ୍ର ଲକ୍ଷ୍ୟ' ନାଓରୋଜୀଙ୍କ ବକ୍ତୃତାର ଏଇ ଧାଡ଼ିଟି ଗୋପବନ୍ଧୁଙ୍କୁ ଖୁବ୍ ପ୍ରଭାବିତ କରିଥିଲା । ଏବଂ ସେଇ ସଭା ସ୍ଥଳରେ ସେ ସିଦ୍ଧାନ୍ତ ନେଇଥିଲେ—ମହାସଭାଗୃହରୁ କଂଗ୍ରେସ ଅନୁଷ୍ଠାନରେ ଅବଶ୍ୟ ଯୋଗ ଦେବେ ।

ନାନା ଘଟଣା ଚକ୍ରରେ ତାଙ୍କୁ ମାଲଗିରି ଛାଡ଼ିଦେବାକୁ ପଡ଼ିଲା । ୧୯୦୭ରେ ସେ କଟକ ଆସି ଓକିଲାତି ଆରମ୍ଭ କଲେ ।

ସେଇ ୧୯୦୭ରେ ହେଲା ଏକ ଭୟାବହ ବଢ଼ି । ଜାଜପୁର ଆଉ କେନ୍ଦ୍ରାପଡ଼ାର ବିସ୍ତୃତ ଅଞ୍ଚଳ ପାଣିରେ ବୁଡ଼ି ରହିଲା ଦିନ ଦିନ ଧରି ।

ବନ୍ୟା ପ୍ରପୀଡ଼ିତ ଲୋକଙ୍କର ଦୁଃଖ ଦୁର୍ଦ୍ଦଶାରେ ବିଚଳିତ ହୋଇ ପଡ଼ିଲେ ଗୋପବନ୍ଧୁ । ରେଭେନ୍‌ସା କଲେଜ ଛାତ୍ରମାନଙ୍କୁ ସାଙ୍ଗରେ ଧରି ଚୁଡ଼ା, ଗୁଡ଼ଲ, ଗୁଡ଼ ନେଇ ଚାଲିଗଲେ ଦୁସ୍ଥ ଲୋକଙ୍କୁ ବାଣ୍ଟିବା ପାଇଁ । ବନ୍ୟା ସମସ୍ୟାର ସ୍ଥାୟୀ ପ୍ରତିକାର ପାଇଁ 'ସେଣ୍ଟ୍ରାଲ ଯୁଙ୍ଗ ଉତ୍କଳ ଆସୋସିଏସନ' ଗଢ଼ିଲେ । ଷ୍ଟେଟ୍‌ସମ୍ୟାନ କାଗଜରେ ବିବୃତ୍ତି ଦେଲେ । ଭାରତର ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଦୃଷ୍ଟି ଆକର୍ଷଣ କଲେ ।

୧୯୦୮ରେ ପୁରୀଠାରେ ଯେଉଁ ଉତ୍କଳ ସମ୍ମେଳନୀର ଅଧିବେଶନ ବସିଲା ସେଥିରେ ବନ୍ୟା ଓ ଦୁର୍ଭିକ୍ଷର ସ୍ଥାୟୀ ପ୍ରତିକାର ଚିନ୍ତା କରିବା ପାଇଁ ଏକ ସ୍ୱତନ୍ତ୍ର କମିଟି ଗଢ଼ିବା ପ୍ରସ୍ତାବ ମଧ୍ୟ ସେ ଦେଲେ ।

ମାଲଗିରିରୁ ଆସିଲାପରେ, ମଧୁବାବୁଙ୍କ ପରାମର୍ଶରେ ଗୋପବନ୍ଧୁ କେତେମାସପାଇଁ ମୟୂରଭଞ୍ଜରେ ସରକାରୀ ଓକିଲ ଭାବରେ ଦାୟିତ୍ୱ ନେଲେ । କିନ୍ତୁ ସେଠାରେ ମଧ୍ୟ ବେଶୀ ଦିନ ଧରି ରହି ପାରିଲେ ନାହିଁ । ଘଟଣା ଚକ୍ରରେ ହଠାତ୍ ଇସ୍ତଫା ଦେଇ ଚାଲି ଆସିବାକୁ ବାଧ ହେଲେ ।

ଘଟଣାଟି ହେଲା—ଫେବୃୟାରୀ ୧୯୧୨ରେ ମହାରାଜା ଶ୍ରୀରାମଚନ୍ଦ୍ର ସ୍ୱର୍ଗାରୋହଣ କଲେ । ତାଙ୍କ ପୁଅ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଦେଓ ନାବାଳକ ଥିବାରୁ ଷ୍ଟେଟ କୋର୍ଟ ଅଫ୍ ଓ୍ୱାର୍ଡ୍‌ସ ହାତକୁ ଚାଲିଗଲା । ପଲିଟିକାଲ ଡିପାର୍ଟମେଣ୍ଟ ଜଣେ ଗୋରା ସାହେବଙ୍କୁ ଷ୍ଟେଟର ସୁପରିଣ୍ଟେଣ୍ଡେଣ୍ଟ ଭାବରେ ନିଯୁକ୍ତ ଦେଲେ ।

୧୯୧୨ ଜୁଲାଇରେ ପଲିଟିକାଲ ଏଜେଣ୍ଟ କୋବ୍‌ଡେନ ରାମ୍‌ସେ, ନୂଆ ହୋଇ ଗଢ଼ାଯାଇଥିବା ବିହାର ଓଡ଼ିଶା ରାଜ୍ୟର ଲେଫ୍‌ଟନେଣ୍ଟ ଗଭର୍ଣ୍ଣରଙ୍କ ବାରିପଦା ଭ୍ରମଣ ଉପଲକ୍ଷେ ଆନୁସଙ୍ଗିକ ବ୍ୟବସ୍ଥା କରିବା-ଲାଗି ବାରିପଦାରେ ଥିଲେ । ରାମ୍‌ସେ ସାହେବ, ଏଡୁକେସନ୍ ସେକ୍ରେଟେରୀଙ୍କୁ

ଡକେଇ ପଠେଇଲେ । ତାଙ୍କ ସାଙ୍ଗରେ ବାଳିକା ବିଦ୍ୟାଳୟ ପର୍ଯ୍ୟନ୍ତ ଯିବାକୁ ପଡିବ ବୋଲି ଆଦେଶଦେଲେ । କିନ୍ତୁ ଶିକ୍ଷା ବିଭାଗ ସୁପରିଟେନ୍‌ଡେଣ୍ଟ ଜଣେ ଖ୍ରୀଷ୍ଟୀୟ ହୋଇ ଥିବାରୁ ତାଙ୍କୁ ନିଜ ପାଖରେ ନବସାଇ, ବାହାରେ, ଘୋଡା କଚୁଆନ ପାଖରେ ବସିବାକୁ ନିର୍ଦ୍ଦେଶ ଦେଲେ ।

ଏ ଘଟଣାଟି ଶୁଣିପାରିଲେ ଗୋପବନ୍ଧୁ । ଶୁଣିବା ମାତ୍ରେ, ଏପ୍ରକାର ବ୍ୟବହାର ବିରୁଦ୍ଧରେ ପ୍ରତିବାଦକରି ସାଙ୍ଗେ ସାଙ୍ଗେ ଇସ୍ତଫା ଦାଖଲକଲେ

ପରେ ଅବଶ୍ୟ ପଲିଟିକାଲ ଏଜେଣ୍ଟ କ୍ଷମା ମାଗିଲେ, ଇସ୍ତଫା ପତ୍ର ଫେରାଇ ନେବାପାଇଁ ଅନୁରୋଧ କଲେ । କିନ୍ତୁ ଗୋପବନ୍ଧୁ ନିଜ ସିଦ୍ଧାନ୍ତରୁ ଟିକିଏ ହେଲେ ଟଳିଲେ ନାହିଁ ।

ଏଇ ଘଟଣାରୁ ସ୍ପଷ୍ଟ ବୁଝା ପଡିବ ଗୋପବନ୍ଧୁ ସେ ସମୟରେ ବି କି ଦୁର୍ଦ୍ଦାନ୍ତ ସମାଜବାଦୀ ଥିଲେ ।

ବାରିପଦାରୁ ଚାଲିଆସି ସେ କଟକରେ ଓକିଲାତି ଆରମ୍ଭକଲେ ।

ଏଇ ବାରିପଦାରେ ସରକାରୀ ଓକିଲ ଭାବରେ ଥିବାବେଳେ ଗୋପବନ୍ଧୁ ଥରେ, ସରାଇକେଲା ଖରସୁଆଁ ଆସିବା କଥା ମୁଁ ଏବେ ଶୁଣିଲି ସରାଇକେଲାର ଜଣେ ପୁରୁଖା ଲୋକଙ୍କଠାରୁ ।

ଜୁଲାଇ ୨୬ ରବିବାର ସକାଳ । ନୃତ୍ୟଗୁରୁ ବନବିହାରୀ ଆଚାର୍ଯ୍ୟ ଠିକ୍ ଆଠଟାରେ ଆସି ପହଞ୍ଚିଗଲେ । ଦୁଇଦିନ ତଳେ ତାଙ୍କୁ ଅନୁରୋଧ କରିଥିଲି, ସରାଇକେଲା ଯାଇଁ ଗୋପବନ୍ଧୁଙ୍କ ସମ୍ବନ୍ଧରେ କିଛି ତଥ୍ୟ ସଂଗ୍ରହ କରିବାରେ ମତେ ସାହାଯ୍ୟ କରିବାକୁ ।

ଜାମସେଦ୍‌ପୁରରୁ ଦଶଟାରେ ବସ୍ ଧରି ଆମେ ସରାଇକେଲାରେ ପହଞ୍ଚିଲୁ ପ୍ରାୟ ବାରଟାରେ । ବସ୍‌ରୁ ଓହ୍ଲାଇ ସିଧାସଳଖ ଗଲୁ ରାଜବାଟୀ । ୧୯୩୬ରେ ଦେଖା ରାଜବାଟୀର ସେ ଜାକ୍‌ଜମକ ଆଉ ନାହିଁ । ସେ ଗାମ୍ଭୀର୍ଯ୍ୟ, ସେ ସମ୍ଭ୍ରାନ୍ତ ପରିବେଶ ବି ନାହିଁ । ସଦର ଫାଟକ ଖୋଲା । ବନ୍ଧୁକଧାରୀ ସିପାହୀ ଟହଲ ମାରୁନାହାନ୍ତି । ସିଧା ଭିତରକୁ ପଶିଗଲୁ । ଗେଟ୍ ପାଖରେ ଭେଟ ହେଲା ଟିକାଏତ ସାହେବଙ୍କ ସାନପୁଅ ବ୍ରଜଭାନୁ ସିଂଦେଓଙ୍କ ସହିତ । ସେଇଦିନ ସକାଳେ ଭୁବନେଶ୍ୱରରୁ କ୍ଳାନ୍ତ ହୋଇ ଫେରିଛନ୍ତି

ବୋଲି କହିଲେ । ଦୁଇଘଣ୍ଟା ପରେ ଆମ ସହିତ ଦେଖା କରିବେ, ସମୟ ଦେଲେ । ଗଲୁ···ନୃତ୍ୟଗୁରୁ ସୁଧୀନ୍ଦ୍ର ପ୍ରତାପ ସିଂଦେଓଙ୍କ ପାଖକୁ । ସରେଇ- କଳା ଛଉର ବର୍ତ୍ତମାନ ଦୂରବସ୍ଥା କଥା ସେ କହିଲେ । କିନ୍ତୁ ଗୋପବନ୍ଧୁଙ୍କ ସମ୍ବନ୍ଧରେ ବିଶେଷ କିଛି ଜାଣନ୍ତି ନାହିଁ ବୋଲି କହିବାରୁ, ହତାଶ ହୋଇ, ଆଉ କାହା ସାଙ୍ଗେ ଦେଖା କଲେ କିଛି ଜାଣି ହେବ, ଏହି ଆଲୋଚନା କରି ଫେରୁଥିଲୁ, ହଠାତ୍ ଦେଖା ହୋଇଗଲା ଛଉ-ନୃତ୍ୟ-ଶିଳ୍ପୀ କେଦାର ସାହୁଙ୍କ ସହିତ ।

ସରେଇକଳାକୁ ଆସିଥିବା ଉଦ୍ଦେଶ୍ୟ କଥା ବୁଝେଇ କହିଲା ପରେ, ସେ କିଛି ସୂଚନା ଦେଲେ । କହିଲେ···ରାଜବାଟୀର ଡୋମେଷ୍ଟିକ ରେକର୍ଡ଼ରେ ସବୁ ଅଛି । ଗୋପବନ୍ଧୁ ସରେଇକଳା ଆସିଥିଲେ । କିନ୍ତୁ ସେ ରେକର୍ଡ ଏବେ ଆଉ ମିଳିବ କି ନାହିଁ, କହି ହେଉ ନାହିଁ । ରାଜାର ସହିତ ମିଶିଗଲା ପରେ, ରାଜବାଟୀର ବର୍ତ୍ତମାନ ଅବସ୍ଥା ଯାହା, ପୁରୁଣା ନଥି-ପତ୍ର କୋଉଠି କି ଭାବରେ ଅଛି କହିବା ମୁସ୍କିଲ । ତେବେ, କିଛି କିଛି ଖବର ଦେଇ ପାରିବେ କେଦାର ରଥେ । ଆସନ୍ତୁ ଯିବା ।

ଜଣେ ଗୃହସ୍ଥଙ୍କ ପକ୍କା ବାରଣ୍ଡା ଉପରେ ବସିଥିଲେ କେଦାର ବାବୁ । ବୟସ ଅଶୀ ଉପରେ । ହେଲେ ବେଶ୍ ସୁସ୍ଥ ଆଉ ସତେଜ ଅଛନ୍ତି । ଗୋପବନ୍ଧୁଙ୍କ ସମ୍ବନ୍ଧରେ କ'ଣ ଜାଣିଛନ୍ତି ବୋଲି ପଚାରିଲା ମାତ୍ରେ, କିପରି ଭାବ-ବିହ୍ୱଳ ହୋଇ ପଡ଼ିଲାପରି ଦେଖାଗଲେ ସେ । କହିଲେ—ହଁ, ଉତ୍କଳମଣିଙ୍କ ସାଙ୍ଗରେ କଂଗ୍ରେସ ଅମଳରେ କାମ କରିଛି ଏକାଠି । ଅନେକ କଥା ଭୁଲି ଗଲଣି, ହେଲେ, ଖୁବ୍ ମନେ ଅଛି, ସେ ଯେବେ ଏଠିକି ଆସିଥିଲେ ।

—କୋଉ ମସିହା କଥା କହି ପାରିବେ ?

—ସନ-ସାଲ କଥା ଏତେ ମନେ ନାହିଁ । ତେବେ, ସେ ଯେତେ- ବେଳେ ବାରିପଦାରେ ଓକିଲାତି କରୁଥିଲେ, ସେଇ ବର୍ଷ କଥା ହୋଇ ପାରେ ।

—ସେ ତ ୧୯୧୨ ।

—ହୋଇପାରେ, ଟିକିଏ ଚିନ୍ତା କରି କହିଲେ ରଥେ, ତାଙ୍କ ସାଙ୍ଗରେ ଆସିଥିଲେ ପ୍ରଚାରକ ଅନନ୍ତ ମିଶ୍ରେ !

—ଅନନ୍ତ ମିଶ୍ରେ ଆସିବା କଥା ହେଲେ ୧୯୧୭ କଥା ହୋଇ ପାରେ, ମୁଁ କହିଲି ।

—ହୋଇପାରେ, କିନ୍ତୁ ଆସିଥିଲେ ଏଠିକି ଗୋପବନ୍ଧୁ । ଏଇ ରାଜବାଟୀ ସାମନାରେ ସଭା କରିଥିଲେ । ମୁଁ ସେତେବେଳେ ଛାତ୍ର । ମହାରାଜା ଥିଲେ ଉଦ୍ଧବ ପ୍ରତାପ ସିଂ ଦେଓ । ଖୁବ୍ ବଡ଼ ସଭା ହୋଇଥିଲା । ବକ୍ତୃତା ଦେଇ ବୁଝେଇ ଥିଲେ—ସରେଇକଳା ଖରସୁଆଁ ତ ଖାଣ୍ଟି ଓଡ଼ିଶା ମୂଲକ । ଓଡ଼ିଆ ହୋଇ ତୁମେମାନେ ବଙ୍ଗଳା ପଢୁଚ କାହିଁକି ?

—ବଙ୍ଗଳା ନା ହିନ୍ଦି ? ମୁଁ ପଚାରିଲି ।

—ହଁ, କଚେରୀ ଭାଷା ଥିଲା ହିନ୍ଦି, କିନ୍ତୁ ସ୍କୁଲରେ ପଢ଼ା ହେଉଥିଲା ବଙ୍ଗଳା । ସେତେବେଳେ ଗୋଟିଏ ଏମ୍‌. ଇ. ସ୍କୁଲ ଥିଲା ସରେଇକଳାରେ । ବଙ୍ଗଳାରେ ଶିକ୍ଷା ଦିଆ ହେଉଥିଲା । ହେଲେ, ରାଜବାଟୀର ପଠା ପାଞ୍ଜି ସବୁ ଲେଖା ହେଉଥିଲା ଓଡ଼ିଆରେ ।

ସଭାରେ କହିଥିଲେ ଗୋପବନ୍ଧୁ, ଖୁବ୍ ସୁନ୍ଦର ଭାବରେ ବୁଝେଇ ଶୁଝେଇ, ତୁମେମାନେ ଗୁରୁବାର ଓଷାଠୁ ଆରମ୍ଭ କରି ଓଡ଼ିଶାର ସବୁ ବ୍ରତ, ପର୍ବ-ପର୍ବାଣୀ ମାନୁଚ । ତୁମ ତିନି ପୁରୁଷଙ୍କ ନାମ କହିଲାବେଳେ ସ୍ପଷ୍ଟ ବୁଝା ପଡୁଚି, ସେମାନଙ୍କର ନାଁ ଥିଲା ଖାଣ୍ଟି ଓଡ଼ିଆ ଘରର ଗାଁଉଲି ନାଁ । ଏବକୁ ଏବକୁ ବଙ୍ଗାଳି ନାଁ ଦିଆ ହୋଇଚି । କାହିଁକି ସବୁ ଏମିତି କରୁଚ ? ନିଜ ମାତୃଭାଷା କାହିଁକି ଭୁଲୁଚ ? ଆମ ସଂସ୍କୃତି, ଆମ ବଡ ଠାକୁର ଜଗନ୍ନାଥଙ୍କ ଗର୍ବ ଗୌରବକୁ ତଳେ ପକଉଚ କାହିଁକି ? କାହିଁକି ଓଡିଆରେ ପଢୁନ ?

ସେଇ ଦିନ ସନ୍ଧ୍ୟାରେ, ସଭାପରେ ମହାରାଜାଙ୍କ ସହିତ ଆଲୋଚନା ହେଲା ଗୋପବନ୍ଧୁଙ୍କର ଅନେକ ରାତିପାଏ ।

ରାଜବାଟୀରେ ରହିଲେ । କି ଯାଦୁମନ୍ତ୍ର ଜାଣିଥିଲେ ସେ କେଜାଣି, ମହାରାଜା ପୂରାପୂରି ବଦଳି ଗଲେ । ସବୁ ବଦଳିଗଲା ରାତାରାତି । ସକାଳକୁ ହୁକୁମ ବାହାରିଗଲା—ମାଇନର ସ୍କୁଲରେ ଓଡ଼ିଆ ପଢ଼ାଅ । ଏଇ ସମ୍ପର୍କରେ ମନେ ପଡୁଚି, କିଛିଦିନ ପରେ ମଧୁ ବାରିଷ୍ଟରଙ୍କଠୁ ଗୋଟାଏ ମେମୋରାଣ୍ଡମ ଲେଖେଇ ଆଣିଲେ ଗୋପବନ୍ଧୁ ବାବୁ । ବିହାର ଓଡ଼ିଶା ସରକାରଙ୍କୁ ସେଇଟି ପଠେଇ ଦିଆ ଯାଇଥିଲା ।

ପତ୍ରିକା : କଚେରୀ ଭାଷା ହିନ୍ଦି ହୋଇଥିଲା କେବେଠୁ ?

—ବୋଧ ହୁଏ ୧୯୧୨ଠୁ । କହିଲେ କେଦାର ରଥେ । ସିଂହ-ଭୂମିର ଡେପୁଟି କମିଶନର ଯେ ଥିଲେ, ସେଇ ହିଁ ଥିଲେ ପଡ଼େଳକଲା ଖରସୁଆଁର ପଲିଟିକାଲ ଏଜେଣ୍ଟ । ହିନ୍ଦି ପ୍ରଚଳନ ପାଇଁ ସେ ହିଁ ଆଦେଶ ଦେଇଥିଲେ ।

ଏ ସାକ୍ଷାତ୍‌କାର ପରେ ସରେଇକଲାର ଓକିଲ ଶ୍ରୀ ଅରୁଣ କରଙ୍କ ସହିତ ଦେଖାକଲୁ । ତାଙ୍କ ବାପା ଶ୍ରୀ ପଦ୍ମନାଭ କର ଗୋପବନ୍ଧୁଙ୍କ ସାଙ୍ଗରେ କାର୍ଯ୍ୟ କରିଥିଲେ । ସେ ସରେଇକଲାରେ ସେଦିନ ନଥିଲେ । ଅରୁଣ ବାବୁ ପରେ, ଗୋପବନ୍ଧୁ ଠିକ କେଉଁ ବର୍ଷ ଛଡ଼େଇକଲା ଆସି-ଥିଲେ ସେ କଥା ବାପାଙ୍କ ଠାରୁ ବୁଝି ଲେଖିବେ ବୋଲି ପ୍ରତିଶ୍ରୁତି ଦେଲେ । ଏବେ ତାଙ୍କଠାରୁ ୧୫-୮-୭୭ ତାରିଖରେ ଚିଠି ପାଇଛୁ । ସେ ଲେଖିଛନ୍ତି "୧୯୧୭ରେ ପଣ୍ଡିତ ଗୋପବନ୍ଧୁ ଏଠାକୁ ଆସିଥିଲେ ଓ ଏଠାକାର କୋର୍ଟରେ ପ୍ରଚଳିତ ଭାଷାକୁ ବଦଳାଇ ଓଡ଼ିଆ ଭାଷା ଚଳାଇ-ଥିଲେ । ୧୯୧୭ ସାଲରେ ଛଡ଼େଇକଲା ମହାରାଜଙ୍କ ସହ ପରାମର୍ଶ କରି ସେ ଓଡ଼ିଆ ଭାଷାରେ କୋର୍ଟ କଚେରୀରେ ସବୁ ଲେଖା ହେବାର ବ୍ୟବସ୍ଥା କରାଇଥିଲେ । ତା ପୂର୍ବରୁ ସବୁ ହିନ୍ଦିରେ ହେଉଥିଲା ।

ପଣ୍ଡିତ ନୀଳକଣ୍ଠ ତାଙ୍କ ଜୀବନୀରେ ଲେଖିଛନ୍ତି ୧୯୧୭ ବେଳକୁ ସତ୍ୟବାଦୀର ଦୁଇଟି ଶାଖା ସ୍ଥାପିତ ହୋଇଥିଲା । ଗୋଟିଏ ଚକ୍ରଧରପୁର ଅନ୍ୟଟି ଧଳଭୂମର ବାହାଡ଼ାଗୋଡ଼ାରେ । ତା ଆଗରୁ ସେଇ ଆତ୍ମ-ଜୀବନୀରେ ସେ ଲେଖିଛନ୍ତି—୧୯୧୮ରେ ଯଥାର୍ଥରେ ସତ୍ୟବାଦୀ ସ୍କୁଲ ଭାଙ୍ଗିଗଲା । ଏମ୍. ଏ. ବି. ଟି ହେଇ ଗୋଦାବରୀଶ ଆସିଲେ ଏକବର୍ଷ କଲିକତାରୁ । ୧୯୧୯ରେ ଗୋଦାବରୀଶ ଚକ୍ରଧରପୁର ଗଲେ କୃପାସିନ୍ଧୁ ମେଦିନୀପୁରର ବାହାଡ଼ା ଗୋଡ଼ାକୁ ହାଇସ୍କୁଲ କରିବାକୁ ଗଲେ ।

ସତ୍ୟବାଦୀରେ ଯେଉଁ ହାଇସ୍କୁଲ, ଏତେ ସାଧ ସାଧନାରେ ଆରମ୍ଭ କରିଥିଲେ ଗୋପବନ୍ଧୁ, ତା ଯେତେବେଳେ ଭାଙ୍ଗିଗଲା, ସେଇ ବନ-ବିଦ୍ୟାଳୟ ଆଦର୍ଶରେ ପୁଣି ଦୁଇଟି ହାଇସ୍କୁଲ ଆରମ୍ଭ କରିବାର ଏ ଯେଉଁ ଚେଷ୍ଟା ଗୋପବନ୍ଧୁଙ୍କର, ସୁଦୂର ଉପାନ୍ତ ଅଞ୍ଚଳ ସିଂହଭୂମରେ ତା ପଛରେ କି ନିଗୂଢ଼ ଉଦ୍ଦେଶ୍ୟ ଥିଲା ତା କ'ଣ ଅନୁଧ୍ୟାନ କରିବା କଥା ନୁହେଁ । ପୁଣି

ଓଡ଼ିଶାର ବାହାର ଚାରିପଟରେ ଯେଉଁ ଉପାନ୍ତ ଅଞ୍ଚଳମାନ ଥିଲା, ସେଠି ମଧ୍ୟ ବେଶ ମିଶ୍ରଣ ସମସ୍ୟା, ସମାନ ଭାବରେ ଥିଲା ଗୁରୁତ୍ୱପୂର୍ଣ୍ଣ ! ଦକ୍ଷିଣରୁ ତେଲେଙ୍ଗା, ପଶ୍ଚିମରୁ ହିନ୍ଦି, ପୂର୍ବରୁ ବଙ୍ଗଳା, ଓଡ଼ିଆ ସଂସ୍କୃତିକୁ ଗ୍ରାସ କରିବାକୁ ରାକ୍ଷସଙ୍କ ପରି ମାଡ଼ି ଆସୁଥିଲା । ବିଶେଷତଃ ସମ୍ବଲପୁର ପଟେ ଅବସ୍ଥା ଖୁବ ସାଙ୍ଘାତିକ ହୋଇଉଠିଥିଲା । ଫୁଲଝର ଜମିଦାରୀ ବହୁଦିନ ଧରି ସମ୍ବଲପୁର ଜିଲ୍ଲା ସଙ୍ଗେ ମିଶି ରହିଥିଲା । କିନ୍ତୁ ପରେ ସମ୍ବଲପୁରରୁ ବିଚ୍ଛିନ୍ନ ହୋଇ ମଧ୍ୟ-ପ୍ରଦେଶର ରାଏପୁର ଜିଲ୍ଲା ସାଙ୍ଗରେ ମିଶିରହିଲା । ଏହାର ଜନସଂଖ୍ୟା ଥିଲେ ଲକ୍ଷେ ପଚିଶ ହଜାର । ସମସ୍ତେ ଓଡ଼ିଆ, ଅଳ୍ପ କେତେ ଲୋକ ଲରିଆ ଭାଷା କହୁଥିଲେ । ଏ ଭାଷା ମଧ୍ୟ ଅଧା ଓଡ଼ିଆ, ଅଧା ହିନ୍ଦି । ଏ ଜମିଦାରୀ ବହୁଦିନ ସମ୍ବଲପୁର ସାଙ୍ଗେ ଥିଲା । ସ୍ଥାନୀୟ ଲୋକଙ୍କ ଚେଷ୍ଟାରେ କେତୋଟି ଓଡ଼ିଆ ପ୍ରାଇମେରୀ ସ୍କୁଲ ଖୋଲିଥିଲା । କିନ୍ତୁ କଚେରୀ ଭାଷା ଥିଲା ହିନ୍ଦି । ସେଠାର କେତେଜଣ ଲରିଆ ଗୌନ୍ତିଆଙ୍କ ସ୍ୱାକ୍ଷରରେ ଏ ଚିଠି ଆସିଥିଲା । ଗୋପବନ୍ଧୁଙ୍କ ପାଖକୁ ସେଥିରେ ଲେଖାଥିଲା—ଦେଓ୍ୱାନ ଆମମାନଙ୍କୁ ଡକାଇ ନେଇ ଧମକ ଦେଉଛନ୍ତି । କହୁଛନ୍ତି କି ତୁମେମାନେ, କାହା ହୁକୁମରେ ଓଡ଼ିଆ ସ୍କୁଲ ଖୋଲିଛ ? ଆପଣଙ୍କ ଜୋର ନ ପାଇଲେ, କେହି ନଆସିଲେ ଆମ୍ଭେମାନେ ଅନାଥ ହେବୁ । ଆମେ କଣ ମଝିରେ ଭାସୁଚୁ । ବିଶେଷ ଚିଠିରେ ଲେଖାଥିଲା 'ଆପଣ କୌଣସି ପ୍ରକାରେ ଆମମାନଙ୍କୁ ସାଙ୍ଗରେ ରଖନ୍ତୁ । କେହିଜଣେ ମୁଖ୍ୟ ପ୍ରଚାରକଙ୍କୁ ଏଠାକୁ ପଠାନ୍ତୁ । ନ ହେଲେ ଆମ୍ଭେମାନେ ମଲୁ ।

ଗୋପବନ୍ଧୁ ସେଠାକୁ ପ୍ରଚାରକ ଅନନ୍ତ ମିଶ୍ରଙ୍କୁ କିଛିଦିନ ପାଇଁ ପଠାଇଥିଲେ । ବ୍ରଜସୁନ୍ଦର ଦାସଙ୍କୁ ନେଇ ନିଜେ ମଧ୍ୟ ଯାଇଥିଲେ । କିନ୍ତୁ ସ୍ଥାୟୀ ଭାବରେ କୌଣସି ସଙ୍ଗଠନ କରିପାରି ନଥିଲେ ।

ଯଦିଓ ସେ ସବୁ ଅଞ୍ଚଳମାନଙ୍କରେ ବି ଓଡ଼ିଆ ଶିକ୍ଷା, ସଂସ୍କୃତିକୁ ବଞ୍ଚେଇବା ପାଇଁ ଦରକାର ପଡୁଥିଲା ବିବସ୍ତୁ ଆନ୍ଦୋଳନ, ତଥାପି ସେଆଡ଼କୁ ତୀକ୍ଷ୍ଣ ଦୃଷ୍ଟି ନଦେଇ, ଉତ୍ତର ପଟେ ବିହାରୀମାନଙ୍କର ଯେଉଁ ଆକ୍ରମଣ ଆରମ୍ଭ ହୋଇଥିଲା, ତା'ର ମୁକାବିଲା କରିବା ପାଇଁ ଗୋପବନ୍ଧୁ ସବୁ ଦିଗରୁ ପ୍ରସ୍ତୁତ ହୋଇ ବାହାରିଥିଲେ କାହିଁକି ?

ପ୍ରସୂତ, ସାମାନ୍ୟ ଭାବରେ ନୁହେ । ସତ୍ୟବାଦୀର ଦୁଇଜଣ ଧୁରନ୍ଧର ପଣ୍ଡିତଙ୍କୁ ଡାକି ନେଇ ରଖେଇଥିଲେ ? ଯୋଉ ଦୁଇଜଣ ଥିଲେ ତାଙ୍କର ସହକର୍ମୀ, ପଣ୍ଡିତ ଗୋଦାବରୀଶ ଆଉ କୃପାସିନ୍ଧୁ ମିଶ୍ର। ଏମାନଙ୍କ ଉପରେ ନ୍ୟସ୍ତ କରିଥିଲେ ବରିଷ୍ଠ ଦାୟିତ୍ୱ—ଦୁଇଟି ଅଦର୍ଶ ସ୍କୁଲ ଗଢ଼ିବାର ମହାନ୍ କାର୍ଯ୍ୟ । ଗୋଟିଏ ଚକ୍ରଧରପୁରରେ ଆଉଟି ବହଡ଼ାଗୋଡ଼ାରେ । ଠିକ୍ ସତ୍ୟବାଦୀ ବିଦ୍ୟାଳୟ ଢାଞ୍ଚାରେ ଦୁଇଟି ମଣିଷ ଗଢ଼ା କାରଖାନା ।

ଏ ଦୁଇ ପଣ୍ଡିତଙ୍କୁ ଆଣି ରଖିବାର ଦୁଇବର୍ଷ ଆଗରୁ ବି ସେ ପଠେଇ ଦେଇଥିଲେ ଆଉ ଜଣେ ତ୍ୟାଗୀ ମହାପୁରୁଷଙ୍କୁ । ସେ ହେଉଛନ୍ତି ଅନନ୍ତ ମିଶ୍ରେ । ସିଂହଭୂମ୍‌ର ଗାଁ-ଗଣ୍ଡା ପଦବ୍ରଜରେ ବୁଲି ବୁଲି ଓଡ଼ିଆ ଜାତୀୟତାର ଅଗ୍ନି-ମନ୍ତ୍ର ପ୍ରଚାର କରିବେ ମିଶ୍ରେ, ଏଇଆ ଥିଲା ଗୋପବନ୍ଧୁଙ୍କର ନିର୍ଦ୍ଦେଶ ।

ହେଲେ କାହିଁକି ଏତେ ସବୁ ବ୍ୟବସ୍ଥା କରିଥିଲେ ଦାସେ ଆପଣ ? ତାଙ୍କ ସହକର୍ମୀମାନଙ୍କୁ ସିଂହଭୂମିରେ ଆଣି ଠୁଳ କରେଇ ଥିଲେ କାହିଁକି ? ଶିକ୍ଷା କାର୍ଯ୍ୟର ଅସ୍ତ୍ରମାରମ୍ଭ ପଛରେ, ସୁଦୂର-ପ୍ରସାରୀ ଲକ୍ଷ୍ୟ ତାଙ୍କର ଥିଲା କ'ଣ ? ଯଦି ଓଡ଼ିଶା ସହିତ ସିଂହଭୂମ ମିଶ୍ରଣ ବୋଲି ଧରି ନିଆଯାଏ, ତେବେ, ଓଡ଼ିଶା ସହିତ ସିଂହଭୂମ ମିଶ୍ରଣ ସମସ୍ୟାକୁ ସେ ଅନ୍ୟାନ୍ୟ ଉପାନ୍ତ ଅଞ୍ଚଳ ତୁଳନାରେ କାହିଁକି ଅଗ୍ରାଧିକାର ଦେଇଥିଲେ ? ଏବଂ ଏଇ ପରିପ୍ରେକ୍ଷୀରେ ସତ୍ୟବାଦୀ ବନବିଦ୍ୟାଳୟକୁ ଗଢ଼ିବା ପାଇଁ ତାଙ୍କର ବରିଷ୍ଠ କର୍ମପ୍ରବଣତାକୁ ପ୍ରଶଂସା କଲାବେଳେ, ସିଂହଭୂମରେ ଓଡ଼ିଆ ଶିକ୍ଷା ଆନ୍ଦୋଳନର ପୁରୋଭାଗରେ ତାଙ୍କ ଉତ୍ସର୍ଗୀକୃତ ଜୀବନର ତ୍ୟାଗ ଆଉ ସାଧନାକୁ କ'ଣ ଆଦୃରି ଗୁରୁତ୍ୱପୂର୍ଣ୍ଣ ଦୃଷ୍ଟିରେ ଦେଖିବା କଥା ନୁହେଁ ?

ଅଥଚ ରାଜ୍ୟ ସ୍ତରରେ ଗଢ଼ା ଯାଇଥିବା ଶତବାର୍ଷିକୀ କମିଟି ଏ ବିଷୟରେ ସମ୍ପୂର୍ଣ୍ଣ ଉଦାସୀନ ରହିଗଲା ।

ସମସ୍ତେ ଜାଣନ୍ତି, ବାରିପଦାରୁ ଓକିଲାତି ଛାଡ଼ି ଦେଇ ଆସିଲାପରେ ସାକ୍ଷୀଗୋପାଳଠାରେ ୧୯୦୯ରେ ଯେଉଁ ମଧ୍ୟଇଂରାଜୀ ବିଦ୍ୟାଳୟଟି ଗୋପବନ୍ଧୁ ତାଙ୍କର ବାଲ୍ୟବନ୍ଧୁ ଗୋପୀନାଥ ଦାଶଙ୍କୁ ପ୍ରବର୍ତ୍ତାଇ ଅରମ୍ଭ

କରାଇଥିଲେ, ତାକୁ ଉଚ୍ଚଇଂରାଜୀ ବିଦ୍ୟାଳୟରେ ପରିଣତ କଲେ ୧୯୧୨ ରେ । ଗୋପୀନାଥଙ୍କ ଗୁପ୍ତ ବୃନ୍ଦାବନ କୁରିଅନା ବଗିଚ୍ଚ ଭିତରେ, ଗଛ-ମୂଳେ, ମୁକ୍ତାକାଶତଳେ ଛାତ୍ରମାନଙ୍କୁ ପଢାଇବା ବ୍ୟବସ୍ଥା ହେଲା । ସ୍କୁଲ ଆରମ୍ଭ କରିଦେଲା ପରେ ପରେ ଏହାର ପରିଚ୍ଛଳନା ଦାୟିତ୍ୱ ନେଇ ସେ.ର ଅର୍ଥାଭାବ ଦେଖାଦେଲା ।

କାରଣ, ପୁନାର ଫରଗୁସନ କଲେଜ କଥା କେବଳ ଗୋପବନ୍ଧୁଙ୍କ କଳ୍ପନାରେ ନଥିଲା । ରବିନ୍ଦ୍ରନାଥଙ୍କର ଶାନ୍ତିନିକେତନ ପରି ଏକ ଆଦର୍ଶ ଶିକ୍ଷାନୁଷ୍ଠାନ ଗଢ଼ିବା କଥା ମଧ୍ୟ ସେ ମନେ ମନେ ଚିନ୍ତା କରିଥିଲେ ।

ଗୋପବନ୍ଧୁଙ୍କର ଏଇ ଆଦର୍ଶ ସମ୍ବନ୍ଧରେ ସ୍ପଷ୍ଟ ଭାବରେ ବୁଝେଇ କହିଥିଲେ ଫକୀରମୋହନ ସେନାପତି—ଉତ୍କଳ ସମ୍ମିଳନୀର ପୁରୀ ଅଧି-ବେଶନରେ । ଏ ଅଧିବେଶନ ହୋଇଥିଲା ୧୯୧୩ ଡିସେମ୍ବର ୨୮ ତାରିଖରେ ।

ଏଠି ବନବିଦ୍ୟାଳୟ-ସମ୍ବନ୍ଧରେ ଟିକିଏ ବିସ୍ତାରିତ ଭାବେ କହିବା ଦରକାର । କାରଣ ସିଂହଭୂମ୍‌ରେ ଯେଉଁ ଓଡ଼ିଆ ଜାଗ୍ରତ ଆନ୍ଦୋଳନ ଆରମ୍ଭ କରିଥିଲେ ଗୋପବନ୍ଧୁ, ତାହା ପ୍ରଥମେ ଥିଲା ଓଡ଼ିଆ ଶିକ୍ଷାକୁ ଭିତ୍ତି କରି । ତାଙ୍କର ବହୁ ସଦ୍‌ଗୁଣ ଭିତରେ ସେ ଥିଲେ ଜଣେ ମନୀଷୀ । ଜଣେ ଶିକ୍ଷାବିତ୍ । ଶିକ୍ଷା ଏବଂ ସାଂସ୍କୃତିକ ବିକାଶର ପୁରୋଧାଭାବରେ, ସମଗ୍ର ଓଡ଼ିଶାରେ ସେ ଥିଲେ ତାଙ୍କର ସମସାମୟିକ ନେତାଙ୍କ ଭିତରେ ଅଗ୍ରଣୀ ।

ଏଣୁ ଉତ୍କଳ ସମ୍ମିଳନୀର ସେଇ ପୁରୀ ଅଧିବେଶନରେ, ସତ୍ୟବାଦୀ ବନବିଦ୍ୟାଳୟ ସମ୍ବନ୍ଧରେ କିଏ କ'ଣ କହିଥିଲେ ତା ଆମର ଜାଣିବା ଉଚିତ୍ ।

କନିକା ରାଜା ସାହେବ କହିଥିଲେ—ସତ୍ୟବାଦୀଠାରେ ଯେଉଁ ଶିକ୍ଷିତ ଯୁବକମାନେ, ଦେଶର ଶିକ୍ଷୋନ୍ନତି ପାଇଁ ନିସ୍ୱାର୍ଥଭାବେ ପରିଶ୍ରମ କରି ଯେଉଁ ନୂତନ ଆଦର୍ଶ ଦେଖାଇଛନ୍ତି, ତାହା ବାସ୍ତବିକ ଅନୁକରଣୀୟ । ଏହା ଯେପରି ଅନ୍ଧକାର ଭିତରେ ଦୀପଶିଖା ପରି । ସତ୍ୟବାଦୀ ସ୍କୁଲ୍ ୧୯୦୯ରେ ମାତ୍ର ୧୯ଟି ପିଲା ନେଇ ଆରମ୍ଭ ହୋଇଥିଲା । ଏଥିରେ ବର୍ତ୍ତମାନ ୨୫୦ ପିଲା ହେଲେଣି । ଏ ସ୍କୁଲ ଆଜି ପର୍ଯ୍ୟନ୍ତ ଗଭର୍ଣ୍ଣମେଣ୍ଟ ସାହାଯ୍ୟ ନେଇ

ନାହାନ୍ତି । ଆମ୍ଭେମାନେ ଯଦି ଏମାନଙ୍କୁ ସାହାଯ୍ୟ ଦେଉ ତେବେ ପ୍ରକୃତ କର୍ତ୍ତବ୍ୟ କାର୍ଯ୍ୟ କରିବା । ଏଇ ସ୍କୁଲ ଲଗି, ମାନନୀୟ ରାଜାସାହେବ ମଧୁପୁର ପାଞ୍ଚଶହ ଟଙ୍କା, ରାଜାସାହେବ ସୁରଙ୍ଗୀ ତିନିଶହ, ଗୋକୁଳାନନ୍ଦ ଚୌଧୁରୀ ଏକଶହ ଏବଂ ମୁଁ ନିଜେ ଏକହଜାର ଟଙ୍କା ଦେବାକୁ ସ୍ୱୀକାର କରୁଅଛି ।

ଔପନ୍ୟାସିକ ଫକୀରମୋହନ କହିଥିଲେ—ଓଡ଼ିଶାରେ ଅନେକ ସ୍କୁଲ ଅଛି । କିନ୍ତୁ ଏପରି ସ୍କୁଲ ଗୋଟିଏ ନାହିଁ । ଏଥିରେ ବିଦ୍ୟା ଓ ଚରିତ୍ର ଉଭୟର ଉନ୍ନତି ହୁଏ । ଏହାର ପ୍ରଧାନ ଅଧ୍ୟାପକ ମୋତେ କହିଛନ୍ତି ତାଙ୍କର ଲକ୍ଷ୍ୟ କେବଳ ଛାତ୍ରମାନଙ୍କୁ ଭଲ ଶିକ୍ଷା ଦେବା ନୁହେ—ଭଲ ମନୁଷ୍ୟ ତିଆରି କରିବା । ଆଧୁନିକ ଶିକ୍ଷା ଦ୍ୱାରା ଆମ୍ଭେମାନେ ଜାତୀୟତା ଓ ଗୁରୁ ଶିଷ୍ୟର ସମ୍ବନ୍ଧ ହରାଇ ଅଛୁଁ । ସତ୍ୟବାଦୀ ସ୍କୁଲ ଦେଖାଇଛି—କି ପ୍ରକାର ଶିକ୍ଷା ଆମ୍ଭମାନଙ୍କର ପ୍ରୟୋଜନ । ସେମାନେ କେବଳ ବହି ପଢ଼ିବାରେ ସନ୍ତୁଷ୍ଟ ନୁହଁନ୍ତି । ସେମାନେ ମନୁଷ୍ୟତ୍ୱ ଶିକ୍ଷା ଦେବା ଲଗି ସର୍ବଦା ବ୍ୟସ୍ତ । ପିଲାମାନେ ଶିଖୁଛନ୍ତି—କିପରି ଦେଶ ପାଇଁ ସ୍ୱାର୍ଥତ୍ୟାଗ କରିବାକୁ ହୁଏ । ଏ ସତ୍ୟବାଦୀ ସ୍କୁଲ ପ୍ରକୃତରେ ଗୋଟିଏ ଟ୍ରେନିଂ ସ୍କୁଲ । ଏ ନିସ୍ୱାର୍ଥପର ଉଦ୍ୟୋକ୍ତାମାନେ ବଡ଼ଲୋକ ନୁହନ୍ତି । ଏମାନଙ୍କୁ ଦୁଇଅଣା-ଠାରୁ ଯେ ଅଧିକ ସାହାଯ୍ୟ ଦେଇ ପାରନ୍ତି ଦେବା ଉଚିତ । ପୁନାର ଫରଗୁସନ କଲେଜ ପରି ଆମ୍ଭେମାନେ ଯେବେ ସତ୍ୟବାଦୀ ସ୍କୁଲକୁ କରି-ପାରିବା, ତେବେ କେଡ଼େ ବଡ଼ ଗୋଟାଏ ଜାତୀୟ ବସ୍ତୁ ପାଇବୁ ।

ସୁଦାମଚରଣ ନାୟକ କହିଥିଲେ :—ଏହି ଯୁବକମାନଙ୍କର ଉଦ୍ଦେଶ୍ୟ ଏହି ଯେ, କି ପ୍ରଣାଳୀରେ ଶିକ୍ଷା ଦେଲେ ଆଜିକାଲି ଓଡ଼ିଶାରେ ପ୍ରକୃତ ମନୁଷ୍ୟ ତିଆରି ହେବେ । ପିଲାଏ ପଢ଼ି ଓକିଲ ହୁଅନ୍ତୁ, ମାଜେଷ୍ଟ୍ରର ଆଦି ହୁଅନ୍ତୁ ବା ନହୁଅନ୍ତୁ କିନ୍ତୁ କିପରି ନିଷ୍ଠପୂ ମନୁଷ୍ୟ ହେବେ, ଏହାହିଁ ଏମାନଙ୍କର ଉଦ୍ଦେଶ୍ୟ । ମୁଷ୍ଟିଭିକ୍ଷାଠାରୁ ଆରମ୍ଭ କରି ଅନ୍ୟାନ୍ୟ ସମସ୍ତ ଉପାୟରେ ସମ୍ମେଳନୀ ଏହି ସ୍କୁଲକୁ ଯଥାସାଧ୍ୟ ସାହାଯ୍ୟ କରୁ ।

ସେଇ ସଭାରେ, ସାହିତ୍ୟିକ ବ୍ରଜସୁନ୍ଦର ଦାସ କହିଥିଲେ—ଦେଶରେ ଶିକ୍ଷୋନ୍ନତି ହେବା ଉଚିତ ଏହା ଆମ୍ଭେମାନେ କହୁଥାଉଁ, କିନ୍ତୁ ଏମାନେ ପ୍ରକୃତରେ ନୂତନ ଆଦର୍ଶ ସ୍ଥାପନ କରିଅଛନ୍ତି । ଆମ୍ଭମାନଙ୍କର

ଜାଗଣର ଜଡ଼ତା ଏତେ ଦୂର ଯେ, ସ୍କୁଲ ପିଲମାନେ ମଧ୍ୟ ଗୃହାନ୍ତ ଯେ; ଅନ୍ୟ କେହି ତାଙ୍କ ପାଇଁ ପଡ଼ି ପରୀକ୍ଷା ଦଅନ୍ତା । ବର୍ତ୍ତମାନ ଦେଖନ୍ତୁ ନିଃସ୍ୱାର୍ଥ-ପର ପରକାଷ୍ଠା । ଏ ପର୍ଯ୍ୟନ୍ତ ଏମାନେ ମାତ୍ର ୭୦୦୦ ଟଙ୍କା ସଂଗ୍ରହ କରି ଅଛନ୍ତି । କିନ୍ତୁ ଗୃହଟି ଶେଷ କରିବାକୁ ୨୦,୦୦୦ ଟଙ୍କା ଆବଶ୍ୟକ । ଏମାନଙ୍କୁ ଉତ୍ସାହିତ କରିବାକୁ ହେଲେ ଫଳେ ପୁସ୍ତକ କିଛି ଦେଇ ଉତ୍ସା-ହିତ କରିବାକୁ ହୁଏ ।

ସବୁଠାରୁ ଚମତ୍କାର ଭାଷଣ ଦେଇଥିଲେ କୁଳବୃଦ୍ଧ ମଧୁସୂଦନ ଦାସ

ସେ କହିଥିଲେ, "ଏମାନଙ୍କ ଦ୍ୱାରା ବାସ୍ତବିକ୍ ଜାତୀୟ ଉନ୍ନତି ସାଧିତ ହେବ ଏଥିରେ ସନ୍ଦେହ ନାହିଁ । ଏମାନଙ୍କୁ ଦେଖି କାଠ ପଥରଙ୍କ ଉପରେ ପଡ଼ିଲା ପରି ଶତ ଶତ ରାଜା ମହାରାଜାମାନେ ମଧ୍ୟ ଆଜି ସେମାନଙ୍କର ଧର୍ମଗ୍ରହଣ ଓ ସମର୍ଥନ କଲେ । ସେମାନେ ମନୁଷ୍ୟ ଗଢ଼ିବା ପାଇଁ କୃତସଂକଳ୍ପ । ଜଗନ୍ନାଥ ମୂର୍ତ୍ତି ସମସ୍ତେ ଗଢ଼ି ପାରିବେ, କିନ୍ତୁ ତା ଭିତରେ ଯେଉଁ ବ୍ରହ୍ମ ଅଛି ତାହା କେହି ଗଢ଼ି ପାରନ୍ତି ନାହିଁ । ଯେତେ-ବେଳେ ଆମ୍ଭମାନଙ୍କ ଦେଶର ଯୁବକମାନଙ୍କ ହୃଦୟରେ ପ୍ରାଣବ୍ରହ୍ମ ପ୍ରତିଷ୍ଠିତ ହୋଇ ସେମାନଙ୍କୁ ପବିତ୍ର ମନୁଷ୍ୟତାରେ ଜାଜ୍ୱଲ୍ୟମାନ କରିବେ, ସେତେ-ବେଳେ ଗଭର୍ଣ୍ଣମେଣ୍ଟ ବା ଅନ୍ୟ ଯେ କେହି ସେମାନଙ୍କୁ ଅବଶ୍ୟ ସମ୍ମାନ କରିବେ । ଗୋପବନ୍ଧୁ, ନୀଳକଣ୍ଠ ନିଜଗୋଡ଼ରେ ଠିଆ ହୋଇଛନ୍ତି । ସେମାନଙ୍କ କାର୍ଯ୍ୟ ଦେଖି ଦେଶବାସୀ ସେମାନଙ୍କୁ ସାହାଯ୍ୟ କରିବାକୁ ଅଗ୍ରସର ହେବେ, ସନ୍ଦେହ ନାହିଁ ।

'ଉତ୍କଳ ସମ୍ମିଳନୀ'ର ସଭା ମଞ୍ଚ ଉପରୁ ଓଡ଼ିଶାର ରାଜା ମହାରାଜା ଓ ବରେଣ୍ୟ ନେତୃବର୍ଗଙ୍କ ମିଳିତ ଆବେଦନ ଫଳରେ ପଣ୍ଡିତ ଗୋପବନ୍ଧୁ ଓ ପଣ୍ଡିତ ନୀଳକଣ୍ଠ ଉଭୟେ ଅର୍ଥ ସଂଗ୍ରହ କାର୍ଯ୍ୟରେ ବାହାରିଥିଲେ ।

ପଣ୍ଡିତ ନୀଳକଣ୍ଠ ତାଙ୍କ ଆତ୍ମ ଜୀବନୀରେ ଲେଖିଛନ୍ତି—"ମୁଁ ଏବଂ ଗୋପବନ୍ଧୁ ବାବୁ ବର୍ଷ ଶେଷ ଆଡ଼କୁ ଅର୍ଥ ସଂଗ୍ରହ ଓ ଗୃହ ନିର୍ମାଣ ଉପ-କରଣ ସଂଗ୍ରହ କରିବା ନିମନ୍ତେ ବାହାରକୁ ଗଲୁ । ଆମର ଏହି କାମ ଉତ୍କଳବାସୀଙ୍କ ପ୍ରାଣରେ ବେଶ୍ ଆକର୍ଷଣ ଆଣି ପାରିଥିଲା । ଏମାର ମଠର ମହନ୍ତ ମହାରାଜ, ରାଧାକାନ୍ତ ମଠାଧୀଶ ପ୍ରଭୃତି ଧନାଢ୍ୟ ବହୁ ସ୍ଥାନୀୟ ବ୍ୟକ୍ତି

ଓ ଗଡଜାତର ରାଜା ମହାରାଜାମାନେ ସତ୍ୟବାଦୀ ବିଦ୍ୟାଳୟର ଗୃହ ନିର୍ମାଣ ପାଇଁ ଯଥାଶକ୍ତି ସାହାଯ୍ୟ ଦେଇଥିଲେ ।”

ପଣ୍ଡିତ ନୀଳକଣ୍ଠ ଲେଖିଛନ୍ତି—ବର୍ଷଶେଷ ଆଡକୁ । ତା’ ମାନେ ୧୯୧୨ରେ ସତ୍ୟବାଦୀ ହାଇସ୍କୁଲ ଆରମ୍ଭ ହେଲା । ଅତଏବ ୧୯୧୨ ଶେଷ ଆଡକୁ ଗୃହଆଡେ ବୁଲିବା କାର୍ଯ୍ୟ ଆରମ୍ଭ ହୋଇଥିଲା ।

ଏଇ ପରିପ୍ରେକ୍ଷୀରେ, ଗୋପବନ୍ଧୁ ପ୍ରଥମ କରି ସିଂହଭୂମିକୁ ଆସିବା ଘଟଣାଟି ୧୯୧୩ କଥା ବୋଲି କେବିର ପଶୁପତି ତ୍ରିପାଠୀ ଯାହା କହିଛନ୍ତି ତାହା ଖୁବ୍ ବିଶ୍ୱାସ ଯୋଗ୍ୟ ।

ପୁଣି ‘ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ’ର ଦୁଇ ଲେଖକ ସତ୍ୟସୁନ୍ଦର ତ୍ରିପାଠୀ ଓ ବାଉରୀବନ୍ଧୁ, ସିଂହଭୂମିକୁ ଗୋପବନ୍ଧୁଙ୍କ ଆଗମନର ସମୟ ୧୯୧୩ ବୋଲି ମଧ୍ୟ ମତ ବ୍ୟକ୍ତ କରିଛନ୍ତି ।

ପୁଣି କେହି କେହି ମତ ପ୍ରକାଶ କରନ୍ତି ଗୋପବନ୍ଧୁ ବିହାର ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ସଭ୍ୟଭାବରେ ଗଲାପରେ ସିଂହଭୂମକୁ ଆସି-ଥିଲେ ୧୯୧୭ରେ । କିନ୍ତୁ ତାହା ଠିକ୍ ନୁହେଁ । କାରଣ ସିଂହଭୂମ ଜିଲ୍ଲା’ର ଡେପୁଟି କମିଶନର ମି: ଗ୍ୟାରେଟ୍ ସାହେବଙ୍କୁ ଗୋପବନ୍ଧୁ ୨୪-୨-୧୯୧୯ ରେ ଯେଉଁ ଚିଠି ଦେଇଥିଲେ, ସେଥିରେ ଇଂରେଜୀରେ ଏଇ ମର୍ମରେ ଲେଖାଥିଲା ‘ମୁଁ ପ୍ରାୟ ତିନବର୍ଷ ତଳେ ପୋଡାହାଟ ପ୍ରଗଣାରେ ପରି-ଭ୍ରମଣ କରିଥିଲି’ । ସୁତରାଂ ୧୯୧୯ର ତିନବର୍ଷ ପୂର୍ବରୁ ମାନେ ୧୯୧୬ ମସିହା କଥା । ପୁଣି ୧୯୧୬ ମସିହାରେ ପୋଡାହାଟ ଓ ଧଳଭୂମ ରାଜା, ଓ ଆନନ୍ଦପୁରର ଠାକୁର ସାହେବ, ଚୈନପୁର ଜମିଦାର ଏବଂ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ଦସ୍ତଖତ ସମ୍ବଳିତ ଯେଉଁ ସ୍ମାରକ ପତ୍ର, ସିଂହଭୂମର ଅଦାଲତରେ ଓଡ଼ିଆ ଭାଷାକୁ ସ୍ଥାନ ଦେବା ଓ ପ୍ରାଥମିକରୁ ମାଧ୍ୟମିକ ସ୍କୁଲରେ ଓଡ଼ିଆ ଭାଷାରେ ଶିକ୍ଷା ଦେବା ବିଷୟରେ ଦାବୀକରି ଦେଇଥିଲେ ଏବଂ ତା ଆଗରୁ ନବଗଠିତ ବିହାର ପ୍ରଦେଶର ଲେଫ୍ଟନେଣ୍ଟ ଗଭର୍ଣ୍ଣର ସାର୍ ଚାର୍ଲସ ଷ୍ଟୁଆର୍ଟ ବେଲଙ୍କୁ ୧୯୧୪ ମସିହା ଜାନୁଆରୀ ସାତ ତାରିଖରେ ସିଂହଭୂମ ଓଡ଼ିଆମାନଙ୍କ ତରଫରୁ ଖରସୁଆଁର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଟେଲିଗ୍ରାମ ଦ୍ୱାରା ଓଡ଼ିଆ ଭାଷାର ସ୍ୱାର୍ଥସଂରକ୍ଷଣ ଲାଗି, ଆବେଦନ

କରିଥିଲେ, ସେ ସବୁ ମୂଳରେ ଯେ ପଣ୍ଡିତ ଗୋପବନ୍ଧୁ ଥିଲେ ଏହା ଏକ ନିର୍ଭର ଯୋଗ୍ୟ ତଥ୍ୟ ।'

ଏଣୁ ୧୯୧୩ରେ ଗୋପବନ୍ଧୁ କେରା ଜମିଦାରଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ପ୍ରଥମେ ସିଂହଭୂମ୍ ଆସିଥିଲେ ଏହା ଉକ୍ତ ଘଟଣାରୁ ପ୍ରମାଣିତ ହେଲାପରେ, କେରାକୁ କିପରି ଆସିଥିଲେ ଗୋପବନ୍ଧୁ ସେ ସମ୍ବନ୍ଧରେ କିଛି ଆଲୋକପାତ କରିବା କଥା ।

ବାମଣ୍ଡାର ତତ୍କାଳୀନ ଅଧିପତି ଥିଲେ ସାର ସୁଢ଼ଳ ଦେବ । ସେ ଥିଲେ ଉଚ୍ଚକୋଟୀର ସାହିତ୍ୟ ପ୍ରେମୀ । ଘଟଣା-ଚକ୍ରରେ ସୁଢଳ ଦେବଙ୍କ ସହିତ ଗୋପବନ୍ଧୁଙ୍କର ସାକ୍ଷାତ୍ ହେଲାପରଠୁ, କାବ୍ୟାନୁରାଗୀ ସୁଢ଼ଳ ଦେବଙ୍କ ପ୍ରତି ଗୋପବନ୍ଧୁ ଯେତିକି ଆକୃଷ୍ଟ ହୋଇଥିଲେ, ଗୋପବନ୍ଧୁଙ୍କ ପାଣ୍ଡିତ୍ୟ ଓ ଦେଶ-ବତ୍ସଳତା ଗୁଣରେ ସେତିକି ମୁଗ୍ଧ ହୋଇଥିଲେ ସାର ସୁଢ଼ଳ ଦେବ । ଫଳରେ କେବଳ ଥରେ ଅଧେ ନୁହେ, ବହୁବାର, ସୁଢ଼ଳଦେବଙ୍କ ନିମନ୍ତ୍ରଣରେ ଗୋପବନ୍ଧୁଙ୍କୁ ବାମଣ୍ଡାଧିପତିଙ୍କ ଅନୁରୋଧ ରକ୍ଷି ବାମଣ୍ଡା ଯିବାକୁ ପଡୁଥିଲା ।

ଥରେ, କୌଣସି କାର୍ଯ୍ୟ ଉପଲକ୍ଷେ, ଗୋପବନ୍ଧୁ ଯେତେବେଳେ ବାମଣ୍ଡାରେ ଅବସ୍ଥାନ କରୁଥିଲେ, ସୁଢ଼ଳ ଦେବଙ୍କ ଜ୍ଞାତି କେରା ଅଧିପତି ଠାକୁର ଲକ୍ଷ୍ମୀନାରାୟଣ ସିଂହଦେବଙ୍କ ସହିତ ତାଙ୍କର ସାକ୍ଷାତ ହୁଏ । ଲକ୍ଷ୍ମୀନାରାୟଣ ସିଂହଦେବ ଥିଲେ ମାତୃଭାଷା ପ୍ରେମୀ । ଓଡିଆ ସାହିତ୍ୟ ଅଧ୍ୟୟନରେ ତାଙ୍କର ଅଧିକାଂଶ ସମୟ କଟୁଥିଲା । ଓଡିଆ ଛାନ୍ଦ ଓ ଚମ୍ପୁ ଢ଼ଙ୍ଗରେ ସେ କାବ୍ୟ କବିତା ମଧ୍ୟ ରଚନା କରୁଥିଲେ । ଗୋପବନ୍ଧୁଙ୍କର ସ୍ୱଭାବ ସୁଲଭ କାବ୍ୟିକ ସୁକୀଚଳନ ତାଙ୍କୁ ଖୁବ୍ ଆକୃଷ୍ଟ କରିଥିଲା । ପରିଚୟରୁ ଗଭୀର ହୋଇ ଉଠିଥିଲା ଆନ୍ତରିକତା । ନିଜର କିଛି ସାହିତ୍ୟ ରଚନା ପଢି ଶୁଣାଇବା ପାଇଁ ଠାକୁର ଲକ୍ଷ୍ମୀନାରାୟଣ ଆଗ୍ରହୀ ହୋଇ ଉଠିଥିଲେ ।

ବିନମ୍ର ନିବେଦନ ଜଣାଉଥିଲେ ଗୋପବନ୍ଧୁଙ୍କୁ···ଥରେ ତାଙ୍କର କେରା ରାଜପ୍ରସାଦରେ ଆସି ଅତିଥି ହେବା ପାଇଁ ।

କେରା, ସିଂହଭୂମ ଜିଲ୍ଲା ପୋଡ଼ାହାଟ ସବ୍‌ଡ଼ିଭିଜନର ରାଜଧାନୀ, ଏଇଠାରେ ବସବାସ କରୁଥିଲେ ରାଜପରିବାର ।

ବାମଣ୍ଡା ଅବସ୍ଥାନ ସମୟରେ ପଣ୍ଡିତ ଗୋପବନ୍ଧୁଙ୍କର ଆଉ ଜଣେ ଜାଣିପ୍ରବାଣୀ ବ୍ୟକ୍ତିଙ୍କ ସହିତ ମଧ୍ୟ ପରିଚୟ ହୋଇଥିଲା । ସେ ହେଉଛନ୍ତି ବ୍ରଜମୋହନ ତ୍ରିପାଠୀ । ବ୍ରଜମୋହନ ଥିଲେ ଗୁଇଁବସାର ପ୍ରସିଦ୍ଧ କାଠ ବ୍ୟବସାୟୀ ।

ପଣ୍ଡିତ ଗୋପବନ୍ଧୁଙ୍କ ସାକ୍ଷାତ ପାଇ, ବ୍ରଜମୋହନ ମନେକଲେ— ସେ ଯେପରି ଶ୍ରୀକ୍ଷେତ୍ର-ଧାମର ଜଣେ ପୂର୍ଣ୍ଣ-ପ୍ରାଣ ବ୍ୟକ୍ତିଙ୍କ ସମ୍ପର୍କରେ ଆସିଛନ୍ତି । ପ୍ରାଣର ଆବେଗରେ ଗୋପବନ୍ଧୁଙ୍କୁ ଥରେ ଗୁଇଁବସା ଆସିବାକୁ ସେ ମଧ୍ୟ ଅନୁରୋଧ କଲେ । ପ୍ରକୃତିମୁଗ୍ଧ ବ୍ରଜମୋହନଙ୍କ ଅନୁରୋଧକୁ ଭାଙ୍ଗିପାରିଲେ ନାହିଁ ଗୋପବନ୍ଧୁ । ସୁଦାମାଙ୍କ ଭକ୍ତିରେ ଶ୍ରୀକୃଷ୍ଣ ମୋହାସକ୍ତ ହେଲା ପରି ବ୍ରଜମୋହନଙ୍କ ସାଙ୍ଗରେ ଗୁଇଁବସା ଆସିଲେ ଗୋପବନ୍ଧୁ ।

ଗୁଇଁବସାର ନାମ ସେତେବେଳେ ଥିଲା 'ଗୁରିବସା' । ଗୁରିଗୋଷ୍ଠି ବସାରେ ଏଠି ବାସ କରୁଥିଲେ ଗୁରିଜଣ ଖ୍ୟାତନାମା ଓଡ଼ିଆ ପରିବାର । ଗୁଇଁବସାର ବିସ୍ତୃତ ଅଞ୍ଚଳ ସେମାନଙ୍କର ଅକ୍ତିଆରରେ ଥିଲା ।

ବ୍ରଜମୋହନ ତ୍ରିପାଠୀଙ୍କ ଘରେ ଗୋପବନ୍ଧୁ ଗୁଇଁବବସାରେ ଥିଲା-ବେଳେ, ଖବର ପାଇଗଲେ କେରା ଜମିଦାର ଠାକୁର ଲକ୍ଷ୍ମୀ ନାରାୟଣ । ଆନନ୍ଦରେ ଅଧିର ହୋଇ ଉଠିଲେ ସେ । ଏ ସୁଯୋଗ ଛାଡ଼ିବା କଥା ନୁହେ । ବିଶ୍ୱସ୍ତ ଲୋକ ପଠେଇ, ରାଜକୀୟ ସମ୍ମାନ ଦେଇ, ଗୋପବନ୍ଧୁଙ୍କୁ ପାଗ୍ଲୋଟି ନେଇଗଲେ କେରା ରାଜବାଟୀକୁ ।

ଇଏ ୧୯୧୩ ମସିହା କଥା ।

ସେତେବେଳେ ଏ ଅଞ୍ଚଳରେ ଜମିଦାରଙ୍କର ଆଉ ସେପରି ଆଡ଼-ବାଡ଼ ନଥିଲା । କର୍ପୂର ଉଡ଼ିଯାଇ କେବଳ କନା ପଡ଼ିରହିଥିଲା । ନାମ ଏବଂ ସଂସ୍କାର ହୋଇ ମାତ୍ର ରହିଥିଲେ ରାଜ ପରିବାର । ନା ଥିଲା ଅର୍ଥର ପ୍ରାଚୁର୍ଯ୍ୟ ନା କ୍ଷମତାର ପ୍ରତିପତ୍ତି । ଇଂରେଜମାନଙ୍କ କଡ଼ା ଶାସନ ଫଳରେ ଜମିଦାର ବଂଶର ବିଭବ ଆଉ ଗୌରବ ସବୁ ନିଷ୍ପ୍ରଭ ହୋଇ ଆସିଥିଲା । ୧୯୧୨ରେ ବିହାର ସହିତ ଏଇ ସବୁ ଅଞ୍ଚଳକୁ ମିଶାଇ ଦେବା ଦ୍ୱାରା ଓଡ଼ିଆ ଭାଷା, କଳା ଓ ସଂସ୍କୃତି ସବୁ ଲୋପ ପାଇ ଆସୁଥିଲା କ୍ରମେ କ୍ରମେ ।

କେରା ଆସି, ଗୋପବନ୍ଧୁ ଯାହା ଦେଖିଲେ, ଓଡ଼ିଆ ଭାଷାର କଣ୍ଠ-ରୋଧ କରିବା ପାଇଁ ବିହାରୀମାନଙ୍କର ଯୋଉ ମାରପେଞ୍ଚ କଥା ଶୁଣିଲେ

ଠାକୁର ଲକ୍ଷ୍ମୀ ନାରାୟଣଙ୍କ ଠାରୁ, ସେଥିରେ ସେ ସ୍ତମ୍ଭୀଭୂତ ହୋଇଗଲେ । ତାଙ୍କର ଜାତୀୟ ପ୍ରାଣ କାନ୍ଦି ଉଠିଲା । ଖାଣ୍ଟି ଓଡ଼ିଆ ମୂଳକ ସିଂହଭୂମି, ଓଡ଼ିଆ କଥା, ଓଡ଼ିଆ ଚଳି-ଚଳଣି ସବୁରିଆଡ଼େ । ସମସ୍ତଙ୍କ ହାବ-ଭାବରେ ଓଡ଼ିଶା ସାମାଜିକ ଜୀବନର କଳା, ସାହିତ୍ୟ, ସଂସ୍କୃତିର ଭାବ ପ୍ରକାଶ ପାଉଚି, ଅଥଚ ପିଲାମାନେ ନିଜ ମାତୃଭାଷା ଓଡ଼ିଆରେ ପଢ଼ି ପାରିବେନାହିଁ । ସ୍କୁଲରେ ହିନ୍ଦି ପଢ଼ିବାକୁ ବାଧ୍ୟ ସେମାନେ । ଇଂରେଜ ଶାସକମାନଙ୍କର ଅଦ୍ଭୁତ ବୁଦ୍ଧିମତା—କୋର୍ଟ କଚେରି ଭାଷା ବି ହିନ୍ଦି । ଦଲିଲ ଦସ୍ତାବିଜ୍ ସବୁ ହିନ୍ଦିରେ । ଜନମତକୁ ଏପରି ବେଖାତିର କରିବା କେବଳ ଏଇ ସାମ୍ରାଜ୍ୟବାଦୀ ଅତ୍ୟାଚାରୀ ବ୍ରିଟିଶମାନଙ୍କ ପକ୍ଷରେ ସମ୍ଭବ । ମନମୁଖୀ ଶାସନର ବିଭତ୍ସ ରୂପ ଖୋଲିଗଲେ ଗୋପବନ୍ଧୁଙ୍କ ଆଗରେ ।

ଜମିଦାର ଲକ୍ଷ୍ମୀ ନାରାୟଣ ଦୁଶ୍ଚିନ୍ତାରେ ବିବ୍ରତ, ଆଉ ବିଚଳିତ ହୋଇପଡ଼ିଥାନ୍ତି । ଉପାୟ କ'ଣ ଏ ମେଶିରାୟ ସିଦ୍ଧାନ୍ତ ବିରୁଦ୍ଧରେ ?

ଗୋପବନ୍ଧୁ ସବୁ ଶୁଣିଲେ । ଧୀର ସ୍ଥିର ଭାବରେ ଦେଖିଲେ, କିନ୍ତୁ କ'ଣ କରିବେ ହଠାତ କିଛି କୂଳ କିନାରା ପାଇଲେ ନାହିଁ । ଜମିଦାରଙ୍କ ଅତିଥି ଭବନର, ନିର୍ଜ୍ଜନ ପ୍ରକୋଷ୍ଠରେ ଏକାନ୍ତରେ ବସି, ଆକାଶ ପାତାଳ ଅନେକ କିଛି ଭାବିଗଲେ । ଯନ୍ତ୍ରଣାରେ ତାଙ୍କ ଭାବୁକ ପ୍ରାଣ ବିଦ୍ରୋହ କରି ଉଠିଲା । ଅନ୍ୟାୟର ପ୍ରତିକାର କରିବାକୁଇ ହେବ । ଶାନ୍ତିର ପଥ ବାଛି-ନେବାକୁ ହେବ । ସଂଗ୍ରାମ ପାଇଁ ଗଢ଼ି ତୋଳିବାକୁ ହେବ ଜାତୀୟ ସଂହତି । ଉପାନ୍ତ ଅଞ୍ଚଳର ଭଗ୍ନ ଓଡ଼ିଆ ପ୍ରାଣକୁ ଜାଗ୍ରତ କରାଇବାକୁ ପଡ଼ିବ । ସଂଗଠିତ କରିବାକୁ ହେବ ସମସ୍ତଙ୍କୁ ଜଗନ୍ନାଥ ସଂସ୍କୃତିରେ । ଯୋଉ ସଂସ୍କୃତିର ମୂଳମନ୍ତ୍ର ହେଲା ମାତୃଭାଷାର ଟେକ ।

'ବଡ଼ ହେବା ପାଇଁ କର ଯଦି ଆଶା
ବଡ଼ କର ଆଗେ ନିଜ ମାତୃ ଭାଷା' ।

ମାତୃଭାଷାରେ କହିବା ଆଉ ପଢ଼ିବାର ଅଧିକାର —ଏ ଅଧିକାର ପ୍ରତ୍ୟେକ ମଣିଷର ଜନ୍ମଗତ । ଏ ଅଧିକାରକୁ ସାବ୍ୟସ୍ତ କରିବାକୁ ହେବ । ବାଧା ପ୍ରତିବନ୍ଧ ଯେତେ ଯୋଉଆଡ଼ୁ ଆସୁ, କାର୍ଯ୍ୟାନୁଷ୍ଠାନର ଶପଥ ଭିତରେ ଆଗେଇ ଯିବାକୁ ହେବ । ଓଡ଼ିଆରେ ପଢ଼ିବାର ଦାବୀ, ଏ ଦାବୀକୁ ଜଲବତ୍ ହାସଲ କରିବାକୁ ହେବ, ଏକ ନୀରବ ବିପ୍ଳବ ଭିତରେ ।

ହଠାତ୍ ଶଶୀଭୂଷଣ ରାୟଚୌଧୁରୀଙ୍କ କଥା ମନେ ପଡ଼ିଗଲା ଗୋପବନ୍ଧୁଙ୍କର ।

ବନ୍ଦେମାତରଂ ଆନ୍ଦୋଳନ ଆରମ୍ଭ କରିଛନ୍ତି ଯୋଗୀ ଅରବିନ୍ଦ । ଯୁଗାନ୍ତର ଦଳଦ୍ୱାରା ସ୍ୱଦେଶୀ ଆନ୍ଦୋଳନ ଆଉ ଅନୁଶୀଳନ କାର୍ଯ୍ୟ ଚାଲିଛି । ଆଠବର୍ଷ ତଳେ ୧୯୦୫ରେ ନିଜେ ଏଇ ବୈପ୍ଳବିକ କାର୍ଯ୍ୟରେ ସେ ଯୋଗ ଦେଇଥିଲେ, ମନେ ପଡ଼ିଗଲା । କଲିକତାର ରିପନ କଲେଜ ପଢୁଥିଲାବେଳେ ଭୁବନେଶ୍ୱରରେ ଆତ୍ମଗୋପନ କରି ରହିଥିବା ଶିକ୍ଷକ-ରୂପୀ ବଙ୍ଗାଳୀ ବିପ୍ଳବୀ ଶଶୀଭୂଷଣଙ୍କ କଥା, ତାଙ୍କ ସହିତ ତାଙ୍କର ପରିଚୟ, ତାଙ୍କର ଘନିଷ୍ଠ ବନ୍ଧୁତା, ସବୁ ଗୋଟି ଗୋଟି ହୋଇ ମନେପଡ଼ିଗଲା ।

ସେଇ ଶଶୀବାବୁ ପୁଣି ଆଜି ଭୁବନେଶ୍ୱର ପାଇଁ ଲୁଚି ରହିବା ଆଗରୁ, ପ୍ରଥମେ ଏଇ ସିଂହଭୂମିରେହିଁ ଆତ୍ମଗୋପନ କରି ରହିଥିଲେ । ସେ ତାଙ୍କ ସଙ୍ଗେ ସ୍ୱଦେଶୀ ଆନ୍ଦୋଳନରେ ଯୋଗ ଦେଇଥିଲେ । ସ୍ୱଦେଶୀ ଆନ୍ଦୋଳନଠାରୁ ଆଜି ଆହୁରି ବଡ଼, ତାଙ୍କ ନିଜ ମାତୃଭାଷାର ଆନ୍ଦୋଳନ, ଜାତୀୟ ଶିକ୍ଷା ସମସ୍ୟା ଆଜି ତାଙ୍କୁ ଡ଼ାକୁଛି । ସେ ଡ଼ାକକୁ ସେ ଏଡ଼ିବେ କିପରି ? ଏଠାରେ ଏକ ବିରାଟ କର୍ତ୍ତବ୍ୟ ରହିଛି—ଓଡ଼ିଆ ଜାତୀୟତାକୁ ରକ୍ଷା କରିବା ଲାଗି ଓଡ଼ିଆ ବ୍ୟକ୍ତି ବିଶେଷଙ୍କର କର୍ତ୍ତବ୍ୟ । ଓଡ଼ିଆ ଶିକ୍ଷା ଆନ୍ଦୋଳନର ପ୍ରଥମ ଆହ୍ୱାନ ତାଙ୍କୁ ଏଇ ସିଂହଭୂମିରୁ ହିଁ ଦେବାକୁ ପଡ଼ିବ ।

ଭାବନାର ଉତ୍ତେଜନାରେ ସ୍ପନ୍ଦିତ ହୋଇ ଉଠିଲେ ଗୋପବନ୍ଧୁ । କଠିନ ପ୍ରତିଜ୍ଞାରେ ଶକ୍ତ ହୋଇ ଠିଆ ହେଲେ । ଶାନ୍ତ ସ୍ତବ୍‌ଧ ପରିବେଶ ଭିତରେ ସେ ଦେଖିଲେ ଏକ ଉଜ୍ଜ୍ୱଳ ଆଲୋକ ।

ନିରକ୍ଷରତାର ଅନ୍ଧକାର ଭିତରେ ଶିକ୍ଷାର ପ୍ରଦୀପ ଜାଳି ଦେବାହିଁ ଏକମାତ୍ର ପଥ । ସେ ପଥ ଯଦି ବିପ୍ଳବର ହୁଏ, ବିଦ୍ରୋହର ହୁଏ, ତାହା ହେଲେ ହେବେ ସେ ବିପ୍ଳବୀ । ଅନ୍ୟାୟ ବିରୁଦ୍ଧରେ ଲଢ଼ିବାକୁ ହେବେ ସେ ବିଦ୍ରୋହୀ । ହେବେ ସେ ଅଗ୍ନି-ପଥର ଯାତ୍ରୀ !

ଅଗ୍ନି-ମନ୍ତ୍ରରେ ପ୍ରଭାବିତ କରେଇଲେ ସେ ପ୍ରଥମେ, କେଶର ଠାକୁର ସାହେବ ଲକ୍ଷ୍ମୀନାରାୟଣଙ୍କୁ । କହିଲେ—ବ୍ରିଟିଶ ସରକାରଙ୍କ ଅନ୍ୟାୟ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଆରମ୍ଭର ପ୍ରଥମ ପଦକ୍ଷେପ ଏଇଠାରେ ହିଁଆ-

ଯାଉ । ସରକାରଙ୍କ ସିଦ୍ଧାନ୍ତକୁ ପ୍ରତିବାଦ କରି ନିଜ ମାତୃଭାଷାରେ ପଢ଼ିବାର ମାନବୀକ ଅଧିକାରକୁ ଏଇଠି ସାବ୍ୟସ୍ତ କରାଯାଉ । ସ୍କୁଲରେ ଓଡ଼ିଆ ପଢ଼ିବାର ସୁଯୋଗ ନଦେଇ ହିନ୍ଦିରେ ପଢ଼ିବାର ଯୋଉ ବାଧ ବାଧକତା କରାଯାଉଛି, ତା'ର ସକ୍ରିୟ ବିରୋଧ ସ୍ୱରୂପ, ଆରମ୍ଭ ହେଉ ଓଡ଼ିଆ ସ୍କୁଲଟିଏ ଏଇଠି କେବାରରେ । ଏଇ ସ୍କୁଲହିଁ ହେଉ ସିଂହଭୂମ ଓଡ଼ିଆଙ୍କ ପାଇଁ, ଅନ୍ଧକାର ଭିତରେ ବାଟ ଖୋଜି ପାଇବାର ପ୍ରଥମ ସାଧନା କେନ୍ଦ୍ର ।

ଯେଉଁଠି ଆଘାତ, ସେଇଠି ମୁକାବିଲା କରିବାର ଜିଦ୍ । ଯେଉଁଠି ଶାସନର ଅବିଚାର ସେଇଠି ସଂଗ୍ରାମର ପ୍ରସ୍ତୁତି ! କେବାର ରାଜପରିବାର ସମେତ ସେଠାକାର ଓଡ଼ିଆ ଅଧିବାସୀଙ୍କୁ ଓଡ଼ିଶାର ପ୍ରାଚୀନ କଳା, ସାହିତ୍ୟ, ଓ ଜଗନ୍ନାଥ ସଂସ୍କୃତିର ମାହାତ୍ମ୍ୟରେ ଉଦ୍‌ବୁଦ୍ଧ କରି ତୋଳିଲେ ଗୋପବନ୍ଧୁ ।

୧୯୧୨ରେ ବିହାର ଓଡ଼ିଶା ପ୍ରଦେଶ ନୂଆ ହୋଇ ଗଢ଼ା ହେଲା ପରେ ସମସ୍ତ ଉପାନ୍ତ ଅଞ୍ଚଳ ଭିତରେ ସିଂହଭୂମକୁ ଅଗ୍ରାଧିକାର ଦିଆଗଲା । କାରଣ ଏଇ ସିଂହଭୂମି ହିଁ ହେଲା ଓଡ଼ିଶାର ମସ୍ତକ ସ୍ୱରୂପ । ଓଡ଼ିଶା ଯଦି ସ୍ୱତନ୍ତ୍ର ପ୍ରଦେଶ ହେବ, ତେବେ ସିଂହଭୂମିକୁ ନେଇ ସ୍ୱତନ୍ତ୍ର ହେବ । ଏଇ ପ୍ରତିଜ୍ଞା ନେଇ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିବା କଥା ଠିକ୍ କରାଗଲା ।

ଅନେକ ଆଗରୁ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଗଢ଼ା ଯାଉ ବୋଲି ଦାବୀ କରି ଆନ୍ଦୋଳନ କଲାବେଳେ କେତେକ ଉପାନ୍ତ ଅଞ୍ଚଳକୁ ସାମିଲ କରି ପୂର୍ଣ୍ଣାଙ୍ଗ ପ୍ରଦେଶ ଗଠନ କରିବା ପ୍ରସ୍ତାବ ଅବଶ୍ୟ ଦିଆଯାଇଥିଲା । କିନ୍ତୁ ଉପାନ୍ତ ଅଞ୍ଚଳ ସିଂହଭୂମି ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇ ନଥିଲା । ଶିକ୍ଷା ଓ ଭାଷାଗତ କାର୍ଯ୍ୟକ୍ରମ ଭିତରେ ଜାଗୃତିର ଅଗ୍ନିବାଣୀ ପ୍ରଚାର କରି ଗଣ-ଆନ୍ଦୋଳନ ଭିତ୍ତିରେ ଓଡ଼ିଶା ସହିତ ମିଶ୍ରଣ ସପକ୍ଷରେ ଜନମତ ଜାଗ୍ରତ କରାଇବାରେ ଯେ ଏକ ବିଚକ୍ଷଣ ରାଜନୈତିକ କୌଶଳ ଅଛି, ତାହା ଏଇ ସିଂହଭୂମରେହିଁ ପ୍ରୟୋଗ କରି ଦେଖିବାକୁ ଚାହିଁଲେ ଗୋପବନ୍ଧୁ ।

ଚାହିଁବାର ଦୁଇଟି କାରଣରୁ, ଗୋଟିଏ ହେଲା,—ବଡ଼ି ମରୁଡ଼ିଗ୍ରସ୍ତ ଓଡ଼ିଆ ଜାତି ହେଲା ଭାରତର ସବୁଠୁ ବଳି ଦରିଦ୍ର । ଏ ଜାତି ଭିକୋଟି

ପ୍ରଦେଶଭିତରେ ରହି ମୁମୂର୍ଷୁ ଅବସ୍ଥାରେ ପଡିରହିଚି । ନା ଶାନ୍ତି, ନା ଅଛି ଜାତିଗତ ସ୍ୱାତନ୍ତ୍ର୍ୟ । ଓଡିଆ ଭାଷାଭାଷି ଅଞ୍ଚଳକୁ ନେଇ ଏକ ଶାସନାଧୀନ କରି ସ୍ୱତନ୍ତ୍ର ପ୍ରଦେଶଦାବୀ ବ୍ରିଟିଶ ଶାସକଙ୍କ ପାଖରେ ହେଇ ଆସୁଚି ବହୁବର୍ଷ ଧରି । ସେ ଦାବୀ ଯଦି ପୂରଣ ହୁଏ ଭବିଷ୍ୟତରେ, ତା' ହେଲେ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଓଡ଼ିଶାର ଆର୍ଥିକ ଅବସ୍ଥା କ'ଣ ହେବ ସେ କଥା ଏପର୍ଯ୍ୟନ୍ତ ବିଚାର କରି ଦେଖା ଯାଇନାହିଁ । ଭାରତର ସବୁଠୁ ଦରିଦ୍ରତମ ପ୍ରଦେଶ ଭାବରେ ତା'ର ବିକାଶ ଆଉ ପ୍ରଗତି କେତେ ଦୂର ସମ୍ଭବ ହେବ, ତାର ପରୀକ୍ଷା ନିରୀକ୍ଷା ଏବେଠୁ ଆରମ୍ଭ ହେବା ଉଚିତ ।

ସ୍ଥାପତ୍ୟ କଳାର ଐଶ୍ୱର୍ଯ୍ୟ ଅଛି ଏ ଜାତିର । ସାହିତ୍ୟ, ସଂସ୍କୃତିର ଗୌରବ ବି ଅଛି । କିନ୍ତୁ ଶିଳ୍ପ-ବାଣିଜ୍ୟର ଉତ୍କର୍ଷ କାହିଁ ? ପ୍ରଦେଶଟିଏ ମିଳିଲେ ଲୋକଙ୍କ ପାଇଁ ଉପାର୍ଜନର ଅବଲମ୍ବନ କ'ଣ ? ରାଜସ୍ୱ ଆଦାୟ ହେବ କେତେ ? କୋଉଥିରୁ ଆସିବ ପ୍ରଦେଶର ଉନ୍ନୟନ ପାଇଁ ଆବଶ୍ୟକୀୟ ଅର୍ଥ ?

ଶିଳ୍ପ ସମୃଦ୍ଧ ଯଦି ନହୁଏ ଓଡିଶା, ତା'ହେଲେ ସ୍ୱତନ୍ତ୍ରପ୍ରଦେଶ ହୋଇ ମଧ୍ୟ ଏହା ସବୁଦିନ 'ଡୋକେପି'ଦଣ୍ଡେ ଜି' ଅବସ୍ଥାରେ ପଡିରହିବ । ଏହାର ଖଣିଜ ସମ୍ପଦ ଅପର୍ଯ୍ୟାପ୍ତ । ଅରଣ୍ୟ ସମ୍ପଦ ବି ଅପରିସୀମ । କିନ୍ତୁ ଏସବୁର ବିନିଯୋଗ ପାଇଁ କଳକାର୍ଖାନା କାହିଁ ? ମୁଠାଏ ଭାତ ପାଇଁ, କଲିକତା, ଆସାମ, ରେଙ୍ଗୁନ୍‌କୁ କୁଲିଗିରି କରିବା ପାଇଁ ଯଦି ସବୁଦିନ ଧାଏଁ, ଏ ଜାତିର ଭବିଷ୍ୟତ ବଂଶଧର, ତାହେଲେ କାହିଁସୁ ଜୀବନରେ କି ଅଗ୍ରଗତି ହେବ ବୋଲି ଆଶା କରାଯାଇପାରେ ?

ଏଇପରି ନାନାନ୍ ଚିନ୍ତାରେ ଗୋପବନ୍ଧୁ ଯେତେବେଳେ ସମାଧାନ ଖୋଜିବାକୁଯାଇ ଅସ୍ଥିର ହେଇପଡିଥିଲେ—ରାତିର ନିଶୁପ୍ତି ଭିତରେ ହୁଏତ ହଠାତ୍ ଦେଖିଲେ ଏକ ଶିଖାୟିତ ଶ୍ରେଣୀ, କେଉଁ ଠାରୁ ବେଶ୍ କିଛି ଦୂରରେ । ଏକ ଦୀପ୍ତ ଉଜ୍ଜ୍ୱଳ ପ୍ରଭା ! ସେ ଆଶ୍ଚର୍ଯ୍ୟରେ ଚମକି ଉଠିଲେ । ରାତିର ଆକାଶରେ ଏ ଆଲୋକର ସମାରୋହ କ'ଣ ? ହଠାତ୍ ତାଙ୍କର ମନେ ପଡିଗଲା ଏଠୁ ମାତ୍ର ତିରିଶ ମାଇଲ ଦୂରରେ ନବ ନିର୍ମାଣମୁଖି ଟାଟା କାରଖାନାର ଅବସ୍ଥିତି କଥା । ଏଇ ଆଲୋକ ହୁଏତ, ସେଇଠି ଲୁହା ତରଳେଇବାର ଅଗ୍ନି ତେଜ ।

ତନ୍ମୟ ହୋଇ ସେ କିଛିକ୍ଷଣ ସେଇଆଡ଼େ ଚାହିଁ ରହିଲେ । ତା' ପରେ ଆନନ୍ଦରେ ନାଚି ଉଠିଲେ । ହଁ, ଜାତିର ଦାରିଦ୍ର୍ୟ ସମସ୍ୟା ସମାଧାନ କରିବାର ଏକ ସଙ୍କେତ ସେ ପାଇଛନ୍ତି ଏତେବେଳକେ, ଏଇ ଆଲୋକର ସ୍ୱପ୍ନଜ୍ୟୋତି ଭିତରେ ।

ଏକ ବିପୁଳ ସମ୍ଭାବନାର ଆଭାସ ନିହିତ ଅଛି ଏଇ ଅଗ୍ନି ଶିଖାର ଜିଜ୍ଞାସା ଭିତରେ ।

ଟାଟା କମ୍ପାନୀ ସ୍ଥାପିତ ହୋଇଥିଲା ୧୯୦୭ରେ । ୧୯୧୩ ବେଳକୁ ଏହାର ସୁନାମ ସାରା ଭାରତବର୍ଷର ଚାରିଆଡ଼େ ବ୍ୟାପି ଯାଇଥିଲା । କେବଳ ସିଂହଭୂମ୍ ଜିଲାର ଲୋକ ନୁହନ୍ତି, ଓଡ଼ିଶାର ପୁରୀ, କଟକ ବାଲେ-ଶ୍ୱରରୁ ଶହ ଶହ ସଂଖ୍ୟାରେ ଲୋକ ଏ କାରଖାନାରେ କାମ ଖଟିବା ପାଇଁ ଧାଇଁଥିବା କଥା ଗୋପବନ୍ଧୁ ଜାଣିଥିଲେ । ବାମଣ୍ଡାରୁ ଗୁଇଁବସା ଆଉ ଗୁଇଁ-ବସାରୁ କେଉଁ ଅଫି, ଠାକୁର ସାହେବଙ୍କ ଅତିଥି ଭାବରେ ରହିବାବେଳେ ଆଲୋଚନା ପ୍ରସଙ୍ଗରେ, ହୁଏତ ଟାଟା କମ୍ପାନୀ କଥା ଲକ୍ଷ୍ମୀନାରାୟଣଙ୍କ ଠାରୁ ଶୁଣିଛନ୍ତି ଗୋପବନ୍ଧୁ । ଶୁଣିବା ପରେ, ଲୌହ ଉତ୍ପାଦନ କ୍ଷେତ୍ରରେ ଭାରତ-ବର୍ଷର ଏଇ ପ୍ରଥମ ଇସ୍ପାତ କମ୍ପାନୀଟିର ଭବିଷ୍ୟତ୍ ଯେ କି ଉଜ୍ଜ୍ୱଳମୟ, ଏବଂ ସର୍ବଭାରତୀୟ ସ୍ତରରେ ଏ ଲୌହ-ନଗରୀଟି ଯେ ଦିନେ କି ଗୁରୁତ୍ୱ-ପୂର୍ଣ୍ଣ ସ୍ଥାନ ଗ୍ରହଣ କରିବ, ତା ବି ସେ ଖୁବ୍ ଚିନ୍ତା କରି ଦେଖିଛନ୍ତି । ସବୁ ଆଲୋଚନା ପରେ, ଏଇ କାରଖାନାଟି, ଓଡ଼ିଶାର ଗୌରବ, ଆଉ ଓଡ଼ିଆଙ୍କ ଗର୍ବର କଥା ହୋଇ କିପରି ରହିବା ସମ୍ଭବ ହେବ, ସ୍ୱତନ୍ତ୍ର ପ୍ରଦେଶ ଦାବୀ ଭବିଷ୍ୟତରେ ସାର୍ଥକ ହେବାବେଳେ, ସେ ଭାବନାଟି ତାଙ୍କ ମନକୁ ଆଚ୍ଛନ୍ନ କରିଥିବା କଥା ମଧ୍ୟ ଖୁବ୍ ଅନୁମାନ କରାଯାଇପାରେ ।

ମୟୂରଭଞ୍ଜର ସରକାରୀ ମେମ୍ବର ଥିବାବେଳେ, ଗୋପବନ୍ଧୁ ଜାଣି-ଥିଲେ ବାଦାମପାହାଡ଼, ଆଉ ଗୁରୁମହିଷାଣୀରେ ଥିବା ଖଣିଜ ସଂପଦକୁ ବହୁ ବର୍ଷ ପାଇଁ ଲିଜ୍ ନେଇଛନ୍ତି ଜାମସେଦ୍‌ଜି ଟାଟା । ଏଇ କମ୍ପାନୀର ଜୀବନ ନାଡ଼ିକା ଓଡ଼ିଶା ମାଟିରେ, ଓଡ଼ିଆଙ୍କ ହାତରେ । ଏତିକବେଳକୁ···ଏ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଶିକ୍ଷାର ପ୍ରଚାର କାର୍ଯ୍ୟ ଜୋରସୋରରେ ଚାଲୁ ରହିଥିଲେ, ଓଡ଼ିଶା ସହିତ ସିଂହଭୂମି ମିଶିଲାବେଳେ ଶାସନରେ

ଦୃଷ୍ଟିରୁ ଟାଟା କମ୍ପାନୀ ନିଶ୍ଚୟ ଓଡ଼ିଶା ସରକାରଙ୍କ ଅକ୍ତିଆରରେ ରହିବ ଏଇ ଆଶାରେ ବେଶ୍ ଉତ୍ସାହୀ ହୋଇ ଉଠିଲେ ଗୋପବନ୍ଧୁ ।

ସିଂହଭୂମ୍‌ର ଓଡ଼ିଆ ଆନ୍ଦୋଳନକୁ ଅଗ୍ରାଧିକାର ଦେବାର ଦ୍ୱିତୀୟ କାରଣଟି ହେଲା, ଓଡ଼ିଆ ଏକ ଉଦାରମନା ଜାତି । ଓଡ଼ିଆ କ୍ଷୁଦ୍ର ପରିସର ଭିତରେ ସୀମାବଦ୍ଧ ନୁହେ । ପୁରୀ, ଭୁବନେଶ୍ୱର, କୋଣାର୍କ ମନ୍ଦିରର ବିଶାଳତା ଏହାର ଶିଳ୍ପୀକ ମନର ପରିଚୟ । ମନୁଷ୍ୟ ହାତଗଢ଼ା ଶିଳ୍ପ ଛଡ଼ା ଓଡ଼ିଶାର ପାରିପାର୍ଶ୍ୱିକ ବେଷ୍ଟନୀ ସେହି ବିଶାଳ ଭାବ, ଓ ଉଦାରତାର ପ୍ରମାଣ । ଯେଉଁ ଦେଶର ଦେବତା ଜଗନ୍ନାଥ, ସେ ଦେଶର ନଦୀ, ଗିରି, ସାଗର, ଶ୍ମଶାନରେ ଯେ ସେହି ମହାଉଦାରଭାବ ବିକାଶ ପାଇବ ତାହା ସ୍ୱାଭାବିକ । ଓଡ଼ିଶାର ନଦୀ-ମହାନଦୀ, ସମୁଦ୍ର-ମହୋଦଧି, ଗିରି-ମହେନ୍ଦ୍ର, ବୃକ୍ଷ-କଳ୍ପବଟ ଏମନ୍ତ କି ଶ୍ମଶାନ ମାନବର ଅନ୍ତିମ ସ୍ଥାନ ନୁହେଁ ବରଂ ଅନନ୍ତଧାମର ପ୍ରବେଶ ଦ୍ୱାର ସ୍ୱର୍ଗ-ଦ୍ୱାର ।

ଯେଉଁ ଓଡ଼ିଆ ପ୍ରାଣ, ମହାଭାବ କଳ୍ପନା କରି ଶ୍ରୀ କ୍ଷେତ୍ର ଧାମରେ ଭାରତର ଯେ କୌଣସି ପ୍ରାନ୍ତର ଲୋକଙ୍କୁ ସାଦର ସମ୍ଭାଷଣ ଜଣାଏ, ସେ ଜାତି ପ୍ରାଣର ବିଶାଳତାରେ ବିଶ୍ୱମାନବିକତାର ମହାନୁଭବତାରେ, ନିଜର ସ୍ୱାତନ୍ତ୍ର୍ୟ କଥା ଭୁଲି ବସିବା ଯେ ଖୁବ୍ ସ୍ୱାଭାବିକ, ଏ ଆଶଙ୍କା ଗୋପବନ୍ଧୁଙ୍କ ମନରେ ସବୁ ସମୟରେ ଥିଲା । ବିଶେଷ କରି ବଙ୍ଗାଳିମାନଙ୍କ ଚକ୍ରାନ୍ତ ଫଳରେ, ପୁରୀ, କଟକ, ବାଲେଶ୍ୱରରେ ବଙ୍ଗାଳି ଜମିଦାରମାନଙ୍କ ପ୍ରଭାବ ଏପରି ବଢ଼ିଯାଇଥିଲା ସେତେବେଳେ, ଗ୍ରାମାଞ୍ଚଳରେ ମଧ୍ୟ, ଲୋକେ ବଙ୍ଗଳା କଥା କହିବାକୁ ସୁଖ ପାଉଥିଲେ । ପୁଣି ଶ୍ରୀ କ୍ଷେତ୍ରରେ ପଣ୍ଡା-ପଡ଼ିହାରୀମାନେ ବିଭିନ୍ନ ପ୍ରଦେଶର ଯାତ୍ରୀମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଭାରତର ସବୁ ପ୍ରକାର ଭାଷା ପ୍ରାଞ୍ଜଳ ଭାବରେ କହିବାରେ ଖୁବ୍ ଅଭ୍ୟସ୍ତ ଥିଲେ । ପୁଣି ଦକ୍ଷିଣାଞ୍ଚଳରେ ତେଲଙ୍ଗୀ ସଂସ୍କୃତି, ଗଞ୍ଜାମର ସାମାଜିକ ଜୀବନକୁ ମଧ୍ୟ ଖୁବ୍ ପ୍ରଭାବିତ କରି ସାରିଥିଲା ସେତେବେଳକୁ । ଏ ଅବସ୍ଥାରେ, ବିହାରର ହିନ୍ଦୀ ଭାଷା ଯଦି ଉତ୍ତର-ପଶ୍ଚିମପଟରୁ ମାଡି ଆସିବାର ସୁବିଧା ପାଇଯାଏ, ତା' ହେଲେ ଏ ବିରାଟ କଳିଙ୍ଗ ଜାତିର ଜଗନ୍ନାଥ ସଂସ୍କୃତି ଯେ ନିଶ୍ଚୟ ସବୁ ମହତ୍ତ୍ୱ ହରେଇ ବସିବ ଏ କଥା ଭାବି ଗୋପବନ୍ଧୁ ବଡ଼ ଚିନ୍ତିତ ହୋଇପଡ଼ିଲେ ।

ଓଡ଼ିଆ ଜାତିର ଅନୁକରଣ ଲିପ୍ସା ଖୁବ୍ ପ୍ରବଳ, ଏବଂ ଅନ୍ୟାନ୍ୟ ଜାତିର ଲୋକଙ୍କ ତୁଳନାରେ ସେ ଶକ୍ତି ଖୁବ୍ ଅସାଧାରଣ ହେଲେ ମଧ୍ୟ, ମାତୃଭାଷାର ଟେକ, ଏବଂ 'ମୁଁ ଓଡ଼ିଆ' ଏ ଭାବ ଗର୍ବିତ ଅଭିମାନକୁ ବଜାୟ ରଖିବାରେ ସେ ଯେ ସମ୍ପୂର୍ଣ୍ଣ ବିଫଳ ହୋଇପଡ଼ିବାର ବିପଦ ରହିଛି ସ୍ଥଳ ବିଶେଷରେ, ଏ କଥା ବି ଗୋପବନ୍ଧୁ ଆଶଙ୍କା କଲେ ।

ପୁଣି, ହିନ୍ଦି ସମଗ୍ର ଉତ୍ତର ଭାରତର ଲୋକପ୍ରିୟ ଭାଷା ହୋଇ ଥିବାରୁ ବିହାରର ଶ୍ରେଷ୍ଠ ନାଗପୁର ଅଞ୍ଚଳ ବାଟେ ଓଡ଼ିଶା ଭିତରକୁ ପଶି ଆସିବାର ସୁଯୋଗ ପାଇଲେ, କେବଳ ସିଂହଭୂମ୍ କାହିଁକି, କେନ୍ଦୁଝର, ମୟୂରଭଞ୍ଜ ସମେତ ଗଡ଼ଜାତର ବିସ୍ତୃତ ଅଞ୍ଚଳ ଯେ ହିନ୍ଦି ଭାଷୀ ହୋଇ ଯାଇପାରେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଏଣୁ ଏଇ ପ୍ରବେଶ ଦ୍ୱାର -ସିଂହଭୂମ୍‌ରେ ହିଁ ଗଢ଼ି ତୋଳିବାକୁ ହେବ ପ୍ରତିରୋଧର ସୁଦୃଢ଼ ପ୍ରାଚୀର । ହିନ୍ଦି ଭାଷାକୁ ଏଇଠାରେ ହିଁ ବାଧା ଦେବାକୁ ହେବ ଏକ ଫୌଜ ପରି ଛିଡ଼ା ହୋଇ । ବିହାରୀମାନଙ୍କୁ ମୁକାବିଲା କରିବାକୁ ହେବ, କଳେ ବଳେ, କୌଶଳେ, ଶିକ୍ଷାର କାଳଜୟୀ ମହିମାରେ ।

ଦକ୍ଷିଣରେ ଧୂ ମୂସର ଗଞ୍ଜାମ୍ ତେଲଗୁ ପ୍ରଭାବରୁ ଓଡ଼ିଆ ଭାଷାର ସ୍ୱାତନ୍ତ୍ୟ ରକ୍ଷା କରିବା ପାଇଁ ପ୍ରହରୀ ରୂପେ ଠିଆ ହୋଇଥିଲା ବହୁ ଆଗରୁ । ସାହିତ୍ୟ ରଥୀ ଫକୀର ମୋହନ, ପ୍ରତିବେଶୀ ବଙ୍ଗାଳୀମାନଙ୍କ ଚକ୍ରାନ୍ତକୁ ମୁକାବିଲା କରୁଥିଲେ ଉତ୍ତର ପୂର୍ବ ଅଞ୍ଚଳରେ । କିନ୍ତୁ ଉତ୍ତର ପଶ୍ଚିମାଞ୍ଚଳ ସିଂହଭୂମ୍‌ରେ, ବିହାରୀ ପ୍ରଭାବକୁ ବାଧା ଦେବା ପାଇଁ କୌଣସି ସଂଗଠନ ତ ଦୂରର କଥା, ସେ ବିଷୟରେ କେହି ଚିନ୍ତା ବି କରି ନ ଥିଲେ ଏ ପର୍ଯ୍ୟନ୍ତ ।

ଅଥଚ ଏ ଭିତରେ ବିହାର ଓଡ଼ିଶା ପ୍ରଦେଶ ଗଢ଼ା ହେବାର ପ୍ରାୟ ଦେଢ଼ ବର୍ଷ ବିତିଗଲାଣି ।।

ତେଣୁ ଏଇ ହେଉଛି ପ୍ରକୃଷ୍ଟ ସମୟ ଓଡ଼ିଆ ସଂଗଠନ ପାଇଁ । ଲାଗି ପଡ଼ିବାକୁ ହେବ ଲୋକମତ ଜାଗ୍ରତ କରାଇବା କାର୍ଯ୍ୟରେ । ଅଧିକ ବିଳମ୍ବ କଲେ ହୁଏତ, ଓଡ଼ିଆ ଅଧିବାସୀମାନେ ତାଙ୍କର ମନ ବଳ ହରାଇ ସଂପୂର୍ଣ୍ଣ ହତାଶ ହେଇ ବିହାର ଆଡ଼କୁ ଢଳି ଯାଇ ପାରନ୍ତି ।

ଏହି ମନନଶୀଳ ନିର୍ଦ୍ଧାରଣ ପରେ ଓଡ଼ିଆ ସାହିତ୍ୟାନୁରାଗୀ, ଠାକୁର ସାହେବଙ୍କୁ ଗୋଟିଏ ସ୍କୁଲ ଆରମ୍ଭ କରିବାକୁ ପରାମର୍ଶ ଦେଲେ ଗୋପବନ୍ଧୁ ।

ସେ ପରାମର୍ଶକୁ ନତମସ୍ତକରେ ଗ୍ରହଣ କରି କେରାଧିପତି ଲକ୍ଷ୍ମୀନାରାୟଣ, ଓଡ଼ିଆ ନିମ୍ନ ପ୍ରାଥମିକ ବିଦ୍ୟାଳୟଟିଏ ଆରମ୍ଭ କଲେ କେରାରେ ସେଇ ୧୯୧୩ ସାଲରେ ।

କେବଳ କେରାରେ ଓଡ଼ିଆ ସ୍କୁଲଟିଏ ଆରମ୍ଭ କରେଇ ଦେଇଆସି ଗୋପବନ୍ଧୁ ନିଶ୍ଚେଷ୍ଟ ହୋଇ ବସି ରହିଲେ ନାହିଁ । ବିହାର ଓଡ଼ିଶା ବ୍ୟବସ୍ଥା ସଭାରେ କିପରି ବିଚ୍ଛିନ୍ନାଞ୍ଚଳ କଥା ପଡ଼ିବ ଏବଂ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ସ୍ୱୀକୃତି ପାଇବ ସେ ଚେଷ୍ଟାରେ ନିରବଚ୍ଛିନ୍ନ ଭାବରେ ଲାଗି ରହିଲେ ।

ସେ ସୁଯୋଗ ଆସିଲା, ଯେତେବେଳେ ମ୍ୟୁନିସିପାଲ ସଂସ୍ଥାମାନଙ୍କରୁ ଜଣେ ଜଣେ ଅତିରିକ୍ତ ସଭ୍ୟ ନିର୍ବାଚନ ବେଳ ଆସିଗଲା ।

୧୯୧୨ରେ ବଙ୍ଗ ପ୍ରଦେଶରୁ ବିଚ୍ଛିନ୍ନ ହୋଇ ଲେଫଟେନାଣ୍ଟ ଗଭର୍ଣ୍ଣରଙ୍କ ଅଧୀନରେ ଶାସିତ ହେଉଥିଲା ବିହାର ଓଡ଼ିଶା, ଏକଥା ଆଗରୁ ଲେଖିଛି । ୧୯୦୯ ଆକ୍ଟ ଅନୁସାରେ ଏଇ ସବୁ ପ୍ରାଦେଶିକ ବ୍ୟବସ୍ଥା ସଭାକୁ ଅତିରିକ୍ତ ସଭ୍ୟଭାବରେ ମ୍ୟୁନିସିପାଲ ସଂସ୍ଥାମାନଙ୍କରୁ ଜଣେ ଜଣେ ସଭ୍ୟ ନିର୍ବାଚିତ ହୋଇ ଯିବା କଥା । ଓଡ଼ିଶାର ପୌର ସଂସ୍ଥା ଗୁଡ଼ିକରୁ ୧୯୧୨ରେ ନିର୍ବାଚିତ ହୋଇଥିଲେ ମଧୁସୂଦନ ଦାସ । ସେଇ ମଧୁବାବୁଙ୍କ ପରାମର୍ଶରେ ଗୋପବନ୍ଧୁ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କଲେ । ମଧୁବାବୁଙ୍କ ସାହାଯ୍ୟରେ ମଧ୍ୟ ବିଜୟୀ ହେଲେ । ଏବଂ କାଉନ୍‌ସିଲ ସଭ୍ୟ ହେଲେ ।

ସେତେବେଳେ ଏଡ଼ୱାର୍ଡ ଗେଟ୍ ଥିଲେ ବିହାର ଓଡ଼ିଶାର ଗଭର୍ଣ୍ଣର । ବ୍ୟବସ୍ଥାପକ ଭାବରେ ତିନୋଟି ମୁଖ୍ୟ ସମସ୍ୟା ପ୍ରତି ଧ୍ୟାନ ଦେଲେ ଗୋପବନ୍ଧୁ ।

ପ୍ରଥମଟି ହେଲା—ଓଡ଼ିଆ ଭାଷା ଭାଷି ଅଞ୍ଚଳର ଏକତ୍ରୀକରଣ ।

ଦୁଇରେ—ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ସ୍ୱୀକୃତି ଦିଆଯାଉ ।

ଉପରେ,—ସତ୍ୟବାଦୀ ବନ ବିଦ୍ୟାଳୟ ଢାଞ୍ଚାରେ ଓଡ଼ିଶା ସାରା ଶିକ୍ଷା ପ୍ରସାର ହେଉ ।

ଏ ପ୍ରସ୍ତାବ ବ୍ୟବସ୍ଥା ସଭାରେ ଦେବା ଆଗରୁ, ଗୋପବନ୍ଧୁ ଓଡ଼ିଶାର ଉପାନ୍ତ ଅଞ୍ଚଳମାନ ବୁଲି ଦେଖିବା କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ସେ ଅଞ୍ଚଳମାନଙ୍କରେ ଓଡ଼ିଆ ଅଧିବାସୀଙ୍କର ମନୋବଳ କେତେ, ଓଡ଼ିଆ ପଢ଼ିବା ପାଇଁ ଆଗ୍ରହ କେତେ, ପୁଣି କୌଣସି ଆନ୍ଦୋଳନ ଆରମ୍ଭ କରାଗଲେ କେତେଦୂର ସେମାନେ ସମର୍ଥନ କରିବେ, ସେ ବିଷୟରେ ଏକ ସ୍ପଷ୍ଟ ଧାରଣା କରିନେବା ଉଚିତ ମନେ କରିଥିଲେ ।

ଏଇ ପରିପ୍ରେକ୍ଷୀରେ ସେ ବିଶେଷ୍ କରି, ବଙ୍ଗ ପ୍ରଦେଶ ସହିତ ମିଶିଥିବା ମେଦିନପୁରଠୁ ନେଇ ବିହାର ଉପାନ୍ତରେ ଥିବା ସିଂହଭୂମି ଓ ଖରସୁଆଁ-ସରାଇକଳା, ଦୁଇଟି ଗଡ଼ଜାତରେ ବାସ କରୁଥିବା ଓଡ଼ିଆ ଅଧିବାସୀଙ୍କ ମତାମତ ସଂଗ୍ରହ କରିବାକୁ ଚେଷ୍ଟା କରିଥିଲେ ।

କେଉଁ ଅଧିପତିଙ୍କ ଓଡ଼ିଆ ପ୍ରୀତି ସେ ଜାଣିଥିଲେ, ଜାଣିଥିଲେ ସରାଇକଳା ରାଜା ସାହେବଙ୍କ ଓଡ଼ିଆ ସାହିତ୍ୟ, ସଂସ୍କୃତି ପ୍ରତି ଆଗ୍ରହ କଥା ।

କେବଳ ଆଗ୍ରହ ନୁହେଁ, ସରାଇକଳା ରାଜପରିବାରର ଅଦମ୍ୟ ଆଗ୍ରହ ଓଡ଼ିଶୀ ଛଉ ନୃତ୍ୟର ଉତ୍କର୍ଷ ପ୍ରତି । ଓଡ଼ିଆ ଚମ୍ପୂ ଓ ଛାନ୍ଦ, ଉପରେ ଆଧାରିତ ସେ ନୃତ୍ୟର ସ୍ୱର ସଂଯୋଜନା, ଗୃଙ୍ଗୁ-ଢୋଲ, ମହୁରୀ, କାହାଳୀ ପ୍ରଭୃତି ଯନ୍ତ୍ର ସାହାଯ୍ୟରେ ସେ ନୃତ୍ୟର ବାଦ୍ୟ ଜମକ ଭିତରେ ଖାଣ୍ଟି ଓଡ଼ିଶୀ ଗୀତି ନୃତ୍ୟ ସଂସ୍କୃତିର ମହତ୍ତ୍ୱ ବଜାୟ ରଖିବାର ପ୍ରୟାସ, ଗୋପବନ୍ଧୁଙ୍କ ଆନ୍ତରିକ ଅନୁପ୍ରାଣିତ କଲା, ସିଂହଭୂମିରେ ଓଡ଼ିଆ ଦାବୀକୁ ମଜବୁତ କରିବା ପାଇଁ ।

ଏଇଠି ଗୋଟିଏ ପ୍ରଶ୍ନ ପଚରା ଯାଇ ପାରେ ୧୯୧୭ରେ ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହେବା ଆଗରୁ ସେ କ'ଣ ୧୯୧୩ ପରେ କେଉଁ ପୀଠପତିଙ୍କ ଅତିଥି ହୋଇ ରାଞ୍ଚି କେଉଁରେ ଓଡ଼ିଆ ସ୍କୁଲଟିଏ ବସେଇ ଦେଇ ଆସିବା ପରେ, ଆଉ କେବେ ହେଲେ ଭାରତବର୍ଷ ଭିତରେ ସିଂହଭୂମ୍ ଯାଇ ନଥିଲେ ?

ଏ ପ୍ରଶ୍ନର ଉତ୍ତରରେ ଗୋପବନ୍ଧୁଙ୍କ ସଂପର୍କରେ ବିଭିନ୍ନ ଲେଖକଙ୍କର ଯେଉଁ ଲେଖା ପ୍ରକାଶ ପାଇଛି, ତାହା ଖୁବ୍ ସାମାନ୍ୟ । ୧୯୦୬ରେ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାରେ, ବିଚ୍ଛିନ୍ନାଞ୍ଚଳ ସମ୍ବନ୍ଧରେ କହିବା ଆଗରୁ ସେ ସିଂହଭୂମିର ଚାରିଆଡ଼େ ବୁଲି ଲୋକଙ୍କ ମତାମତ ସଂଗ୍ରହ କରି ସାରିଥିଲେ, ଏତିକ ।

କିନ୍ତୁ ମତାମତ ସଂଗ୍ରହ କରିବା କାର୍ଯ୍ୟଟି, ସିଂହଭୂମ୍‌ର କାହା କାହା ସହିତ ଦେଖାକରି, କୋଉଠି କି ପ୍ରକାର କାର୍ଯ୍ୟାନୁଷ୍ଠାନ ମାଧ୍ୟମରେ ତା'ର ବିଶଦ ବିବରଣୀ ଯେପରି କିଛି ମିଳୁନାହିଁ ।

'ଓଡ଼ିଆ ଆନ୍ଦୋଳନର ଇତିହାସ' ବହିରେ ଅଛି—ବିହାର ସହିତ ଓଡ଼ିଶା ସାମିଲ ହେବା ଫଳରେ ଖାଣ୍ଟି ଓଡ଼ିଆ ଭାଷା ସିଂହଭୂମ୍‌ରୁ ଓଡ଼ିଆ ଭାଷାକୁ ଉଠାଇ ଦିଆଯାଇ ବିଦ୍ୟାଳୟମାନଙ୍କରେ ହିନ୍ଦି ପ୍ରଚଳନ କରିବା ପାଇଁ ଆଦେଶ ଦିଆଗଲା । ଷଡ଼େଇକଳା ଓ ଖରସୁଆଁର ଓଡ଼ିଆମାନେ ଏହାର ବିରୋଧ କଲେ । ସିଂହଭୂମ୍‌ର ଡେପୁଟି କମିଶନର ୨୦.୧.୧୯୧୪ ରେ ଏକଥା ସରକାରଙ୍କୁ ଜଣାଇ ଦେଲେ ।"

ଏଇ ଜଣାଇଦେବା ଫଳରେ ହୁଏତ ପୁନଶ୍ଚ ଓଡ଼ିଆ ଭାଷା ଚାଲିଲା ।

କାରଣ ସେଇ ବହିରେ 'ବିହାରରେ ଓଡ଼ିଆଙ୍କ ଅବସ୍ଥା' ପରିଚ୍ଛେଦରେ ଅଛି—୧୯୧୧ ମସିହା ଜନଗଣନାରେ ଷଡ଼େଇକଳା ଓ ଖରସୁଆଁରେ ଓଡ଼ିଆଙ୍କ ସଂଖ୍ୟା ୪୩,୦୫୮ ଥିଲାବେଳେ ହିନ୍ଦିଭାଷୀଙ୍କ ସଂଖ୍ୟା ଥିଲା ୯,୪୪୪ ମାତ୍ର । ଏଥିରେ ହିନ୍ଦିକୁ ଜବରଦସ୍ତ ଓଡ଼ିଆଙ୍କ ଉପରେ ଲଦି ଦେବା ସାହାସ ହୁଏତ ବିହାର ସରକାର କରି ପାରିଲେ ନାହିଁ । ପୁନଶ୍ଚ ଓଡ଼ିଆ ଭାଷା ଚାଲିଲା ।

ଘଟଣା ହେଲା, ଅଣଓଡ଼ିଆ ଗଣନାକାରୀଙ୍କ କାରସାଦି ଫଳରେ ୧୮୮୧ ମସିହାଠାରୁ ଏ ସଂଖ୍ୟା କମାଇ ଦେବା ଚେଷ୍ଟା ବରାବର ଚାଲିଲା । ୧୮୮୧ରେ ଦେଖାଗଲା ସିଂହଭୂମ୍‌ରେ ଓଡ଼ିଆଭାଷୀଙ୍କ ସଂଖ୍ୟା ହେଉଛି ୯୪,୪୫୧ । ୧୯୧୧ ବେଳକୁ ଅନ୍ୟମାନଙ୍କ ତୁଳନାରେ ଏ ସଂଖ୍ୟା ବଢି ବଢ଼ି ଅନ୍ତତଃ ଦେଢ଼ ଲକ୍ଷରେ ପହଞ୍ଚି ଥାଆନ୍ତା । କିନ୍ତୁ ୩୦ ବର୍ଷ ମଧ୍ୟରେ ଏ

ସଂଖ୍ୟା ଅଧାକୁ କମି ଆସିଲା । ତାର ଏକମାତ୍ର କାରଣ, ଅଣଓଡ଼ିଆଙ୍କ କୁଟ-ଚକ୍ରାନ୍ତ ।

ଭାଷା ଆନ୍ଦୋଳନ ଆରମ୍ଭ ହୋଇଥିଲା ସିଂହଭୂମ୍‌ରେ ୧୮୪୫ରେ । ସରକାର କେତେକ ଅଞ୍ଚଳରେ ଓଡ଼ିଆ ଭାଷା ଚଳିବା ଆଦେଶ ଦେଇଥିଲେ ।

କିନ୍ତୁ ବଙ୍ଗାଳୀ ଓ ବିହାରୀଙ୍କ ମିଳିତ ଆକ୍ରମଣ ଫଳରେ ଓଡ଼ିଆ ଭାଷା ପ୍ରଚଳନ ବାଧାପ୍ରାପ୍ତ ହୋଇଥିଲା । ଅବସ୍ଥା ଆହୁରି ସାଂଘାତିକ ହେଲା ବିହାର ପ୍ରଦେଶ ଗଢ଼ା ହେବା ପରେ । ସବୁ କ୍ଷେତ୍ରରେ ଓଡ଼ିଆଙ୍କୁ ହନ୍ତସନ୍ତ କଲେ, ବିହାରୀ ବଙ୍ଗାଳୀ ଉଭୟେ ଏକଯୁଟ ହୋଇ । ଅଥଚ ୧୮୭୨ରେ ପ୍ରକାଶିତ ବଙ୍ଗଳା ଜନଗଣନା ରିପୋର୍ଟରେ ସ୍ପଷ୍ଟ ସ୍ୱୀକାର କରାଯାଇଥିଲା—

**It is difficult to say where the border line of the province should be drawn. It is well known that there are large numbers of oriyas both in Medinapur & Singbhum.**

**Ori a is spoken through out the District 2,35,000 speak a munda language named "Ho" which incourse of time will give place to oriya.**

୧୮୭୧ ମସିହା ଜନଗଣନା ରିପୋର୍ଟରେ ସି·ସି· ଟାଲେଣ୍ଟ ସିଂହଭୂମ ବିଷୟରେ ଲେଖିଥିଲେ—

**The oriya speakers are found in the west of the District to Chhotanagpur States where the inteligentia are oriyas and the State recrds are Maintained in oriya.**

ସାରାର୍ଥ ହେଲା—ସିଂହଭୂମିର ଓଡ଼ିଆଭାଷୀଙ୍କ ସଂଖ୍ୟା ଗରିଷ୍ଠତା ଜିଲ୍ଲାର ପଶ୍ଚିମାଞ୍ଚଳରେ ଦେଖାଯାଏ । ଛୋଟନାଗପୁର ଅନ୍ତର୍ଗତ ଦୁଇଟି ରାଜ୍ୟ (ସରାଇକେଲା ଓ ଖରସୂଆଁ)ର ବୁଦ୍ଧିଜୀବୀମାନେ ଓଡ଼ିଆ ଓ ସେହି ରାଜ୍ୟ ମାନଙ୍କର ସମସ୍ତ କାଗଜପତ୍ର ଓଡ଼ିଆ ଭାଷାରେ ଲେଖାଯାଏ ।"

ସରାଇକେଲା, ଖରସୂଆଁରେ ଓଡ଼ିଆ ଭାଷା ଅବାହମାନ କାଳରୁ ଚଳି ଆସୁଛି ।

କବି ଜ୍ୟୋତିର୍ବିଦ ଚିନ୍ତାମଣି ପଟ୍ଟନାୟକ ତାଙ୍କର 'ପୁରୁଷାର୍ଥ-ଚିନ୍ତାମଣିଃ' ଗ୍ରନ୍ଥରେ ଲେଖିଛନ୍ତି···ମହେଶ୍ୱର କବିଚନ୍ଦ୍ର ୧୮୩୩ ମସିହାରେ

ଜନ୍ମଲାଭ କରି ୧୮୮୨ରେ ସ୍ୱର୍ଗାରୋହଣ କରିଥିଲେ । ସେ ଗୀତିସାର ଗ୍ରନ୍ଥ ରଚନା କରିଥିଲେ । ସେଥିରେ ଅଛି—

"ଉତ୍କଳେ ଷୋଡ଼ଶକଳା ନଗରୀ ବିଖ୍ୟାତ
ପ୍ରକଟ ମହିମ ହୋଇ ତହିଁ ବିରାଜିତ"

ଏହିପରି ବହୁ ଗ୍ରନ୍ଥ ଅଛି—ଯୋଉଥିରେ ସ୍ପଷ୍ଟ ପ୍ରତିପାଦିତ— ଷଢେଇକଳା ଓ ଖରସୂଆଁ ଖାଣ୍ଟି ଓଡ଼ିଆ ମୂଳକ ।

ଏଣୁ ୧୯୧୨ରେ ସିଂହଭୂମରୁ ଓଡ଼ିଆ ଭାଷା ଉଠାଇ ଦେବାକୁ ଯେତେବେଳେ ବିହାର ସରକାର ନିର୍ଦ୍ଦେଶ ଦେଲେ, ସେତେବେଳେ ଷଢେଇକଳା ଓ ଖରସୂଆଁରେ ତା' ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠିଲା ।

ଏହି ପ୍ରତିବାଦର ସ୍ୱରକୁ କିଏ ନିୟନ୍ତ୍ରିତ କରିଥିଲା—ଏ ପ୍ରଶ୍ନଟିର ଉତ୍ତର ଜାଣିବାକୁ ଚେଷ୍ଟା କରି ଏ ଲେଖକ ଗୋଟିଏ ତଥ୍ୟ ପାଇଛି, ଯୋଉଥିରୁ ପ୍ରମାଣ ମିଳୁଛି, ଗୋପବନ୍ଧୁ ୧୯୧୩ ପରଠୁ ବରାବର ସକ୍ରୀୟ ଓ କର୍ମତତ୍ପର ରହିଥିଲେ ସିଂହଭୂମ୍‌ର ଗ୍ରେଟବଡ଼ ସବୁ ସମସ୍ୟା ସମାଧାନ କରିବା ଦିଗରେ ।

ପ୍ରଥମ ତଥ୍ୟଟି ହେଲା—'ଓଡ଼ିଆ ଆନ୍ଦୋଳନର ଇତିହାସ' ଗ୍ରନ୍ଥର 'ଷଢେଇକଳା ଖରସୂଆଁ'ର ଖ୍ୟାତି ପରିଚ୍ଛେଦରେ ଅଛି—"ନବମ ଅଧିବେଶନ ପ୍ରସ୍ତାବାନୁରୂପେ ବିଚ୍ଛିନ୍ନ ଅଞ୍ଚଳରେ ଓଡ଼ିଆ ପ୍ରଚାର ନିମନ୍ତେ ଶ୍ରୀ ଅନନ୍ତ ମିଶ୍ରଙ୍କୁ ନିଯୁକ୍ତ କରାଗଲା । ସେ ସିଂହଭୂମି ଆଦି ବିଚ୍ଛିନ୍ନ ଅଞ୍ଚଳରେ ବିଶେଷ କାମ କରି 'ପ୍ରଚାରକ ଅନନ୍ତ ମିଶ୍ର' ରୂପେ ଖ୍ୟାତି ଅର୍ଜନ କରିଥିଲେ । ଏହି ନବମ ଅଧିବେଶନ ହେଲା ଉତ୍କଳ ସମ୍ମେଳନୀର ନବମ ଅଧିବେଶନ, ଯାହା ପୁରୀଠାରେ ୧୯୧୩ରେ ଅନୁଷ୍ଠିତ ହୋଇଥିଲା ।

ଏ ଅଧିବେଶନରେ ସଭାପତିତ୍ୱ କରିଥିଲେ ଉତ୍କଳ ଗୌରବ ମଧୁସୂଦନ ଦାସ ।

ଏ ସଭାରେ ବିହାର ଓଡ଼ିଶା ପ୍ରଦେଶ ଗଠନ ସମ୍ବନ୍ଧୀୟ ପ୍ରସ୍ତାବକୁ ସମର୍ଥନ କରି ପଣ୍ଡିତ ଗୋପବନ୍ଧୁ ଦାଶ କହିଥିଲେ—ଧନ୍ୟ ମଧୁବାବୁ, ଧନ୍ୟ ତୁମର ଜନ୍ମ । ତୁମ୍ଭେ ନିଜର କାର୍ଯ୍ୟଦ୍ୱାରା ଉତ୍କଳର ଗୃହେ ଗୃହେ ସୁପରିଚିତ । ଭାଇମାନେ, ମଧୁବାବୁଙ୍କୁ ସଭାପତି କରିବା ଦ୍ୱାରା ତାଙ୍କର ଯେ

ସମ୍ମାନ ବଢ଼ିବ, ତାହା ନୁହେଁ କିନ୍ତୁ ତାଙ୍କୁ ସମ୍ମାନ ଦେବା ଦ୍ୱାରା ଆମ୍ଭେମାନେ ସମ୍ମାନିତ ହେବା ।'

ଏ ଅଧିବେଶନରେ ଅଭ୍ୟର୍ଥନା ସଭାର ସଭାପତି ଥିଲେ, ଏମାର ମଠ ମହନ୍ତ ରାମାନୁଜ ଗଦାଧର ଦାସ ।

ଏ ସଭାରେ ଅନୁମୋଦିତ ହୋଇଥିବା ପ୍ରସ୍ତାବମାନଙ୍କ ଭିତରେ ଏକ ବିଶେଷ ପ୍ରସ୍ତାବ ହେଲା—ସିଂହଭୂମିରେ ଓଡ଼ିଆ ଭାଷା ପ୍ରଚଳନ ।

ଏଣୁ ସହଜରେ ଅନୁମାନ କରାଯାଇପାରେ, ସିଂହଭୂମରେ ଓଡ଼ିଆ ଭାଷା ପ୍ରଚଳନ ପ୍ରସ୍ତାବ ପାଶ୍ କରାଇ କେବଳ କ୍ଷାନ୍ତ ହୋଇ ନ ଥିଲେ ଗୋପବନ୍ଧୁ, ଓଡ଼ିଆ ଭାଷା ପ୍ରଚଳନ କାର୍ଯ୍ୟ କିପରି ସୁଚାରୁରୂପେ ପରିଚାଳିତ ହେବ, ସେଥିପାଇଁ ଅନ୍ୟ ଏକ ପ୍ରସ୍ତାବରେ ଅନନ୍ତ ମିଶ୍ର ଙ୍କୁ ପ୍ରଚାରର କାର୍ଯ୍ୟ ପାଇଁ ନିଯୁକ୍ତ କରାଯାଉ ବୋଲି ପ୍ରସ୍ତାବ ଦେଇ ସେ ତାକୁ ମଧ୍ୟ ଅନୁମୋଦିତ କରାଇଥିଲେ ।

ଆମେ ସମସ୍ତେ ଜାଣୁ ଅନନ୍ତ ମିଶ୍ରେ ଥିଲେ ଗୋପବନ୍ଧୁଙ୍କ ଆତ୍ମୀୟ ଏବଂ ପରମବନ୍ଧୁ । ସେ ତାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ ।

ଭାର୍ଗବୀ ନଦୀ କୂଳେ ଦିନେ ରାତିରେ ଦେଶ ଓ ଦଶର ସେବାରେ ସମସ୍ତ ଜୀବନ ଉତ୍ସର୍ଗ କରିବେ ବୋଲି ଗୋପବନ୍ଧୁ ଯେଉଁ ଗୁରିଜଣ ବନ୍ଧୁଙ୍କ ଗହଣରେ ଶପଥ ନେଇଥିଲେ, ତାଙ୍କ ଭିତରେ ଅନନ୍ତ ମିଶ୍ର ଥିଲେ ଅନ୍ୟତମ ।

ସିଂହଭୂମ୍‌ରେ ଓଡ଼ିଆ ପ୍ରଚାର କାର୍ଯ୍ୟଟିର ଗୁରୁଦାୟିତ୍ୱ ଅନନ୍ତ ମିଶ୍ରଙ୍କ ଉପରେ ନ୍ୟସ୍ତ କରିବାଦ୍ୱାରା ଗୋପବନ୍ଧୁଙ୍କର ଦୃଢ଼ ବିଶ୍ୱାସ ଥିଲା ସେ ନିଜେ ସେ କାର୍ଯ୍ୟଟି ଯେପରି ଆନ୍ତରିକତା ସହିତ କରନ୍ତେ, ଅନନ୍ତ ମିଶ୍ରେ ମଧ୍ୟ ସେଇପରି ପୂର୍ଣ୍ଣ ପ୍ରାଣରେ ଲାଗି ପଡ଼ିବେ ।

ଗୋପବନ୍ଧୁଙ୍କର ଏଇ ଆଶାକୁ ସଫଳାନ୍ତକରଣରେ କାର୍ଯ୍ୟକାରୀ କରିଥିଲେ ପ୍ରଚାରକ ଅନନ୍ତ ମିଶ୍ରେ ।

## ॥ ସିଂହଭୂମିରେ ଓଡ଼ିଆ ଶିକ୍ଷା ଆନ୍ଦୋଳନ ॥

ସିଂହଭୂମିବାସୀଙ୍କୁ ଓଡ଼ିଶାଆଡ଼କୁ ଆକୃଷ୍ଟ କରିବା ପାଇଁ, ଉତ୍କଳ ସମ୍ମିଳନୀର ଏକାଦଶ ଅଧିବେଶନରେ କେରା ରାଜ୍ୟର ରାଜା ଲକ୍ଷ୍ମୀ ନାରାୟଣ ସିଂହଦେଓଙ୍କୁ ସଭାପତି ଭାବେ ସମ୍ମାନ ଦିଆଗଲା । ଏହା ମୂଳରେ ଥିଲେ ଗୋପବନ୍ଧୁ । ଏ ସଭା ବସିଥିଲା ସମ୍ବଲପୁରଠାରେ, ଡିସେମ୍ବର ୧୯୧୫ରେ । ଏଥିରେ ପ୍ରସ୍ତାବ କରାଯାଇଥିଲା—ସିଂହଭୂମି, ଫୁଲଝର ଆଦି ଅଞ୍ଚଳରେ ଓଡ଼ିଆ ଶିକ୍ଷା ଓ ଅଦାଲତରେ ଓଡ଼ିଆ ଭାଷା ପ୍ରଚଳନ କରାଯାଉ ।

ରାଜା ଲକ୍ଷ୍ମୀନାରାୟଣ ସିଂହଦେଓ ଏପରି ଭାବରେ ସମ୍ମାନିତ ହେବା ଦ୍ୱାରା ସିଂହଭୂମ୍‌ର ସମସ୍ତ ଓଡ଼ିଆ ଅଧିବାସୀ ଆନନ୍ଦରେ ନାଚି ଉଠିଥିଲେ । ଗୋପବନ୍ଧୁଙ୍କ ପ୍ରତି ସିଂହଭୂମ୍‌ର ଆବାଳ ବୃଦ୍ଧବନିତା ପ୍ରତ୍ୟେକଙ୍କର ଶ୍ରଦ୍ଧା ଓ ସମ୍ମାନ ବଢ଼ି ଯାଇଥିଲା ।

ଆଗରୁ ଲେଖିଛି ୧୯୦୩ରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ସିଂହଭୂମିର ପ୍ରତିନିଧି ଭାବରେ ଖରସୂଆଁର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଯୋଗ ଦେଇଥିଲେ । ଏ ସଭାରେ ଗୋପବନ୍ଧୁ ମଧ୍ୟ ଉପସ୍ଥିତ ଥିଲେ । ଏବଂ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ସାଙ୍ଗରେ ତାଙ୍କର ସେଇଠାରେ ପରିଚୟ ଘଟିଥିଲା ।

ଅନନ୍ତ ମିଶ୍ରଙ୍କୁ ସିଂହଭୂମ୍‌ରେ ଓଡ଼ିଆ ଆନ୍ଦୋଳନ ପାଇଁ ପଠାଇ ଗୋପବନ୍ଧୁ ନିଜେ ତାଙ୍କୁ ସାଙ୍ଗରେ ଧରି ସିଂହଭୂମ୍‌ର ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ସହିତ ପରିଚୟ କରାଇ ଦେଇଥିଲେ ।

ସେମାନଙ୍କ ଭିତରେ ଖରସୂଆଁର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, କେଉଁର ଗତିକୃଷ୍ଣ ମିଶ୍ର, ବୃନ୍ଦାବନ ତ୍ରିପାଠୀ, ହରିଚରଣ ରଥ, ଦୁର୍ଗାଚରଣ କର ଚକ୍ରଧରପୁରର କାହ୍ନୁକିଶୋର ପାଣି, ସୋଣୁଆର କମଳକୃଷ୍ଣ ପ୍ରଧାନ, ପ୍ରଭୃତି ଅନ୍ୟତମ ।

୧୯୧୨ରେ ବିହାର ଓଡ଼ିଶା ପ୍ରଦେଶ ଗଢ଼ା ହେଲା ପରେ ଓଡ଼ିଆ ଭାଷାକୁ ଯେତେବେଳେ ଉଠେଇ ଦିଆଗଲା ସେତେବେଳେ କେବଳ ସେରେଇକଳା-ଖରସୂଆଁରୁ ପ୍ରତିବାଦ ସ୍ୱର ଉଠିନଥିଲା, ସିଂହଭୂମ୍‌ର ବିଶିଷ୍ଟ ବ୍ୟକ୍ତିମାନଙ୍କ ତରଫରୁ ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ—ଲେଫ୍‌ଟନେଣ୍ଟ ଗଭର୍ଣ୍ଣର ସାର ଚାର୍ଲସ ଷ୍ଟୁଆର୍ଟ ବେଲିଙ୍କ ପାଖକୁ ଏକ ଟେଲିଗ୍ରାମ୍ ପଠାଇଥିଲେ ।

୧୯୧୪ ଜାନୁଆରୀ ସାତ ତାରିଖରେ ପଠାଯାଇଥିବା ଟେଲିଗ୍ରାମ୍‌ଟି ପଛରେ ମଧ୍ୟ ଗୋପବନ୍ଧୁଙ୍କର ନିର୍ଦ୍ଦେଶଥିଲା ।

ଏହି ସମୟରେ, କେଉଁର ନିମ୍ନ ପ୍ରାଥମିକ ବିଦ୍ୟାଳୟ ଆରମ୍ଭ ପରେ ପରେ ଇଛାପୁରା, ଜଗନ୍ନାଥପୁର, ଗୋପୀନାଥପୁର, ବନଲତା, ଜଲ, ଗମଡ଼ା, ହାତିଆ, କୁଡ଼େଇକଲା, ଜାର୍କି ସମେତ ପୋଡ଼ାହାଟ ସବ୍‌ଡିଭିଜନର ୮୪ ମୌଜାର ପ୍ରତ୍ୟେକ ଗ୍ରାମରେ ପ୍ରାଥମିକ ଓଡ଼ିଆ ସ୍କୁଲ ଗୋପବନ୍ଧୁ ନିଜ ଉଦ୍ୟମରେ ପ୍ରତିଷ୍ଠା କରାଇଥିଲେ । ଏବଂ ସବୁ ସ୍କୁଲରେ ଶିକ୍ଷକତା କରିବା ପାଇଁ ପୁରୀ ଅଞ୍ଚଳର ଜାତୀୟ ପ୍ରେମୀ ଶିକ୍ଷକମାନଙ୍କୁ ଉତ୍ସାହ ଦେଇ ପଠାଉଥିଲେ । ସେମାନଙ୍କର ଭରଣ-ପୋଷଣ ଓ ସ୍କୁଲ ପରିଚାଳନା କାର୍ଯ୍ୟ ମୁଷ୍ଟି ଭିକ୍ଷା ଏବଂ "ପଇସିକିଆ ଫଣ୍ଡ" ଆଦାୟ ଦ୍ୱାରା କରାଯାଉଥିଲା ।

ଏହି 'ପଇସିକିଆ ଫଣ୍ଡ'ର ହିସାବପତ୍ର ରଖିବା ଏବଂ ଏହାର ତତ୍ତ୍ୱାବଧାନରେ ରହିବା ପାଇଁ ସେଇ ୧୯୧୪ରେ ସେ "ସିଂହଭୂମ୍ ଉତ୍କଳ ସଙ୍ଘ" ନାମରେ ଏକ ଅନୁଷ୍ଠାନ ଆରମ୍ଭ କଲେ । ଫଣ୍ଡ ସଂଗ୍ରହ ଦାୟିତ୍ୱରେ ମୁଖ୍ୟତଃ ଅନନ୍ତ ମିଶ୍ର ରହିଥିଲେ ଏବଂ ତାର କାର୍ଯ୍ୟକାରୀ କମିଟିରେ ରହିଥିଲେ, ସୁରେଶଚନ୍ଦ୍ର ଷଡ଼ଙ୍ଗୀ, ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ, କାହ୍ନୁକିଶୋର ପାଣି, ପଣ୍ଡିତ ଈଶ୍ୱରଚନ୍ଦ୍ର ହୋତା, ବ୍ରଜମୋହନ ତ୍ରିପାଠୀ ଏବଂ ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, କମଳକୃଷ୍ଣ ପ୍ରଧାନ, ଗତିକୃଷ୍ଣ ଷଡ଼ଙ୍ଗୀ, ଆନନ୍ଦପୁରର ଠାକୁର

ସାହେବ, ଉଦିତ ନାରାୟଣ ସିଂହଦେବ, ଈଶ୍ୱର ଡେଙ୍ଗୀ ପ୍ରଭୃତି ଦେଶ ପ୍ରେମୀମାନେ । ସଭାପତି ଭାବରେ ଦାୟିତ୍ୱ ନେଲେ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ । ସମ୍ପାଦକ ରହିଲେ ଓକିଲ ଶ୍ରୀ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ।

ଏହି ସବୁ ସମସ୍ୟା କଥା ଭଲ ଭାବେ ଜାଣିଥିବା ଫଳରେ, ୧୯୦୭ ରେ ସେ ଯେତେବେଳେ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାକୁ ପୌର ସଂସ୍ଥା ତରଫରୁ ଅତିରିକ୍ତ ସଭ୍ୟ ଭାବରେ ମନୋନୀତ ହୋଇଗଲେ··ସେତେବେଳେ ବ୍ୟବସ୍ଥାପକ ସଭାରେ ବିଶେଷକରି ସିଂହଭୂମ୍ ସମ୍ବନ୍ଧରେ ଜନସାଧାରଣଙ୍କ ଅସନ୍ତୋଷ କଥା ବିସ୍ତାରିତ ଭାବରେ ବୁଝାଇ କହିବା ତାଙ୍କ ପକ୍ଷରେ ସହଜ ହୋଇଥିଲା ।

ତାରାପଦ ଡେଙ୍ଗୀ ତାଙ୍କ ଅଭିଭାଷଣରେ କହିଥିଲେ "ମୁଁ ଯେତେବେଳେ ୧୯୧୭ରେ ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ର ଥିଲି ସେତେବେଳେ ନିଜକୁ ଓଡ଼ିଆ ବୋଲି କହିବାକୁ ଲଜ୍ୟାଜନକ ବୋଲି ମନେ କରୁଥିଲି । ନିଜର ଜାତୀୟତା ସମ୍ପୂର୍ଣ୍ଣ ପାଶୋରି ଦେଇ ପୂଜ୍ୟପାଦ ଦାସେ ଆପଣଙ୍କ ସାଙ୍ଗେ ତର୍କ କରୁଥିଲି—ମୁଁ କାହିଁକି ଓଡ଼ିଆ ହେବି ? ସେତେବେଳର ସିଂହଭୂମି ଓଡ଼ିଆମାନଙ୍କ ଦୁର୍ଦ୍ଦଶାର ଚିତ୍ର ବିଶେଷ୍ଟ ନକହିବା ଭଲ । ସେତେବେଳେ ସିଂହଭୂମି ଓଡ଼ିଆମାନେ ଅଧେ ନିଜକୁ ବଙ୍ଗାଳୀ, ଅଧେ ବିହାରୀ ବୋଲି ପରିଚୟ ଦେଇ ଗର୍ବ ଅନୁଭବ କରୁଥିଲେ । ମୋର ବର୍ଷେ ସତ୍ୟବାଦୀ ରହଣି ଭିତରେ ସତ୍ୟବାଦୀର ଦେବପ୍ରତିମ ଶିକ୍ଷକ ଗୋଷ୍ଠୀ, ସର୍ବୋପରି ଦାସେ ଆପଣଙ୍କ ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ଲାଭକରି ମୁଁ ନିଜକୁ ଚିହ୍ନିଲି । ମୁଁ ବୁଝିପାରିଲି—ଗଙ୍ଗା ଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ରାଜ୍ୟରେ ଶାସନ କରୁଥିବା ଜାତିର ଦାୟାଦ ମୁଁ । ମୁଁ ବୁଝିପାରିଲି କୋଣାର୍କ ଭୁବନେଶ୍ୱରରେ ପଥରରେ ସ୍ୱପ୍ନ ସୃଷ୍ଟି କରିଥିବା ଜାତିର ଉତ୍ତରାଧିକାରୀ ମୁଁ । ୧୯୧୭ ମସିହାରେ ମୁଁ ଚାଇଁବସା ଜିଲା ସ୍କୁଲକୁ ଚାଲିଆସିଲି ।

ସତ୍ୟବାଦୀ ଐତିହ୍ୟର ଉତ୍ତରାଧିକାରୀ ଶ୍ରୀଯୁକ୍ତ ରାଧାନାଥ ରଥ ସେତେବେଳେ ଚାଇଁବସାରେ ଥାଆନ୍ତି । ବର୍ତ୍ତମାନ ପାଟନା ହାଇକୋର୍ଟ ଜଜ୍

ଶ୍ରୀଯୁକ୍ତ ହରିହର ମହାପାତ୍ର ସେତେବେଳେ ମୋର ସହପାଠୀ, ଚାଇଁବସା ଜିଲ୍ଲା ସ୍କୁଲର ଛାତ୍ର ।

ଗ୍ୟାରେଟ ସାହେବ ସେତେବେଳେ ସିଂହଭୂମିର ଡେପୁଟି କମିଶନର । ବର୍ତ୍ତମାନ ସିଂହଭୂମି ଉତ୍କଳ ସଭାର ସଭାପତି ଶ୍ରୀ ପ୍ରସନ୍ନ କୁମାର ଆଚାର୍ଯ୍ୟ ନୂଆ ହୋଇ ଡେପୁଟି ମାଜିଷ୍ଟ୍ରେଟ ହୋଇ ଆସିଥାଆନ୍ତି । ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ଚାଇଁବସାର ଏକମାତ୍ର ଓଡ଼ିଆ ଓକିଲ ରହିଥାନ୍ତି । ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଖରସୂଆଁରେ ସିରସ୍ତାଦାର ଥାଇ ସେରେଇକଲାର ସ୍କୁଲ ଏବଂ କଚେରୀରେ ବଙ୍ଗଳା ଏବଂ ହିନ୍ଦି ପ୍ରଚଳନ ବନ୍ଦକରିବାରେ ଆପ୍ରାଣ ଲଢୁ-ଥାନ୍ତି । ଦାଶେ ଆପଣେ, ସର୍ବଶ୍ରୀ ସୁରେଶ ଚନ୍ଦ୍ର ଷଡଙ୍ଗୀ, ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ, କାହ୍ନୁକିଶୋର ପାଣି, ପଣ୍ଡିତ ଈଶ୍ୱର ଚନ୍ଦ୍ର ହୋତା, ବ୍ରଜମୋହନ ତ୍ରିପାଠୀ ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, କମଳକୃଷ୍ଣ ପ୍ରଧାନ, ଗତିକୃଷ୍ଣ ଷଡ଼ଙ୍ଗୀ, ଠାକୁର ସାହେବ ଆନନ୍ଦପୁର ତଥା ଈଶ୍ୱର ଷଡ଼ଙ୍ଗୀ ପ୍ରଭୃତିଙ୍କୁ ନେଇ ପ୍ରଥମ ସିଂହଭୂମ ଉତ୍କଳ ସଭା ଗଠନ କଲେ । ଏହା ଗଭର୍ଣ୍ଣମେଣ୍ଟ ରେଜିଷ୍ଟ୍ରାର୍ଡ ମଧ୍ଯ ହେଲା । ସେଇ ସମୟରେ ଦାଶେ ଆପଣଙ୍କର ଗ୍ୟାରେଟ ସାହେବଙ୍କୁ ଲେଖିଥିବା ଚିଠି ସିଂହଭୂମି ଓଡ଼ିଶା ଇତିହାସରେ ଏକ ଅବିସ୍ମରଣୀୟ ସ୍ମୃତି । ଉକ୍ତ ଚିଠି ଏବଂ ଗ୍ୟାରେଟ ସାହେବଙ୍କ ତତ୍ସମ୍ପର୍କରେ ସରକାରଙ୍କୁ ଲେଖି-ଥିବା ଚିଠି ପଢ଼ିଲେ ଓଡ଼ିଆ ଭାଷା ପ୍ରତି ସରକାରଙ୍କ ଅବହେଳା ଓ ଅଣଓଡ଼ିଆମାନଙ୍କର ଓଡ଼ିଆମାନଙ୍କ ପ୍ରତି ମନୋଭାବ ସ୍ପଷ୍ଟ ବୁଝାପଡ଼େ ।

ସେତେବେଳେ ଚାଇଁବସା ସ୍କୁଲ ହିଁ ସମଗ୍ର ଜିଲ୍ଲାରେ ଏକମାତ୍ର ହାଇସ୍କୁଲ । ପଣ୍ଡିତ ଗୋପବନ୍ଧୁଙ୍କ ଚେଷ୍ଟାର ଫଳ ସ୍ୱରୂପ ଚାଇଁବସା ଜିଲ୍ଲା ସ୍କୁଲରେ ଓଡ଼ିଆ ସେକ୍‌ସନ୍ ଖୋଲିଲା । ସିଂହଭୂମିର ଦୂର ପଲ୍ଲୀ ଅଞ୍ଚଳରେ ଗାଁ ଗଣ୍ଡାରେ ଓଡ଼ିଆ ପ୍ରାଇମେରୀ ସ୍କୁଲମାନ ଆରମ୍ଭ ହେଲା । ସତ୍ୟବାଦୀରୁ ପଣ୍ଡିତ ଗୋଦାବରୀଶ ମିଶ୍ର ଆସି ଚକ୍ରଧରପୁରରେ ହାଇସ୍କୁଲ ଏବଂ ପଣ୍ଡିତ କୃପାସିନ୍ଧୁ ମିଶ୍ର ଓ କୃଷ୍ଣଚନ୍ଦ୍ର ପଟ୍ଟନାୟକ ଆସି ବହାଡ଼ାଗୋଡ଼ାରେ ଓଡ଼ିଆ ହାଇସ୍କୁଲ ଖୋଲିଲେ । ଓଡ଼ିଆ ଭାଷା ଜାଗରଣର କୃତିତ୍ୱ ଅନେକାଂଶରେ ପ୍ରବର୍ତ୍ତକ ଅନନ୍ତ ମିଶ୍ରଙ୍କ ପ୍ରାପ୍ୟ । ତାଙ୍କ ସାଙ୍ଗକୁ ଯୋଗ ଦେଲେ ପଣ୍ଡିତ

ଈଶ୍ୱର ଚନ୍ଦ୍ର ହୋତା । ନୂଆ ଆଇନ ପାଶ୍ କରି ଆସିଥିବା ଶ୍ରୀ ସୁରେଶଚନ୍ଦ୍ର ଢେଙ୍ଗୀ ତଥା ଚକ୍ରଧରପୁରର ଗତିବାବୁ ଓ ଈଶ୍ୱରବାବୁ ।

ଆଜ ମନେ ପଡୁଛି, କେତେ କଷ୍ଟ ସ୍ୱୀକାର କରି, କେତେ ଧୈର୍ଯ୍ୟ ନେଇ ଦାଣ ଆପଣେ ଅନ୍ୟାନ୍ୟ ଅଞ୍ଚଳ ସହ ଆମବହଡାଗୋଡା ଥାନାର, ବହଡ଼ାଗୋଡା, ଖଣ୍ଡାମଉଦା, ପାଟ୍ଟୁଲଆ, ଖମାର ଏବଂ ଆଡାଂ ପ୍ରଭୃତି ଗ୍ରାମ ବୁଲିଥିଲେ । ତାଙ୍କ ପଛେ ପଛେ ବୁଲିବାର ସୌଭାଗ୍ୟ ଏ ହତଭାଗ୍ୟର ହୋଇଥିଲା । ସେତେବେଳେ ବହଡ଼ାଗୋଡ଼ା ଥାନାରେ ହିଁ ୧୭ଟି ଓଡ଼ିଆ ପ୍ରାଇମେରୀ ସ୍କୁଲ ଚାଲୁଥିଲା । ପ୍ରଥମ ଓଡିଆ ପ୍ରାଇମେରୀ ସ୍କୁଲ ପାଟ୍ଟୁଲଆରେ ଶ୍ରୀ ଈଶ୍ୱର ହୋତାଙ୍କୁ ପଣ୍ଡିତ ଏବଂ ବିଦ୍ୟାସାଗର ଉପାଧି ଦେଇ ଦାଣ ଆପଣେ ତାଙ୍କୁ ଶିକ୍ଷକ ରୂପେ ପ୍ରତିଷ୍ଠିତ କରିଥିଲେ । ଯାହା ବର୍ତ୍ତମାନ ସେଠାକାର ସ୍ଥାନୀୟ ଲୋକଙ୍କ ଉଦ୍ୟମରେ, ବିହାର ସରକାରଙ୍କ ସହାୟତାରେ ଗୋପବନ୍ଧୁ ମାଇନର ସ୍କୁଲରେ ପରିଣତ ହୋଇଛି ।

ତାରାପଦବାବୁଙ୍କ ପ୍ରଦତ୍ତ ଉପରୋକ୍ତ ଘଟଣରୁ ସ୍ପଷ୍ଟ ବୁଝା ଯିବ ୧୯୧୭ ବେଳକୁ ଗୋପବନ୍ଧୁଙ୍କ ପ୍ରେରଣାରେ ସିଂହଭୂମ୍‌ର ବିଭିନ୍ନ ଗ୍ରାମରେ ଓଡିଆ ସ୍କୁଲ ଆରମ୍ଭ ହୋଇଯାଇଥିଲା ।

୧୯୧୮, ୧୯୧୯ ଏବଂ ୧୯୨୦ ଏଇ ତିନୋଟି ବର୍ଷ ସିଂହଭୂମ୍‌ରେ ଗୋପବନ୍ଧୁଙ୍କର କାର୍ଯ୍ୟାବଳୀର ଏକ ନିରବଚ୍ଛିନ୍ନ ଧାରାବାହିକ ଇତିହାସ ।

ବିଶେଷ କରି ସିଂହଭୂମିର ଓଡଶା ଶିକ୍ଷା ସମ୍ପର୍କରେ, ଡେପୁଟୀ କମିଶନର ଗ୍ୟାରେଟ ସାହେବଙ୍କ ସହିତ ଗୋପବନ୍ଧୁଙ୍କର ଯେଉଁ ଚିଠିର ଆଦାନ ପ୍ରଦାନ, ତାହା ବିଶେଷ ଉଲ୍ଲେଖ ଯୋଗ୍ୟ ।

ଏଇ ସିଂହଭୂମ୍‌ରେ ଗୋପବନ୍ଧୁଙ୍କର ନିର୍ଭୀକତା, ମୁହେଁ ମୁହେଁ କଠୁ ସମାଲୋଚନା ଭିତରେ ଶାଣିତ ଆକ୍ଷେପ, ପୁଣି ଉଦାର କ୍ଷମାଶୀଳ ଚରିତ୍ରର ବହୁ ଦୃଷ୍ଟାନ୍ତ ମିଳେ ।

୧୯୧୯ ସାଲ କଥା । ଗୋପବନ୍ଧୁ ଏବଂ ଗୋଦାବରୀଶ ବାବୁ ଉଭୟେ ଚକ୍ରଧରପୁର ଷ୍ଟେସନରେ ଟ୍ରେନ୍‌ରୁ ଓହ୍ଲେଇଲେ । ସେଠାରେ ଜଣେ ସାହେବଙ୍କୁ ଦେଖି ଗୋପବନ୍ଧୁ ପଚାରିଲେ 'ଆପଣ ବୋଧହୁଏ ମି: ସ୍କଟ ?'

ଏଇ ସ୍କଟ ସାହେବ, କେତେ ମାସ ପାଇଁ ଓଡ଼ିଶା ଗଡ଼ଜାତର ପଲିଟିକାଲ ଏଜେଣ୍ଟ ଥିଲେ । ସେତେବେଳେ ତାଙ୍କର ଦମନ ମୂଳକ କାର୍ଯ୍ୟ ଯୋଗୁଁ ସେ ସମସ୍ତଙ୍କ ଦ୍ୱାରା ଘୃଣିତ ହୋଇଥିଲେ । ଜଣେ ଭାରତୀୟଙ୍କଠାରୁ ଏପରି ସିଧାସଳଖ ପ୍ରଶ୍ନ ଶୁଣି ସ୍କଟ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । କିନ୍ତୁ ପରମୁହୂର୍ତ୍ତରେ ଖୁବ୍ ନମ୍ରତା ସହ କହିଥିଲେ—ହଁ ଗୋପବନ୍ଧୁ ବାବୁ ମୁଁ ସ୍କଟ, ଆପଣଙ୍କୁ ଏଠି ଦେଖି ମୁଁ ଅତ୍ୟନ୍ତ ଖୁସି । ଆପଣଙ୍କ ପାଇଁ କ'ଣ ମୁଁ କରିବି କୁହନ୍ତୁ ? "ଆପଣଙ୍କର ଯଦି କିଛି ଆଦେଶ ଦେବାର ଅଛି ଦୟା କରି ମତେ ଦିଅନ୍ତୁ । ମୁଁ ତାହା ଅବଶ୍ୟ ପାଳନ କରିବି । "

ଗୋପବନ୍ଧୁ ଅବାକ୍ ହୋଇ ଯାଇଥିଲେ, ସ୍କଟ ସାହେବଙ୍କର ନରମଗଳାର ଆବାଜ ଶୁଣି । ପଚାରିଥିଲେ—ଆଜ୍ଞା, ମି: ସ୍କଟ ଆମେ ତ ଆଗରୁ କେବେ ପରସ୍ପରକୁ ଜାଣି ନ ଥାଇଁ । ଆପଣ ମତେ ଚିହ୍ନିଲେ କିପରି ?

ସ୍କଟ ସାହେବ ଏକ ଆଶ୍ଚର୍ଯ୍ୟ ଉତ୍ତର ଦେଇଥିଲେ । କହିଥିଲେ—ଗୋପବନ୍ଧୁ ବାବୁ ଆପଣ କିପରି କହୁଛନ୍ତି ମୁଁ ଆପଣଙ୍କୁ ଆଗରୁ ଜାଣି ନାଇଁ ? ଆପଣ ମତେ ଦେଖି ନ ଥାଇ ପାରନ୍ତି, କିନ୍ତୁ ମୁଁ ଆପଣଙ୍କୁ ତିନି ତିନି ଥର ଦେଖିଛି । ଥରେ ବ୍ୟବସ୍ଥାପକ ସଭାର ଦର୍ଶକ ଗ୍ୟାଲେରୀରେ ବସି ଆପଣଙ୍କ ବକ୍ତୃତା ଶୁଣିଛି । ସେଥିରେ ଏତେ ମୁଗ୍ଧ ହୋଇ ଯାଇଥିଲି ମୁଁ—ଆହୁରି ଦୁଇ ଥର ଯାଇଛି ବ୍ୟବସ୍ଥାପକ ସଭାକୁ ଆପଣଙ୍କୁ ଶୁଣିବା ପାଇଁ । ସୂର୍ଯ୍ୟ ହୁଏତ ପୃଥିବୀର କୌଣସି ଲୋକକୁ ଜାଣି ନ ଥାଇ ପାରନ୍ତି କିନ୍ତୁ ସୂର୍ଯ୍ୟଙ୍କୁ ନ ଚିହ୍ନେ କିଏ ?

ସେଇପରି ଗ୍ୟାରେଟ ସାହେବଙ୍କୁ ଗୋପବନ୍ଧୁଙ୍କର ନାନା ଅଭିଯୋଗ ପୂର୍ଣ୍ଣ ଦୀର୍ଘ ଚିଠିର ଆଦାନ ପ୍ରଦାନ କଥା କୁହାଯାଇପାରେ ।

୧୯୧୩ ଠାରୁ ୧୯୧୯ ପର୍ଯ୍ୟନ୍ତ ସିଂହଭୂମିର ବିଭିନ୍ନ ଜାଗାରେ ପ୍ରାୟ ଏକ ଶହ କୋଡ଼ିଏଟି ଓଡ଼ିଆ ସ୍କୁଲ ଆରମ୍ଭ କରାଯାଇଥିଲେ ମଧ୍ଯ ସରକାରୀ ସ୍କୁଲ, କଚେରୀ ଓ କାର୍ଯ୍ୟାଳୟମାନଙ୍କରେ ହିନ୍ଦି ଭାଷାର ପ୍ରଚଳନ ଅଧିକରୁ ଅଧିକ ବଢ଼ି ଚାଲିଥାଏ ।

ମାତୃଭାଷା ଓଡ଼ିଆରେ ପିଲମାନଙ୍କୁ ଶିକ୍ଷା ଦିଆ ଯିବା ପାଇଁ ଜାଣିଲା ଶୁଣିଲା ଲୋକେ ଆପତ୍ତି କରି ଡେପୁଟି କମିଶନରଙ୍କୁ ଦରଖାସ୍ତ ଦେଉ

ଥାଆନ୍ତି । ଘଟଣା କ୍ରମେ ତିନୋଟି ଦରଖାସ୍ତ ଗ୍ୟାରେଣ୍ଟ ସାହେବ ପାଇଲା ପରେ, ଟିକିଏ ବିଚଳିତ ହୋଇ ପଣ୍ଡିତ ଗୋପବନ୍ଧୁଙ୍କ ପାଖକୁ ସେଗୁଡ଼ିକ ପଠାଇ ଦେଇ ସେ ବିଷୟରେ ତାଙ୍କର ଗୋପବନ୍ଧୁଙ୍କ ମତାମତ ଲୋଡ଼ିଲେ । କାରଣ ଗୋପବନ୍ଧୁ ଥିଲେ ବିହାର ଓଡ଼ିଶା କାଉନ୍‌ସିଲର ସଦସ୍ୟ ।

ଏ ଦରଖାସ୍ତ ଗୁଡ଼ିକ ପାଇବା ମାତ୍ରେ ପନ୍ଦର ପୃଷ୍ଠା ବ୍ୟାପି ଏକ ଲମ୍ବା ଚିଠି ମି: ଗ୍ୟାରେଣ୍ଟଙ୍କ ପାଖକୁ ଲେଖିଲେ ଗୋପବନ୍ଧୁ ।

ସେ ଲେଖିଥିଲେ "ଚକ୍ରଧରପୁରଠାରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରିବା ପାଇଁ ମୁଁ ତିନି ସପ୍ତାହ ଧରି ସିଂହଭୂମ୍ ଜିଲ୍ଲାରେ ବୁଲୁଛି । ଏ ଜିଲ୍ଲାର ଓଡ଼ିଆ ସମସ୍ୟାରେ ମୋର ଯଥେଷ୍ଟ ଆଗ୍ରହ ରହିଛି । ପ୍ରାୟ ତିନି ବର୍ଷ ପୂର୍ବେ ଓଡ଼ିଆ ଶିକ୍ଷା ଲାଗି ସ୍ଥାନୀୟ ଅଧିବାସୀମାନଙ୍କର କି ପ୍ରକାର ଆଗ୍ରହ ଅଛି, ଜାଣିବା ପାଇଁ ପୋଡ଼ାହାଟ ପ୍ରଗଣାର କେତେକ ଅଞ୍ଚଳରେ ଗସ୍ତ କରୁଥିଲି । ସେ ସମୟରୁ ମୋର ପ୍ରତ୍ୟକ୍ଷ ବ୍ୟକ୍ତିଗତ ଅନୁସନ୍ଧାନ ଫଳରେ ଏବଂ ବିଶ୍ୱାସ ଯୋଗ୍ୟ ଲୋକଙ୍କ ଲେଖା ଓ ଚିଠି ପତ୍ରରୁ ମୁଁ ଯେଉଁ ସବୁ ସମ୍ବାଦ ଓ ତଥ୍ୟ ପାଇଛି, ସେଥିରେ ମୋର ବିଶ୍ୱାସ ଦୃଢ଼ୀଭୂତ ହୋଇଛି ଯେ ସିଂହଭୂମ୍ ଗୋଟିଏ ଓଡ଼ିଆ ଜିଲ୍ଲା । ଅବଶ୍ୟ ଯେଉଁ ସବୁ ଆର୍ଯ୍ୟ ଭାଷା ଏ ଜିଲ୍ଲାରେ ପ୍ରଚଳିତ, ସେ ସବୁ ତୁଳନାରେ ଏବଂ ଜିଲ୍ଲାର ଭୌଗଳିକ ପରିସ୍ଥିତି, ସାମାଜିକ ଓ ଐତିହାସିକ ସମ୍ପର୍କର ଘଟଣାବଳୀ ଦୃଷ୍ଟିରୁ ମୁଁ ଏହାକୁ ଏକ ଖାଣ୍ଟି ଓଡ଼ିଆ ଜିଲ୍ଲା ବୋଲି କହୁଛି, କିନ୍ତୁ ଇଂରେଜମାନେ ସିଂହଭୂମ୍ ଜିଲ୍ଲାକୁ ଦଖଲ କଲା ପରଠାରୁ ପ୍ରାୟ ଏକ ଶତାବ୍ଦୀ ଧରି ଏଠାର ଓଡ଼ିଆମାନଙ୍କ ଅସ୍ତିତ୍ୱକୁ ଏକାବେଳକେ ଉପେକ୍ଷା କରାଯାଇଛି । ସେମାନଙ୍କ ଭାଷାକୁ କୋର୍ଟ କଚେରି ଓ ସ୍କୁଲମାନଙ୍କରୁ ଏକାବେଳକେ ନିର୍ବାସିତ କରିଦିଆ ଯାଇଛି । ଏପରିକି ମୁଁ ଜାଣେ, ଅନେକ ଜିଲ୍ଲା ଅଫିସର, ଏଠାରେ ତାଙ୍କର ସାଧାରଣ କାର୍ଯ୍ୟକାଳର ଶେଷ ଭାଗରେ ସୁଦ୍ଧା ଏ ଜିଲ୍ଲାର ଅଧିବାସୀଙ୍କ ଭିତରେ ଓଡ଼ିଆ ଲୋକ ମଧ୍ୟ ଅଛନ୍ତି ଶୁଣି ବିସ୍ମୟ ପ୍ରକାଶ କରିଛନ୍ତି । ଏଭଳି ଏକାନ୍ତ ଅବହେଳା ଓ ଅଜ୍ଞତା ସତ୍ତ୍ୱେ, ସିଂହଭୂମ୍ ଜିଲ୍ଲାରେ ଓଡ଼ିଆର ଏବେ ମଧ୍ୟ ସ୍ଥାନ ରହିଛି ଏବଂ ସଂଖ୍ୟାଧିକ୍ୟ ଯୋଗୁ ସେମାନଙ୍କର ପ୍ରାଧାନ୍ୟ ରହିଛି ।

ବିହାର ଓଡ଼ିଶାର ଲାଟ ମାନ୍ୟବର ଏଡୱାର୍ଡ ଗେଟ୍‌ଙ୍କ ସହିତ ମୋର ଯେତେ ଥର ସାକ୍ଷାତ ହୋଇଛି, ମୁଁ ତାଙ୍କ ମନରେ ଏ ବାସ୍ତବ ତଥ୍ୟ ବିଷୟରେ ଧାରଣା ଜନ୍ମାଇବା ପାଇଁ ବହୁବାର ଚେଷ୍ଟା କରିଛି ।

ଗତ ନଭେମ୍ବର ମାସ ବ୍ୟବସ୍ଥା ସଭା ବୈଠକରେ ମୁଁ ସିଂହଭୂମ୍‌ରେ ଓଡ଼ିଆ ଶିକ୍ଷା ଓ କୋର୍ଟ କଚେରିରେ ଓଡ଼ିଆ ଭାଷାକୁ ଅସ୍ୱୀକାର କରାଯାଇଥିବା ବିଷୟରେ କେତେଗୁଡ଼ିଏ ପ୍ରଶ୍ନ ପଚାରିଥିଲି । ତାହାର ଉତ୍ତରରେ ସରକାର ଯୁକ୍ତିକଲେ ଯେ, "ଏ ବିଷୟରେ ସ୍ଥାନୀୟ ଓଡ଼ିଆ-ମାନଙ୍କ ଭିତରେ କୌଣସି ଦୃଢ଼ ମନୋଭାବଥିବା ସରକାର ଜାଣନ୍ତି ନାହିଁ ।"

ସିଂହଭୂମ୍ ଓଡ଼ିଆମାନେ ସରକାରଙ୍କୁ ତାଙ୍କ ମନୋଭାବ ଜଣାଇବା ପାଇଁ ସରକାର ଯେ କିପରି ଆଶା କରନ୍ତି, ମୁଁ ବୁଝି ପାରୁନାହିଁ । ତାଙ୍କ ଜିଭ ତ କାଟି ଦିଆଯାଇଛି, ଏବଂ ଗୋଟିଏ ପୁରାଣ ପ୍ରସିଦ୍ଧ ଜାତି ଯାହାର କି ଗୋଟିଏ ଭାଷା, ସାହିତ୍ୟ ଓ ନିଜର ଇତିହାସ ଅଛି, ତାକୁ ଆଦିମ ଅଧିବାସୀଙ୍କ ଭଳି ବ୍ୟବହାର କରାଯାଇଛି ।

ଏଠାରେ 'ହୋ' ଅଧିବାସୀଙ୍କର କେବଳ ଗୋଟିଏ ନିତାନ୍ତ ଦରଖଣ୍ଡିଆ କଥିତ 'ବୋଲି' ଭାଷା ଅଛି । ଏହାର ସାହିତ୍ୟ ନାହିଁ, ଲିପି ମଧ୍ୟ ନାହିଁ । ଯାହାକି ଓଡ଼ିଆର ଅଛି । ଏପରି ଅବସ୍ଥାରେ 'ହୋ' ଜାତିର ପିଲାକୁ ହିନ୍ଦିରେ ଶିକ୍ଷା ଦେବା ସେତେଦୂର କଠିଣ ନ ହୋଇ ପାରେ, କିନ୍ତୁ ଓଡ଼ିଆ ପିଲାକୁ ବାଧତା ସହକାରେ ହିନ୍ଦି ଶିକ୍ଷା ଦେବା ତା ପକ୍ଷରେ ନିଶ୍ଚୟ କଷ୍ଟକର ବ୍ୟାପାର ହେବ ।

ପ୍ରଥମ ଘଟଣାରେ ଶିକ୍ଷା ବ୍ୟବସ୍ଥାରେ ମାତ୍ର ଗୋଟିଏ ପ୍ରକାର ମାନସିକ କ୍ରିୟା କାର୍ଯ୍ୟ କରେ, ଅର୍ଥାତ୍ ସେ କେବଳ ଗୋଟିଏ ଭାଷାକୁ ଶିକ୍ଷା କରେ । କିନ୍ତୁ ପରବର୍ତ୍ତୀ ଘଟଣାରେ ଦୋହରା ପ୍ରକ୍ରିୟା କାର୍ଯ୍ୟ କରେ ।

ଗୋଟିଏ ଜାତିର ଦୃଢ଼ୀଭୂତ, ସୁବିକଶିତ, ଭାଷା ଓ ବ୍ୟକ୍ତିତ୍ୱକୁ ଏକ ପକ୍ଷରେ ମାରିଦେବା ଓ ଅନ୍ୟ ପକ୍ଷରେ ଗୋଟିଏ ନୂଆ ଅପର ଭାଷାକୁ ଆପଣାର କରି ଆୟତ୍ତ କରିବା ପାଇଁ ଶ୍ରମ କରିବା ।

ଏଇଭଳି ଅବସ୍ଥାରେ ସିଂହଭୂମ୍ ଜିଲ୍ଲାରେ ଯେ ଓଡ଼ିଆମାନଙ୍କର ଏ ପର୍ଯ୍ୟନ୍ତ ଅସ୍ତିତ୍ୱ ରହିଛି, ଏହା ଏକାବେଳକେ ବିସ୍ମୟକର । ଏବଂ ଏହାହିଁ ଗୋଟିଏ ଜାତିର ଜାତୀୟ ଜୀବନର ପରିଚୟକ ।

କହିବାକୁ ଗଲେ ଏଠାରେ ଓଡ଼ିଆମାନେ ଅନ୍ଧକାରାଚ୍ଛନ୍ନ, ଲୋକ-ଲୋଚନ ଅଗୋଚରରେ ଥିବା ବଣଜଙ୍ଗଲ ମଧ୍ୟରେ ଏକପ୍ରକାର ଆର୍ତ୍ତନାଦ କରି କୌଣସି ମତେ ସଂଗ୍ରାମ ଚଳାଇ ତିଷ୍ଠି ରହିଛନ୍ତି । ସେମାନଙ୍କ ଭିତରେ ତାଙ୍କ ଦୁରବସ୍ଥା ଓ ମନର ଦୁଃଖ ସରକାରଙ୍କୁ ଜଣାଇବାଭଳି ଲୋକ ମଧ୍ୟ ବାହାରୁ ନାହାନ୍ତି । ଏହା ସେମାନଙ୍କର ଦୋଷ ନୁହେଁ, ସରକାରଙ୍କ ଉଚିତ ହେଉଛି ନିଜଆଡ଼ୁ ସେମାନଙ୍କ ଅବସ୍ଥା ଅନୁଧ୍ୟାନ କରିବା ।

ଏ ଜିଲ୍ଲାରେ ମୋର ବର୍ତ୍ତମାନ ରହଣୀ ଭିତରେ ମୁଁ ଏଠା ଓଡ଼ିଆ-ମାନଙ୍କ ଇଚ୍ଛା ଓ ପ୍ରାଣର ବେଦନା ପୂର୍ବାପେକ୍ଷା ଅଧିକ ଜାଣିବା ପାଇଁ ଚେଷ୍ଟା କରିଛି । ଆପଣ ଓଡ଼ିଶାରେ ନିଜ କାର୍ଯ୍ୟ କାଳର ଦଶବର୍ଷ କଟାଇଛନ୍ତି ଏବଂ ଓଡ଼ିଆମାନଙ୍କ ବିଷୟରେ ଅନେକ କଥା ଜାଣନ୍ତି । ମୋର ଆଶା ଆପଣଙ୍କର ଏ ପୂର୍ବ ଅନୁଭୂତି ଏ ଜିଲ୍ଲାରେ ଓଡ଼ିଆମାନଙ୍କ ଦୁଃଖ କଷ୍ଟ ଉପଲବ୍ଧି କରିବାରେ ଆପଣଙ୍କୁ ସାହାଯ୍ୟ କରୁଥିବ ।

ମୁଁ ସେଇ ଆଶାରେ ସିଂହଭୂମ୍ ଓଡ଼ିଆ ସମସ୍ୟା ବିଷୟରେ ଆପଣଙ୍କୁ ଚିଠି ଲେଖିବାକୁ ବସିଛି।ଥିବାବେଳେ ଆପଣ ମୋ ଠାରୁ ମତ-ପ୍ରକାଶ କରିବା ପାଇଁ ପଠାଇଥିବା ତିନିଖଣ୍ଡି ଦରଖାସ୍ତ ମୁଁ ପାଇଲି ।

ସେ ଦରଖାସ୍ତଗୁଡ଼ିକ ସୋନୁଆ, ମନ୍ଦୁଲଡିହା, କେରା, ଚକ୍ରଧରପୁର, ଏବଂ ପୋଡ଼ାହାଟର ଅନ୍ୟାନ୍ୟ କେତେକ ଗାଁର ଓଡ଼ିଆ ଅଧିବାସୀଙ୍କଠାରୁ ଆସିଛି ।

ସେଥିରେ ପ୍ରାର୍ଥନା କରାଯାଇଛି କି ତାଙ୍କ ସ୍କୁଲମାନଙ୍କରେ ହିନ୍ଦୀ ପରିବର୍ତ୍ତେ ଓଡ଼ିଆ ପଢ଼ିବା ପାଇଁ ବ୍ୟବସ୍ଥା କରାହେଉ । ମୋର ବିଶ୍ୱାସ, ମୁଁ ସିଂହଭୂମ୍ ଓଡ଼ିଆମାନଙ୍କ ଶିକ୍ଷା ବିଷୟରେ ଠିକେ ଆଗ୍ରହୀ ଥିବାରୁ ଆପଣ ଏ ବିଷୟରେ ମୋର ମତ ପଚାରିଛନ୍ତି ।

ଗୋପବନ୍ଧୁ ତାଙ୍କ ପତ୍ରରେ ପୁଣି ଲେଖିଥିଲେ "ଏ ଜିଲ୍ଲାରେ ହୋ ଏବଂ ଓଡ଼ିଆମାନେହିଁ ମୁଖ୍ୟ ଅଧିବାସୀ । ଅଳ୍ପ କେତେ ଜଣ ବଙ୍ଗଳା ଓ ହିନ୍ଦୀଭାଷୀ ଲୋକ ଏବେ କିଛି ଅଳ୍ପକାଳ ହେଲା ଏ ଜିଲ୍ଲାକୁ ଆସିଛନ୍ତି । ଯେହେତୁ ସରକାରୀ କାର୍ଯ୍ୟରେ ଅଛନ୍ତି ଏବଂ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଓ ପ୍ରଭାବ ପକାଇ ପାରିବାଭଳି ସ୍ଥାନରେ ସେମାନଙ୍କର ପ୍ରବେଶ ରହିଛି,

ତେଣୁ ଯେଉଁ ଓଡ଼ିଆ ଭାଷା ଏ ଜିଲ୍ଲାର ଏକମାତ୍ର ଅର୍ଥଂଭାଷା ଥିଲା ଏବଂ ଯେଉଁ ଭାଷାର ତାଳପତ୍ର ପୋଥି ଓ ଖେଦା, ବହୁବିଶିଷ୍ଟ ଲୋକଙ୍କ ଘରେ ଏପରିକି ହୋ ପରିବାରରେ ଏବେବି ଦେଖାଯାଏ, ସେ ଓଡ଼ିଆ ଭାଷାକୁ ସ୍କୁଲ ଏବଂ କଚେରୀରୁ ଉଠାଇଦେଇ ଧଳ ଭୂମିରେ ବଙ୍ଗଳା ଏବଂ ପୋଡ଼ା ହାଟ ଓ କୋହ୍ଲାଣରେ ହିନ୍ଦୀ ଭାଷାର ପ୍ରଚଳନ ଏମାନେ କରାଇଛନ୍ତି ।

ଏହାର ପରିଣତିରେ ଓଡ଼ିଆ ଓ କେତେକାଂଶରେ ଆଦିବାସୀଙ୍କର ସର୍ବନାଶ ଘଟିଛି ।

ପ୍ରଥମତଃ ଓଡ଼ିଆ ପିଲାଙ୍କୁ ପ୍ରାଥମିକ ସ୍କୁଲରେ ହିନ୍ଦୀ ଅବା ବଙ୍ଗଳାରେ ପଢ଼ିବାକୁ ହେଉଛି । ଅଥଚ ଏଇ ଦୁଇଭାଷା ଭିତରୁ କୌଣସି ଗୋଟିଏ ସୁଦ୍ଧା ସେମାନଙ୍କ ଘରେ ଚଳେ ନାହିଁ । ପଢାଇଲା ବେଳେ ତାଙ୍କୁ ଓଡ଼ିଆରେ ବୁଝାଇବାକୁ ପଡୁଛି । ତା ନ ହେଲେ ସେମାନେ ପାଠ ବୁଝି ପାରୁ ନାହାନ୍ତି ।

ଏହିପରି ଅସ୍ୱାଭାବିକ ବ୍ୟବସ୍ଥା ଦ୍ୱାରା ସେମାନଙ୍କ ପାଠପଢ଼ାରେ ଘୋର ବାଧା ଉପୁଜୁଛି । ଦ୍ୱିତୀୟରେ ପୋଡ଼ାହାଟର ଅନେକ ଅଞ୍ଚଳରେ ପୋଲିସ ସବ୍‌ଇନ୍‌ସପେକ୍ଟର ପ୍ରଭୃତି ଯାହା କହୁଛନ୍ତି, ଓଡ଼ିଆଙ୍କ ପକ୍ଷ ଓ ସାକ୍ଷୀମାନେ ଅନେକ ସମୟରେ ତାହା ବୁଝିପାରୁ ନାହାନ୍ତି । ତୃତୀୟରେ ପୋଡ଼ାହାଟ ଓ କୋହ୍ଲାଣରେ ଆଦିବାସୀ ପିଲାମାନେ ଏକା ଗାଆଁରେ ଓଡ଼ିଆ ଲୋକଙ୍କ ସହିତ ମିଶି ଚଳୁଥିବାରୁ ଓଡ଼ିଆ ବୁଝୁଛନ୍ତି ଓ କହୁଛନ୍ତି ମଧ୍ୟ । ତେଣୁ ହିନ୍ଦୀ ବା ବଙ୍ଗଳାପରେ ଗୋଟିଏ ନୂଆ ଭାଷା ସେମାନଙ୍କୁ ଶିକ୍ଷା କରିବା ପାଇଁ ବାଧ୍ୟ କରାଯିବାରେ ସେମାନେ ଯେଉଁ ଅସୁବିଧାରେ ପଡ଼ିଛନ୍ତି, ତାହା ବେଶ୍ ଅନୁମେୟ ।

ହିନ୍ଦୀଭାଷୀଙ୍କ ସଂଖ୍ୟା ଏତେ କମ୍ ଥିବା ସ୍ଥଳେ କୋର୍ଟ କଚେରୀରେ ହିନ୍ଦୀ ଭାଷାର ପ୍ରଚଳନ ଫଳରେ ଓଡ଼ିଆ ଭାଷା ପ୍ରତି ସଜ୍ଞାନ ସଚେତନ ଭାବରେ ଅବହେଳା କରାଯାଉଥିଲା ।

ଗୋପବନ୍ଧୁଙ୍କ ଚିଠି ଲେଖା ଫଳରେ ଜିଲ୍ଲା ସ୍କୁଲର ଚେୟାରମ୍ୟାନ୍ ମିଷ୍ଟର ଗ୍ୟାରେଟ୍ ଓଡ଼ିଆ ଓ ଉର୍ଦ୍ଦୁ ଭାଷାର ପ୍ରଚଳନ ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ଅନ୍ୟ ଏକ ପତ୍ରରେ ପୋଡ଼ାହାଟ ଓ ଧଳଭୂମ୍ ଅଞ୍ଚଳରେ ଓଡ଼ିଆ ପିଲାଙ୍କ ନିମନ୍ତେ ଓଡ଼ିଆ ଭାଷାରେ ଶିକ୍ଷା ବ୍ୟବସ୍ଥା ପାଇଁ ବହୁ ଯୁକ୍ତି ସମ୍ବଳିତ ତଥ୍ୟ ଦେଇ ଗ୍ୟାରେଟ୍‌ଙ୍କୁ ଲେଖିଥିଲେ ଗୋପବନ୍ଧୁ—ସିଂହଭୂମ୍‌ର ଓଡ଼ିଆ-ମାନେ ବର୍ତ୍ତମାନ ମୃତ୍ୟୁମୁଖର ସମ୍ମୁଖୀନ । ଆପଣ ବର୍ତ୍ତମାନ କାର୍ଯ୍ୟରୁ ଅବସର ନେବା ଉପରେ । ମୃତ୍ୟୁମୁଖରେ ପଡ଼ିଥିବା ଓଡ଼ିଆ ମାନଙ୍କ ପ୍ରତି ଆପଣଙ୍କ ଶେଷ କାର୍ଯ୍ୟରୂପେ ଆପଣ ଏତିକି ଅନ୍ତତଃ କରନ୍ତୁ, ଯାହା ଫଳରେ ପ୍ରକୃତ ଘଟଣା, ସରକାରଙ୍କ ପାଖରେ ଉପସ୍ଥାପିତ ହୋଇ ପାରିବ । ତାହାହେଲେ ଓଡ଼ିଆମାନଙ୍କ ଦୀର୍ଘକାଳ ପୋଷିତ, ଏ ଦୁଃଖ ଆପତ୍ତିର ପ୍ରତିକାର ହେବ, ସେମାନେ ଯେଉଁ ଦୁଃଖ ନିର୍ଯ୍ୟାତନା ଭିତରେ ଭିଡ଼ି ଓଟାରି ହୋଇ ଚାଲିଛନ୍ତି, ତାହା ତାଙ୍କର ଜୀବନୀ ଶକ୍ତିକୁ ଏକବାର ଶୋଷି ଦେଲଣି ଏବଂ ଗୋଟିଏ ସ୍ୱତନ୍ତ୍ର ଜାତି ହିସାବରେ ସେମାନଙ୍କ ଅସ୍ତିତ୍ୱକୁ ମଧ୍ୟ ବିପନ୍ନ କଲଣି ।

ଏହି ଚିଠିଟି ଗ୍ୟାରେଟ୍ ସାହେବଙ୍କୁ ଲେଖି କେବଳ ନ୍ୟାୟ ପାଇବା ଆଶାରେ ନିଶ୍ଚେଷ୍ଟ ହୋଇ ବସି ରହିଲେ ନାହିଁ, ଏଥିପ୍ରତି ତାଙ୍କର ମଧ୍ୟ ଗୁରୁଦାୟିତ୍ୱ ଅଛି ଭାବି, ସେଇ ୧୯୧୯ରେ ସେ ତାଙ୍କର ସହକର୍ମୀ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ସାଙ୍ଗରେ ନେଇ ପ୍ରଥମେ ଚକ୍ରଧର ପୁର ଆସିଲେ । ଉଦ୍ଦେଶ୍ୟ, ସତ୍ୟବାଦୀ ବନବିଦ୍ୟାଳୟ ଢାଞ୍ଚାରେ ସିଂହ-ଭୂମ୍‌ରେ ଏବଂ ଧଳଭୂମ୍‌ରେ ଦୁଇଟି ଜାତୀୟ ସ୍କୁଲ୍ ଆରମ୍ଭ କରିବେ । ଏ ଦୁଇଟି ମଧ୍ୟ ହେବ ମଣିଷ ଗଢ଼ା କାରଖାନା । ଏବଂ ଏଇ କାରଖାନାରେ ଏପରି ଦେଶ-ପ୍ରାଣ ଯୁବକ ତାଲିମ ପାଇ ବାହାରିବେ, ଯେଉଁମାନେ ଯାଗ ସିଂହଭୂମିରେ ଓଡ଼ିଆ ଜାତୀୟବାଦୀ ଆନ୍ଦୋଳନରେ ଝାମ୍ପ ଦେଇ; କେବଳ ସିଂହଭୂମ୍ ନୁହେଁ, ସମସ୍ତ ବିଚ୍ଛିନ୍ନାଞ୍ଚଳ ସମେତ, ଓଡ଼ିଶାର ଗୁରୁଆଡ଼େ ଗଠନମୂଳକ କାର୍ଯ୍ୟ ଭିତରେ ଦେଶ ଓ ଜାତିର ବିକାଶରେ ଆଣିବେ ଏକ ନୂତନ ଦିଗନ୍ତ ।

ମାତୃଭାଷାର ଶିକ୍ଷା ଏବଂ ଜନ୍ମଭୂମିର ସଂସ୍କୃତିର ପ୍ରଭାବ ଭିତରେ ପ୍ରତ୍ୟେକ ଜାତି ତାର ଜାତୀୟ ସ୍ଥିତି ଓ ଗୌରବକୁ ଅକ୍ଷୁର୍ଣ୍ଣ ରଖିବାରେ ସମର୍ଥ ହୁଏ । ସେଇଥିପାଇଁ ଓଡ଼ିଶାର ଗୁରୁଆଡ଼େ, ପୁରୀଜିଲାଠୁ ନେଇ

ବଚ୍ଛିନ୍ନାଞ୍ଚଳ ସିଂହଭୂମର ପୋଡାହାଟ ପର୍ଯ୍ୟନ୍ତ ଗୋପବନ୍ଧୁ ଓଡ଼ିଆ ଶିକ୍ଷା ଆନ୍ଦୋଳନର ଏକ ଧାରାବାହିକ ପ୍ରବୃତ୍ତର କାର୍ଯ୍ୟ ଆରମ୍ଭ କରିଥିଲେ ।

ଉତ୍କଳ ସମ୍ମେଳନୀର ଚତୁର୍ଦ୍ଦଶ ଅଧିବେଶନ ବସିଥିଲା କଟକରେ ୧୯ ଅପ୍ରିଲ ୧୯୧୯ରେ । ସେଥିରେ ସଭାପତିତ୍ୱ କରିଥିଲେ ଗୋପବନ୍ଧୁ । ସେଇ ସଭାରେ ତାଙ୍କ ଅଭିଭାଷଣର ଜାତୀୟ ଶିକ୍ଷା, ସାହିତ୍ୟ ଓ ସଂସ୍କୃତିର ସେ ଯେଉଁ ବିଶ୍ଳେଷଣ କରିଥିଲେ, ତାହା ଖୁବ୍ ପ୍ରଣିଧାନ ଯୋଗ୍ୟ ।

ନିଜର ସ୍ୱଭାବ ସୁଲଭ ହୃଦ୍ୟ ଭାଷାରେ ଗୋପବନ୍ଧୁ କହିଥିଲେ— ମନେ ରଖିବାକୁ ହେବ, ଓଡ଼ିଆ ଭାଷା ଉପରେ ଆମ୍ଭମାନଙ୍କର ଜାତୀୟ-ସତ୍ତା ନିର୍ଭର କରେ । ଭାଷା ଲୋପ ପାଇଲେ ଓଡ଼ିଆ ଜାତି ଲୋପ ପାଇବ । ସୁତରାଂ ଭାଷା ଆମମାନଙ୍କ ପକ୍ଷେ ଜୀବନ ମରଣ ସମସ୍ୟା । ଅବଶ୍ୟ ଭାରତରେ ସମସ୍ତଙ୍କର ଏକ ସାଧାରଣ ଭାଷା ହୋଇ ପାରିଲେ ପରମ ସୌଭାଗ୍ୟର ବିଷୟ ହୁଅନ୍ତା । ସେଥିଲାଗି ଓଡ଼ିଆ ଭାଷାକୁ ତ୍ୟାଗ କରିବା ନିମନ୍ତେ ମୁଁ କୁଣ୍ଠିତ ନୁହେ । ଭାରତରେ ଏକ ଭାଷା ନିମନ୍ତେ ଯେ କୌଣସି ସ୍ୱାର୍ଥ ତ୍ୟାଗ ବ୍ୟକ୍ତି ବିଶେଷ ବା ପ୍ରଦେଶ ବିଶେଷ ପକ୍ଷେ କଦାପି ଅତ୍ୟଧିକ ହୋଇ ନ ପାରେ । ଭାରତର ସମୂହ କଲ୍ୟାଣରେ ପ୍ରାଦେଶିକ ସ୍ୱାର୍ଥକୁ ବଳି ଦେବା ସମସ୍ତଙ୍କର କର୍ତ୍ତବ୍ୟ ହେବା ଉଚିତ । ମାତ୍ର ଯେତେଦିନ ଯାଏ ଭାରତରେ ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ବିଦ୍ୟମାନ ରହିଛି, ସେତେଦିନଯାଏ ଓଡ଼ିଆ ଅକାରଣ ତାହାର ସ୍ୱାତନ୍ତ୍ର୍ୟ ହରାଇବାକୁ ପ୍ରସ୍ତୁତ ନୁହେଁ ।

ବର୍ତ୍ତମାନ ମୁଁ ଦେଖୁଛି, କେବଳ ସିଂହଭୂମି ଲାଗି ନୁହେ ଓଡ଼ିଶାର ବାହାରେ ଯେ ସମସ୍ତ ଓଡ଼ିଆ ଅଞ୍ଚଳରେ ଓଡ଼ିଆମାନେ ନିଜର ମାତୃଭାଷା ବ୍ୟବହାରରୁ ବଞ୍ଚିତ ହୋଇଛନ୍ତି ସେ ସମସ୍ତ ଅଞ୍ଚଳରେ ଓଡ଼ିଆ ଭାଷାର ଶିକ୍ଷା ଏବଂ ବ୍ୟବହାର ଯେପରି କ୍ରମେ ବଢ଼ିବ, ଓଡ଼ିଆର ନ୍ୟାଯ୍ୟ ଅଧିକାର ଓଡ଼ିଆ ପାଇବ, ତାହାର ବିହିତ ପ୍ରତିକାର କରିବା ଦରକାର ।"

ଏଇ ଭାଷଣରୁ ସିଂହଭୂମ ପ୍ରତି ଗୋପବନ୍ଧୁଙ୍କର ମନୋଭାବ ସ୍ପଷ୍ଟ ବୁଝା ପଡୁଛି । ତାଙ୍କ ମନରେ, ଧ୍ୟାନରେ, ଏବଂ ଚିନ୍ତାରେ ସର୍ବଦାସର୍ବଦା ସିଂହଭୂମି ସମସ୍ୟା ପ୍ରଧାନ ହୋଇ ଦେଖା ଦେଇଥିଲା । ଓଡ଼ିଶାର ଅନ୍ୟ ଯେ କୌଣସି ଅଞ୍ଚଳ କଥା ଭାବିଲା ବେଳେ ସେ ପ୍ରଥମେ ସିଂହଭୂମି କଥା ଭାବୁଥିଲେ । ଏବଂ ଜାତୀୟ ଶିକ୍ଷା ଓ ଭାଷା ପ୍ରବୃତ୍ତର ଲାଗ ଯୋଗ ସବୁ

ବ୍ୟବସ୍ଥା କରିବା କଥା ସ୍ଥିର କରୁଥିଲେ, ସେ ବ୍ୟବସ୍ଥାଟିକୁ ପ୍ରଥମେ ସିଂହଭୂମ୍‌ରେ ପ୍ରୟୋଗ କରିବା ଏବଂ ସିଂହଭୂମିରୁ ଆରମ୍ଭ କରିବା କଥା ଚିନ୍ତା କରୁଥିଲେ । ଏଣୁ ଏଇ ଲେଖକ ଯଦି କୁହେ—ଦାଶେ ଅପଣେ, ଓଡ଼ିଶାର ସବୁ ଜିଲ୍ଲା ଅପେକ୍ଷା, ସିଂହଭୂମିକୁ ସବୁ ଶ୍ରେଷ୍ଠ ବଡ଼ କାର୍ଯ୍ୟରେ ଅଗ୍ରାଧିକାର ଦେଉଥିଲେ, ତାହା ଭୁଲ୍ ହେବ ବା କାହିଁକି ?

ସେଇ ଅଭିଭାଷଣରେ ଗୋପବନ୍ଧୁ ଅହୁରି କହିଥିଲେ "ଭାରତର ଜାତୀୟତା ଗଠନର ନାନା ସମସ୍ୟା ଓ ନାନା ଅନ୍ତରାୟ ରହିଛି । ନାନା ଭାଷା ନାନା ଧର୍ମ, ନାନା ବିଧି ଆଚାର, ବ୍ୟବହାର ଯୋଗୁଁ ଭାରତୀୟମାନଙ୍କ ମଧ୍ୟରେ ଏତେ ପାର୍ଥକ୍ୟ ରହିଛି ଯେ, ଭାରତ ଜାତୀୟତା ଏକାବେଳକେ କେହି କେହି ଅସମ୍ଭବ ମନେ କରନ୍ତି । ଏକ ପ୍ରଦେଶରେ ବାସ କରି ସମସ୍ତ ଶ୍ରେୟ-ସ୍ୱାର୍ଥ, ମାୟା ମମତା ତହିଁ ସଙ୍ଗେ ମିଶାଇ ନଦେଇ ଯେଉଁମାନେ ସ୍ୱତନ୍ତ୍ର ସ୍ୱାର୍ଥ ଏବଂ ସ୍ୱତ୍ତ୍ୱ ଦାବୀ କରନ୍ତି, ସେମାନେ ସେ ପ୍ରଦେଶର ଉନ୍ନତି ପଥରେ କଣ୍ଟକ ।

ପ୍ରାକୃତିକ ଓଡ଼ିଶା, ସମ୍ମିଳନୀର କାର୍ଯ୍ୟକ୍ଷେତ୍ର ବୋଲି ମୂଳରୁ ନିରୂପିତ ହୋଇଛି । ମାତ୍ର ଆମମାନଙ୍କର ଆକାଂକ୍ଷା ସେହିଠାରେ ସୀମାବଦ୍ଧ ହୋଇ ରହିବା ଉଚିତ ନୁହେଁ ।

ସାର୍ବଜନୀନ ମାନବ ସମାଜ ଭଗବାନଙ୍କର ଅଭିବ୍ୟକ୍ତି ।

ଉଦାର ମାନବିକତା ସମ୍ମେଳନୀର ଲକ୍ଷ୍ୟ ହେଲେ ଭାରତର ଜାତୀୟ ଆନ୍ଦୋଳନରୁ ଆମେମାନେ ପୃଥକ ଓ ବିଚ୍ଛିନ୍ନ ହୋଇ ରହିଲେ ଚଳିବ ନାହିଁ । ଭାରତୀୟ ଆକାଂକ୍ଷା ସଙ୍ଗେ ଉତ୍କଳ ଆକାଂକ୍ଷାର ସାମଞ୍ଜସ୍ୟ ରହିବା ଉଚିତ ।

ସମ୍ମେଳନୀ କାର୍ଯ୍ୟରେ ଭାରତୀୟ ଆନ୍ଦୋଳନରୁ ପୃଥକ ଥିଲେ ସୁଦ୍ଧା ମହାଭାରତ ଜାତୀୟତା ସହିତ ଏହାର ସଂଯୋଗ ମୂଳମନ୍ତ୍ର ।

ମନେରଖିବାକୁ ହେବ, ଆମେମାନେ ପ୍ରଥମେ ମନୁଷ୍ୟ, ପରେ ଭାରତୀୟ ଏବଂ ସର୍ବ ଶେଷରେ ଓଡ଼ିଆ । ଓଡ଼ିଆର ଜାତୀୟ ସ୍ୱାତନ୍ତ୍ର୍ୟ ଫୁଟିବ ପ୍ରଶସ୍ତତର ଭାରତୀୟ ଜାତୀୟତା କ୍ଷେତ୍ରରେ ଏବଂ ସାର୍ବଜନୀନ ଉଦାର ମାନବିକତାରେ ।

ଓଡ଼ିଆମାନେ ଯେ ଏହି ଉଦାର ମାନବ ଧର୍ମରେ ଚିରଦିନ ଦୀକ୍ଷିତ ଏବଂ ଭାରତ ସହିତ ଉତ୍କଳର ନିତ୍ୟସମ୍ବନ୍ଧ ଅନୁଭବ କରୁଛନ୍ତି, ଓଡ଼ିଆ ଜାତିର ଇତିହାସ ଅଭ୍ରାନ୍ତ ଭାବରେ ଏହା ପ୍ରମାଣ କରୁଚି । ଏହାର ଗିରି-ବନ-କନ୍ଦରରେ ଯେ ସମସ୍ତ ଉପାଦାନ ବିକ୍ଷିପ୍ତ ଭାବରେ ପଡ଼ି ରହିଚି, ଭଗ୍ନ ମନ୍ଦିରରେ ଯେ ସମସ୍ତ ସ୍ମୃତି ଏବଂ ସଂସ୍କାର ଜଡ଼ିତ ଅଛି, ପୂଣ୍ୟ ପର୍ବ-ମାନଙ୍କରେ, ଏମନ୍ତ କି ଯେ ସମସ୍ତ ଅନୁଷ୍ଠାନ ଆଜି ଅନେକଙ୍କ ନିକଟରେ କୁସଂସ୍କାର ସେ ସବୁର ମଜ୍ଜାରେ ଯେ 'ସତ୍ୟସାର' ନିହିତ ଅଛି, ପ୍ରବାଦ, ପ୍ରବଚନ, ଚରିତ୍ରରେ ଜୀବନର ଯେ ସମସ୍ତ ତଥ୍ୟ ପ୍ରକାଶ ପାଉଛି ସେ ସବୁର ଭିତରକୁ ଦେଖିଲେ ଜଣାଯାଏ, ଓଡ଼ିଆ ଜାତି ଇତିହାସ କେବେ ସଂକୀର୍ଣ୍ଣ ସୀମାରେ ଆବଦ୍ଧ ନ ଥିଲା । ନଦୀ ପର୍ବତ ଦ୍ୱାରା ଓଡ଼ିଶାର ସୀମା ଆବଦ୍ଧ ହେଲେ ସୁଦ୍ଧା ଓଡ଼ିଆମାନେ ସର୍ବଦା ସୀମା ଅତିକ୍ରମ କରି ବିଶାଳତା ଆଡ଼କୁ ଗତି କରିଛନ୍ତି । ଜାତୀୟତାର ଲକ୍ଷ୍ୟ ଯେ ଉଦାର ମାନବିକତା, ସମଗ୍ର ଭାରତରେ ତାହା ଓଡ଼ିଆହିଁ ବୁଝିଥିଲା । ବିଶ୍ୱପ୍ରୀତିହିଁ ଓଡ଼ିଆର ଜାତୀୟତା । ପୂର୍ଣ୍ଣପ୍ରାଣ ଓଡ଼ିଆର ମନୁଷ୍ୟତା । ଓଡ଼ିଆର ଏ ଜାତୀୟତା, ଦେଶାନୁରାଗ କେବେ ଜଡ଼, ନିର୍ଜୀବ ନୀରସ ଓ ସ୍ୱାର୍ଥପୂର୍ଣ୍ଣ ନୁହେଁ । ରାଜ୍ୟ-ଲାଭ ବା ରକ୍ତପାତରେ ଏହାର ପ୍ରତିଷ୍ଠା ନୁହେଁ । ଗଭୀର ଧର୍ମଭାବ ଏବଂ ଦୃଢ଼ ବିଶ୍ୱାସ ଏହାର ଭିତ୍ତି । ସାମ୍ୟ, ମୈତ୍ରୀ, ସ୍ୱାଧୀନତା ଏହାର ବିଗ୍ରହ । ଓଡ଼ିଆର ଏହି ଭାବ ନୀଳାଚଳ ଧାମରେ ପ୍ରକଟିତ । ତେଣୁ ଜଗନ୍ନାଥ ଓଡ଼ିଆର ଜାତୀୟ ଦେବତା ।

ବଦ୍ରୀନାଥ, ରାମନାଥ, ଦ୍ୱାରକାନାଥ, ସ୍ଥାନ ବିଶେଷରେ "ନାଥ" ମାତ୍ର ଜଗତର ନାଥ ନୁହନ୍ତି । ପ୍ରାଚୀନ କାଶୀ ଧାମରେ ବିଶ୍ୱନାଥ ଅଛନ୍ତି, କିନ୍ତୁ ସମସ୍ତ ବିଶ୍ୱକୁ ଆଲିଙ୍ଗନ କରିବାର ଉଦାରତା ସେଠାରେ ନାହିଁ । ଧର୍ମ ଜୀବନରେ ସାର୍ବଜନୀନ ଉଦାରତା ଯେ ଏକମାତ୍ର ସତ୍ୟ ଏ ଭାବ ଓଡ଼ିଶାରୁ ଲୋପ ପାଇ ନାହିଁ ।

ନୀଳାଚଳର ନୀତିରେ କ୍ଷୁଦ୍ର ବୃହତ୍ ନାହିଁ, ରାଜା ନାହିଁ, ବ୍ରାହ୍ମଣ ଚଣ୍ଡାଳ ନାହିଁ, ପାମର-ପ୍ରେମିକ ନାହିଁ, ଏମନ୍ତ କି ହିନ୍ଦୁ ବୌଦ୍ଧର ଭେଦ-ଭାବ ନାହିଁ । ପରବର୍ତ୍ତୀ ଚୈତନ୍ୟ ଯୁଗରେ ମଧ୍ୟ ହିନ୍ଦୁ ମହମ୍ମଦୀୟ ଭେଦ

ପର୍ଯ୍ୟନ୍ତ ଏଠାରେ ଲୁଚି ଯାଇଥିଲା । ଏହି ଉଦାର ମାନବିକତା ଏବଂ ମହା-ଭାରତ ଜାତୀୟତାର ବୀଜ ନୀଳାଚଳ ଧାମରେ ଅଛି ବୋଲି ତ କାଳେ କାଳେ ଭାରତର ଦିଗ-ଦିଗନ୍ତରୁ ସିଦ୍ଧ ସାଧକ ମହା ପୁରୁଷମାନେ ଆକୃଷ୍ଟ ହୋଇ ଆସିଛନ୍ତି । ଜଗନ୍ନାଥ ତ ସାକ୍ଷାତ ବୌଦ୍ଧାବତାର । ଶଙ୍କରଙ୍କର ପ୍ରଧାନ ମଠ ପୁରୀରେ । ରାମାନୁଜଙ୍କର ଏହା ପୁଣି ଏକ ପ୍ରଧାନ ଧର୍ମକେନ୍ଦ୍ର । ନାନକ ପୁରୀର ସାଗର ସୈକତରେ ନିଜ ସର୍ବୋତ୍କୃଷ୍ଟ ମଧୁମୟ ସଙ୍ଗୀତ ଗାଇଥିଲେ । କବୀରଙ୍କର ମଧ୍ୟ ଆସ୍ଥାନ ଏହିଠାରେ । ଅବଶେଷରେ ପ୍ରେମର ଅବତାର ଶ୍ରୀକୃଷ୍ଣ ଚୈତନ୍ୟ ଭାରତର ସମଗ୍ର ତୀର୍ଥ ଭୂମି, ଏହି ସାର୍ବଜନୀନ ପ୍ରେମଧାମରେ ସ୍ଥାୟୀ ନିବାସ କରି ଗାଇଲେ—“ଜଗନ୍ନାଥ ସ୍ୱାମୀ ନୟନ-ପଥଗାମୀ ଭବତୁମେ ।” ମୁସଲମାନ ଭକ୍ତ ହରିଦାସ, ଶାଳବେଗ ପ୍ରଭୃତିଙ୍କର ସମାଧି ଏହି ପୁରୀରେ ପ୍ରତିଷ୍ଠିତ ।

“ଏହି ସମସ୍ତ ଐତିହାସିକ ଘଟଣାରୁ କେବଳ ଯେ ଓଡ଼ିଆମାନଙ୍କ ବଦାନ୍ୟତାର ପରିଚୟ ମିଳୁଅଛି ସେତିକି ନୁହେଁ, ଭାରତୀୟ ରାଜନୀତିରେ ସେମାନେ ଯେ ପୂର୍ବେ ବରାବର ଯୋଗ ରଖିଥିଲେ ଏହା ମଧ୍ୟ ପ୍ରମାଣିତ ହେଉଅଛି । ଭାଇ ଓଡ଼ିଆ, ବର୍ତ୍ତମାନ ତୁମେ ଯାହା ହୁଅ କିମ୍ବା ତୁମ୍ଭଙ୍କୁ ଅନ୍ୟ ଯାହା ବୋଲି ମନେକରୁ ପଛକେ, ଯେତେ ଦିନ ଯାଏ, ନୀଳାଚଳରେ ସାମ୍ୟ-ମୈତ୍ରୀର ଧ୍ୱଜା ଉଡୁଥିବ, ସେତେଦିନ ଯାଏ ଓଡ଼ିଶା ସମଗ୍ର ଭାରତର କେନ୍ଦ୍ରଭୂମି ହୋଇ ବିରାଜୁ ଥିବ । ତୁମେ ଏହି ‘ଭାରତ-ଜାତୀୟତା କେନ୍ଦ୍ର’ର ଅଧିବାସୀ ।

ଏ ଅଧିବେଶନରେ ଅଭ୍ୟର୍ଥନା ସଭାର ସଭାପତି ଥିଲେ ଜଗତ-ବଲ୍ଲଭ ଘୋଷ ।

ମଧୁବାବୁ ପଦିଏ ଚମତ୍କାର ମନ୍ତବ୍ୟ ଦେଇଥିଲେ—ବନବିଦ୍ୟାଳୟ ଛାତ୍ରମାନଙ୍କୁ ପ୍ରଦୀପ୍ତ ଅନଳ ଓ ସତ୍ୟବାଦୀ ଶିକ୍ଷାନୁଷ୍ଠାନକୁ ପ୍ରାଚୀନ ‘ନାଳନ୍ଦା’ ସହ ତୁଳନା କରିଥିଲେ ।

ଏହି ସମ୍ମେଳନୀରେ ‘ମଣ୍ଟେଗୁ ରିପୋର୍ଟ’କୁ ଏକ ଧୂଆଁ ବାଣ ବୋଲି ପ୍ରସ୍ତାବ ଆଗତ କରାଯାଇଥିଲା । ଏଥିରେ ଭାରତକୁ ଅଧିକାର ହସ୍ତାନ୍ତର କଥା ନାହିଁ । ସ୍ୱାୟତ୍ତଶାସନ ନାମ ମାତ୍ରରେ ଥିଲେ ହେଁ ସବୁ ଶକ୍ତି

ସରକାରଙ୍କଠାରେ ଉଚିତ ବୋଲି ମନ୍ତବ୍ୟ ଦିଆଯାଇ ଏଥିରେ ଓଡ଼ିଆଙ୍କ ପାଇଁ ସ୍ୱତନ୍ତ୍ର ପ୍ରଦେଶ କଥା ନାହିଁ ବୋଲି କହି ସମାଲୋଚନା କରି ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ।

ସ୍ୱାୟତ୍ତଶାସନ ନାମରେ ସଂସ୍କାର ଆଇନ ପ୍ରବର୍ତ୍ତିତ ହେଲା ମାତ୍ର ଅବସ୍ଥା ଅଧିକ ଶୋଚମୀୟ ହୋଇପଡ଼ିଲା ।

ସଂଖ୍ୟା ବହୁଳ ଅଣ ଓଡ଼ିଆଙ୍କ ଭିତରେ ରହି ଓଡ଼ିଆମାନେ ସ୍ୱାୟତ୍ତଶାସନର କୌଣସି ସୁଫଳ ପାଇଲେ ନାହିଁ । ଏତିକବେଳେ ଓଡ଼ିଆ-ମାନେ ସ୍ଥିର କଲେ ଯେ ଉପାନ୍ତ ଅଞ୍ଚଳରେ ବିଶେଷତଃ ଫୁଲଝର, ସିଂହ-ଭୂମି ପ୍ରଭୃତିକୁ ଯାଇ, ଭାଷା ପ୍ରଚାର କରିବା ଉଚିତ୍ତ ତା ନହେଲେ ଓଡ଼ିଆଙ୍କ ଆନ୍ଦୋଳନ ଫଳପ୍ରଦ ହେବା ସମ୍ଭବ ନୁହେଁ ।

ଯା' ପରେ ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ପଣ୍ଡିତ ଗୋଦାବରୀଶ ଓଡ଼ିଆ ଶିକ୍ଷା କାର୍ଯ୍ୟର ଦାୟିତ୍ୱ ନେବା ପାଇଁ ସିଂହଭୂମିକୁ ଗଲେ । ସେ ଯାଇଁ ଶିକ୍ଷା ଆନ୍ଦୋଳନକୁ ତ୍ୱରାନ୍ୱିତ କରିବା ଫଳରେ, ସିଂହଭୂମି ଡେପୁଟି କମିଶନର ଗ୍ରେଟ ନାଗପୁର ଡେପୁଟି କମିଶନରଙ୍କୁ ୧୯୧୯ରେ ଚିଠି ଲେଖି ଜଣାଇଲେ—ପୋଡ଼ାହାଟ ଧଳଭୂମି ଓଡ଼ିଆ ଅଞ୍ଚଳ, ଏଠି ବଙ୍ଗଳା ଭାଷା ପଢ଼ାଇବା ଏକଛତ୍ରବାଦର ନିଦର୍ଶନ । ଏହି ଦୁଇ ସ୍ଥାନରେ ଓଡ଼ିଆ ଟ୍ରେନିଂ ସ୍କୁଲ ସ୍ଥାପନ ତଥା କୋର୍ଟ କଚେରୀରେ ଓଡ଼ିଆ ଭାଷା ଚଳାଇବା ଉଚିତ । ଗ୍ରେଟନାଗପୁର ଡ଼ିଭିଜନର କମିଶନର ମି· ବି· ଫୋଲେ ୧୯୧୯ ମାର୍ଚ୍ଚରେ ସରକାରଙ୍କୁ ଜଣାଇଲେ—ଧଳଭୂମିର ପଶ୍ଚିମ ଭାଗ କୋହ୍ଲାଣ, ଷଢ଼େଇ-କଳା, ଖରସୂଆଁ ସମ୍ପୂର୍ଣ୍ଣ ଓଡ଼ିଆ ଅଞ୍ଚଳ । ଏଣୁ ସିଂହଭୂମି ଓଡ଼ିଶା ସହିତ ମିଶିଯିବା ଉଚିତ ।

୧୯୧୯ରେ ପୁରୀଠାରେ ଶ୍ରୀ ଚନ୍ଦ୍ରଶେଖର ବେହେରାଙ୍କ ସଭା-ପତିତ୍ୱରେ ଉତ୍କଳସମ୍ମେଳନୀର ପଞ୍ଚଦଶ ଅଧିବେଶନରେ ତାଙ୍କ ଭାଷଣ ପ୍ରସଙ୍ଗରେ—ସେ ଦୁଃଖର ସହିତ କହିଥିଲେ—ମୁଁ ନିଜେ ହୃଦବାଧା ପଡ଼ି ଥିବା ହେତୁ ଓଡ଼ିଆ ଭଲରୂପେ କହି ପାରୁନାହିଁ । ଏଣୁ ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ଭାଇମାନେ, କିଭଳି ଏକ ଶାସନାଧୀନ ହେବେ, ତାର ବ୍ୟବସ୍ଥାରେ ଧନ ମନ ଦେଇ ଆନ୍ତରିକ ଭାବେ ଲାଗିବା ଉଚିତ୍ତ ।

'ମନ' ତ ସମସ୍ତଙ୍କର ଥିଲା, କିନ୍ତୁ 'ଧନ'ର ବ୍ୟବସ୍ଥା କରିବା ଥିଲା ଗୁରୁତର ସମସ୍ୟା ।

ଏ ସମସ୍ୟା ଦିନେ ଓଡ଼ିଆ ଜାତିର ପ୍ରଗତି ପଥରେ ଘୋର ଅନ୍ତରାୟ ହେବ, ଏହି କଥା ଦୂରଦୃଷ୍ଟିବାଦୀ ଗୋପବନ୍ଧୁ ବନ୍ଧୁ ଆଗରୁ ଜାଣି ପାରିଥିଲେ ବୋଲି ୧୯୧୭ରେ ହିଁ ଆରମ୍ଭ କରିଥିଲେ ଜାତୀୟ ଶିକ୍ଷାକୁ ସାହାଯ୍ୟ କରିବା ପାଇଁ 'ପଇସା ଫଣ୍ଡ' ।

ଉତ୍କଳ ପତ୍ରିକାର ୨୯ । ୧ । ୧୯୧୭ ସଂଖ୍ୟାରେ ପ୍ରକାଶିତ ଏକ ସମ୍ବାଦରୁ ଜଣାପଡ଼େ—ଓଡ଼ିଶାର ପୁରପଲ୍ଲୀରେ ଓ ବର୍ଜିତ ଓଡ଼ିଆଭାଷୀ ଅଞ୍ଚଳରେ ଶିକ୍ଷାର ପ୍ରସାର ଘଟାଇବା ପାଇଁ ୧୯୧୭ ସାଲରେ ଗୋପବନ୍ଧୁ ଓଡ଼ିଶା ଶିକ୍ଷା ପାଣ୍ଠି ସମିତି ଗଠନ କରିଥିଲେ । ଦେଶର ଭବିଷ୍ୟତ ତଥା ଭବିଷ୍ୟତ ବଂଶଧରମାନଙ୍କୁ ସାକ୍ଷର କରିବା ସଙ୍ଗେ ସଙ୍ଗେ ଉଚ୍ଚ ଶିକ୍ଷାର ତୋରଣଦ୍ୱାର ସେମାନଙ୍କ ଆଗରେ ଖୋଲି ଦେବାକୁ ଅର୍ଥାଭାବ ଏକ ପ୍ରଧାନ ଅନ୍ତରାୟ । ସେଇ ଅନ୍ତରାୟଟିକୁ ବୁଝାଇ ଶିକ୍ଷା ପ୍ରସାରର ଆବଶ୍ୟକତା ଉପରେ ସବୁରି ଦୃଷ୍ଟି ନିବଦ୍ଧ କରିବା ପାଇଁ ସେ ସାରା ଓଡ଼ିଶାକୁ କେତୋଟି ଚକଲାରେ ବିଭକ୍ତ କରି ପ୍ରତ୍ୟେକ ଲୋକଠାରୁ ପଇସାଏ ଲେଖାଁଏ ଦାନ ସଂଗ୍ରହ କରିବାକୁ ଅନୁରୋଧ କରିଥିଲେ ।

'ପଇସା ଫଣ୍ଡ' ସମ୍ପର୍କରେ ଗୋପବନ୍ଧୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ କହିଥିଲେ—ପ୍ରତ୍ୟେକ ବ୍ୟକ୍ତି ଗୋଟିଏ ଲେଖାଁଏ ପଇସା ଦେଲେ ଏକ-ଲକ୍ଷ କମ୍ବା ତତୋଧିକ ଟଙ୍କା ଆଦାୟ ହୁଅନ୍ତା । ବମ୍ବେ ପ୍ରଦେଶରେ ଏହି ପରି ଗୋଟିଏ ପଇସିକିଆ ପାଣ୍ଠିରେ ସଂଗୃହୀତ ୭୫,୫୦୦ ଟଙ୍କାରେ ଗୋଟିଏ କାଚ କାରଖାନା ସ୍ଥାପିତ ହୋଇଛି । ଆମ୍ଭମାନଙ୍କର ପଇସିକିଆ ପାଣ୍ଠି ଶିକ୍ଷା ନିମନ୍ତେ ନିୟୋଜିତ ହେବ ।

ତାପରେ ୧୯୧୮ରେ 'ସତ୍ୟବାଦୀ'ର ୩ୟ ଖଣ୍ଡ ୫ମ ଓ ୬ଷ୍ଠ ସଂଖ୍ୟାରେ ଏଇ ଓଡ଼ିଶା ଶିକ୍ଷା ପାଣ୍ଠି ବା 'ପଇସାଫଣ୍ଡ' ସମ୍ପର୍କରେ ସେ ଲେଖିଥିଲେ—ସାତ, ପାଞ୍ଚକା ଲଡ଼ି, ଏକ ଜଣ୍କୋ ବୋଝ । ଓଡ଼ିଶାର ପ୍ରତ୍ୟେକ ଲୋକ ଗୋଟିଏ ଲେଖାଏଁ ପଇସା ଦେଲେ ମୋଟରେ ଲକ୍ଷାଧିକ ଟଙ୍କା ହେବ ।

ଏ ପଇସିକିଆ ଫଣ୍ଡ ଉପରେ ବିଶେଷ ଆଲୋକପାତ କରିବାର ଉଦ୍ଦେଶ୍ୟ—ସିଂହଭୂମ୍‌ରେ ମଧ ‘ପଇସା ଫଣ୍ଡ’ ଆରମ୍ଭ କରାଯାଇଥିଲା । ଓଡ଼ିଆ ସ୍କୁଲମାନଙ୍କୁ ସାହାଯ୍ୟ ଦେବା ପାଇଁ’ ଏବଂ ସେଇ ଫଣ୍ଡରେ ଏ ପର୍ଯ୍ୟନ୍ତ ମଧ ବାର ହଜାର ଟଙ୍କା ଉପୋଜିତ ହୋଇ ରହିଛି ବୋଲି ଜଣା ପଡ଼େ ।

ପଇସା ଫଣ୍ଡ ଗୋପବନ୍ଧୁ ସୃଷ୍ଟି କରିଥିଲେ, ଇଉରୋପରେ ମହା-ଯୁଦ୍ଧ ଲାଗିଥିବା ବେଳେ । ଏ ଫଣ୍ଡ ସେ ସୃଷ୍ଟି କରିଥିଲେ ମୁଖ୍ୟତଃ ସିଂହଭୂମ୍‌ରେ ତାଙ୍କ ଦ୍ୱାରା ସ୍ଥାପିତ ଓଡ଼ିଆ ସ୍କୁଲ ଗୁଡ଼ିକୁ ଆର୍ଥିକ ସାହାଯ୍ୟ ଦେବାପାଇଁ । କାରଣ ସେ ସ୍ପଷ୍ଟ ଭାବରେ ୧୭ । ୧୧ । ୧୯୨୭ ତାରିଖ ‘ସମାଜରେ’ ପରିଷ୍କାର ଲେଖିଥିଲେ—ଅର୍ଥ ଅଭାବରୁ ସିଂହଭୂମି, ଫୁଲ-ଝର ପ୍ରଭୃତି ସ୍ଥାନରେ କରାଯାଇଥିବା ଓଡ଼ିଆ ସ୍କୁଲ ଗୁଡ଼ିକ ଏତେବେଳକୁ ଭାଙ୍ଗିଗଲାଣି । ମୁଁ ସେଥିରେ ନିହାତି ମର୍ମାହତ ।’

ଯଦିଓ ୧୯୨୨ ପରେ ଗୋପବନ୍ଧୁ ସିଂହଭୂମ୍ ଆଡ଼କୁ ଆଉ ପ୍ରାୟ ଯାଇନାହାନ୍ତି ତଥାପି କଟକ, ପୁରୀରେ ରହି ମଧ ସେ ଯେ ସିଂହଭୂମ୍‌ରେ ଓଡ଼ିଆ ଆନ୍ଦୋଳନ ପ୍ରତି ଆନ୍ତରିକ ଦୃଷ୍ଟି ରଖିଥିଲେ, ତାହା ‘ସମାଜର’ ସେଇ ୧୨ । ୧୧ । ୧୯୨୭ ସଂଖ୍ୟାରେ ପ୍ରକାଶିତ ଲେଖାର ଅନ୍ୟ କେତୋଟି ଧାଡ଼ିରୁ ସ୍ପଷ୍ଟ ଜଣାପଡ଼େ । ସେ ଲେଖିଥିଲେ—ଫଣ୍ଡ କିପରି ଭାବରେ ଖର୍ଚ୍ଚ ହେବ ତାହା ପରିଚାଳନା କମିଟି ସ୍ଥିର କରିବ । ଆବଶ୍ୟକ ବିବେଚନା କଲେ ମୂଳରୁ ମଧ ଖର୍ଚ୍ଚ କରି ପାରିବ । ମୋର କଳ୍ପନା ରହିଛି ଯେ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରଚାରଲାଗି ମୂଳପିଣ୍ଡ ସ୍ୱରୂପ ଗୋଟିଏ ଫଣ୍ଡ ସ୍ଥାପିତ ହେଲେ ସେ ଫଣ୍ଡର ବୃଦ୍ଧି ଲାଗି ଅର୍ଥ ସଂଗ୍ରହ କରିବାକୁ ବିଶେଷ ଭାବରେ ଯତ୍ନ ଓ ଉଦ୍ୟମ କରିବାକୁ ହେବ । ଦୁଇ ତିନି ବର୍ଷ ମଧ୍ୟରେ ସେ ସବୁ ଅଞ୍ଚଳରେ କେତେ ଗୁଡ଼ିଏ ସ୍କୁଲ ସ୍ଥାପନ କରି ସେଠା ଜିଲା ବୋର୍ଡ଼ମାନଙ୍କ ସାହାଯ୍ୟ ଦ୍ୱାରା ସେ ସବୁକୁ ସ୍ଥାୟୀ କରିଦେଲେ ତେଣିକି ଏତେ ଅଧିକ ଆୟାସ ଆବଶ୍ୟକ ହେବ ନାହିଁ । ମୋର ଆଶଙ୍କା ଓଡ଼ିଶାର ଶିକ୍ଷିତ ସମାଜ ଦେଶ ମିଶ୍ରଣ ଲାଗି ବ୍ୟାକୁଳ ଥିଲେ ହେଁ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରଚାରର ଆବଶ୍ୟକତା ଓ ଗୁରୁତ୍ୱ ସେମାନଙ୍କମଧ୍ୟରୁ ଅତି ଅଳ୍ପ ଯଥାର୍ଥ

ରୂପେ ପୂରୀ ଉପଲବ୍ଧି କରିଛନ୍ତି । ସୁନାମୁଦ୍ରିଆଙ୍କ ହାତେ ଚାକର ଖାଇଲେ ଅନେକ ଗଙ୍ଗା ସ୍ନାନ ଫଳ ପାଆନ୍ତି ।

ଜୀବନର ଶେଷ ପର୍ଯ୍ୟନ୍ତ ସିଂହଭୂମିରେ ଓଡ଼ିଆ ଶିକ୍ଷା ଆନ୍ଦୋଳନ ପାଇଁ ସେ ଚିନ୍ତିତ ଥିଲେ । ୧୯୧୭ଠାରୁ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ହେଲା ପରଠୁ ଅସହଯୋଗ ଆନ୍ଦୋଳନରେ ୧୯୨୧ରେ ଜେଲ ଯିବା ପର୍ଯ୍ୟନ୍ତ କି ସାଂଘାତିକ ଭାବରେ ସେ ସକ୍ରିୟ ଥିଲେ, ବଙ୍କି ମ୍ୟାନ୍ସନରେ ଓଡ଼ିଆ ଆନ୍ଦୋଳନକୁ କ୍ଷିପ୍ର ଓ ତ୍ୱରାନ୍ୱିତ କରିବା ପାଇଁ କି ମର୍ମାନ୍ତିକ ଚେଷ୍ଟାରେ ଲାଗି ରହିଥିଲେ, ତାହା ଅନୁଧ୍ୟାନ କଲେ ଆଶ୍ଚର୍ଯ୍ୟରେ ସ୍ତମ୍ଭୀଭୂତ ହୋଇ ଯିବାକୁ ପଡେ ।

ସିଂହଭୂମିର ବିସ୍ତୃତ ଅଞ୍ଚଳ ଭ୍ରମଣକରି, ଚାଇଁବସା, ଚକ୍ରଧରପୁର, ପୋଡ଼ାହାଟ, ପ୍ରଭୃତି ଜାଗାରେ କିଛି କିଛି ଦିନ ରହି ସେଠାକାର ବିଶିଷ୍ଟ ଲୋକମାନଙ୍କ ସହିତ ଆଳାପ—ଆଲୋଚନା କରି ସେ ଶିକ୍ଷା ପ୍ରଚାର କାର୍ଯ୍ୟକୁ ନିୟନ୍ତ୍ରିତ କରୁଥିଲେ । ଏହି ସମୟରେ ସେ ଘନ ଘନ ଯାଉଥିଲେ ଜାମସେଦ୍‌ପୁର । ଜାମସେଦ୍‌ପୁରର ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ଭିତରେ ସର୍ବଶ୍ରୀ ବଳଭଦ୍ର ନାୟକ, ପରମାନନ୍ଦ ମହାପାତ୍ର, ଅଦ୍ୱୈତ ପ୍ରସାଦ ମହାନ୍ତି, ଜଗନ୍ନାଥ ରଥ, ଅପର୍ତ୍ତି ନାୟକ ପ୍ରଭୃତିଙ୍କ ସହିତ ସେ ଘନିଷ୍ଠ ସମ୍ପର୍କ ସ୍ଥାପନ କରିଥିଲେ ।

ଏମାନଙ୍କ ସହିତ ବେଶୀ ଭାବରେ ପରିଚିତ ଓ ଆନ୍ତରିକ ହୋଇ-ରହିଥିଲେ ପ୍ରଚାରକ ଅନନ୍ତ ମିଶ୍ର । ସେ ୧୯୧୫ ଠାରୁ ବରାବର ଜାମ୍‌ସେଦ-ପୁର ଯାଇଁ ଓଡ଼ିଆ ଶ୍ରମିକଭାଇମାନଙ୍କଠୁ ଚାନ୍ଦା ସଂଗ୍ରହ କରି ଆଣୁଥିଲେ । ଏ ଚାନ୍ଦା ସଂଗ୍ରହ କାର୍ଯ୍ୟରେ ବିଶେଷ ଭାବେ ସାହାଯ୍ୟ କରୁଥିଲେ ବଳଭଦ୍ର ନାୟକ, ପରମାନନ୍ଦ ମହାପାତ୍ର, ଅଦ୍ୱୈତ ପ୍ରସାଦ ମହାନ୍ତି ଏବଂ ଜଗନ୍ନାଥ ରଥ ।

ଚକ୍ରଧରପୁରରେ ଓଡ଼ିଆ ସ୍କୁଲକୁ ଆର୍ଥିକ ସାହାଯ୍ୟ ଦେବାରେ ବିଶେଷ ଭାବରେ ଆଗୁଆ ହୋଇଥିଲେ କାହ୍ନୁ କିଶୋର ପାଣି, ଈଶ୍ୱର ଚୌଧୁରୀ, ଗଉରକୃଷ୍ଣ ମିଶ୍ର, ବ୍ରଜବନ୍ଧୁ ତ୍ରିପାଠୀ । କିନ୍ତୁ ସମସ୍ତଙ୍କଠାରୁ ବେଶୀ ବଦାନ୍ୟଭାବ ଦେଖାଇଥିଲେ ଜଣେ ବିହାରୀ ବ୍ୟବସାୟୀ ଘାନନାଥ ପାଣ୍ଡେ ।

ଯ୍ବାଙ୍କର ସମ୍ବନ୍ଧରେ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କର ଆତ୍ମ ଜୀବନୀରେ ଲେଖିଛନ୍ତି—ଘନନାଥ ପାଣ୍ଡେ ମଥୁରାବାସୀ। ବହୁଦିନୁ ଚକ୍ରଧରପୁରରେ ରହି ବ୍ୟବସାୟ କରୁଥିଲେ। ସେ ସ୍କୁଲ ପାଇଁ ଘର ତୋଳେଇ ଦେଲେ ଓ ମାସକୁ ମାସ ସ୍କୁଲର ଯାବତୀୟ ବ୍ୟୟ ନିର୍ବାହ କଲେ। ସେ 'ଚତୁର୍ବେଦୀ ବ୍ରାହ୍ମଣ'। ସେତେବେଳକୁ ତାଙ୍କର ବୟସ ଷାଠିଏ ପାର ହୋଇଥିଲା। ବାର୍ଷିକ ଟଙ୍କା ପଚିଶ ହଜାର ପର୍ଯ୍ୟନ୍ତ ରୋଜଗାର କରୁଥିଲେ। ହାକିମ ହୁକୁମାଙ୍କ ସହିତ ଦରଖାସ୍ତିଆ ଇଂରେଜୀରେ କଥାବାର୍ତ୍ତା ହେଉଥିଲେ? ଜାତି, ଧନ, ବିଦ୍ୟା, ବୟସ ସବୁ ବିଷୟରେ ତାଙ୍କର ଖୁବ୍ ଅଭିମାନ ଥିଲା। ତଥାପି ସେ ମୋତେ 'ଗୁରୁଜୀ' ବୋଲି ଡାକୁଥିଲେ ଓ ସେହିପରି ସ୍ନେହ ଶ୍ରଦ୍ଧା କରୁଥିଲେ।'

ପଣ୍ଡିତ ମିଶ୍ରେ ୧୯୧୯ ଫେବୃୟାରୀ ୮ ତାରିଖ ଉପରଓଳି ବମ୍ବେଇ ଡାକଗାଡ଼ିରୁ ଗୋପବନ୍ଧୁଙ୍କ ସାଙ୍ଗରେ ଚକ୍ରଧରପୁର ଷ୍ଟେସନରେ ଓହ୍ଲାଇଥିଲେ। ଗୋପବନ୍ଧୁ ବାବୁଙ୍କୁ ପାଛୋଟି ନେବା ପାଇଁ ହିନ୍ଦୁସ୍ଥାନୀ ମାରୁଆଡ଼ି, ବଙ୍ଗାଳୀ, ଓଡ଼ିଆ ଅନେକ ଆସିଥିଲେ। ଷ୍ଟେସନରୁ ସେମାନଙ୍କୁ ସଙ୍ଗେ ସଙ୍ଗେ ଗୋଟିଏ ସଭାକୁ ନିଆଗଲା। ସଭାରେ ହିନ୍ଦି, ଓ ବଙ୍ଗଳା ବକ୍ତୃତା ହେଲା। କିନ୍ତୁ ଗୋପବନ୍ଧୁ ବାବୁ ଓଡ଼ିଆରେ କହିଥିଲେ।

ଗୋଦାବରୀଶବାବୁ ତାଙ୍କର 'ନୂତନ କର୍ମକ୍ଷେତ୍ର' ଅଧ୍ୟାୟରେ ଲେଖିଛନ୍ତି—ଗୋପବନ୍ଧୁବାବୁଙ୍କର ଗୋଟାଏ ବଡ଼ ବିଶେଷତ୍ୱ, ଯେ, ସେ ଯାହା କହନ୍ତି, ଶ୍ରୋତାଙ୍କର ନାଳପାଣି ପରି ସ୍ରୋତ ବଡ଼, ସବୁ ଫାଟ ଭିତରେ ପଶିପାରେ। ଏପରିକି ପଥର ସନ୍ଧିକି ମଧ୍ୟ ଗଳିଯାଏ। ସେ ଦିନ ସଭାରେ ଖୁବ୍ ଉତ୍ସାହ ଦେଖାଗଲା। ବହୁତ କରତାଳି ପଡ଼ିଲା।

ପରଦିନ 'ରଘୁରାମ ମାରୁଆଡ଼ି'ଙ୍କ ଧର୍ମଶାଳାରେ ଡ଼ିକି ସ୍କୁଲ୍ରୁ ଯାଇଁ ମଧ୍ୟ ଧାନ କୁଟିବାକୁ ଆରମ୍ଭ କଲା। ପୁଣି ସେହି ପିଲା, ସେହି କଳାପଟା, ସେହି ଦୁଧ ଖଡ଼ି, କିନ୍ତୁ ପରିସ୍ଥିତିଟା ଏକାବେଳକେ ଭିନ୍ନ, ସବୁ ନୂଆ ମୁହଁ, ହାତ ବଢ଼ାଇଲେ ଗୁରୁପାଖ ଇଚ୍ଛା ଚୂନ ଛୁଆର କାନ୍ଥ। ଆଖିର ଅନୁଭୂତି ସହିତ କାନର ଅନୁଭୂତି ମିଳିଗଲା।

ଚକ୍ରଧରପୁର ବ୍ୟବସାୟୀମାନଙ୍କ ସ୍ଥାନ ପୂର୍ବେ 'ପୋଡ଼ାହାଟ' ରାଜାଙ୍କ ପୀଠ ଥିଲା। ସେ ରାଜବଂଶ ସମସ୍ତ 'ସିଂହଭୂମି'ର ରାଜା ଥିଲେ।

୧୮୫୭ ମସିହା ସିପାହି ଯୁଦ୍ଧରେ ନେତୃତ୍ୱ ନେବା ଫଳରେ ରାଜା 'ଅର୍ଜୁନ ସିଂହ' ଧରା ହୋଇ ବନ୍ଦୀ ହେଲେ ଓ ତାଙ୍କ ରାଜ୍ୟ ଖାସ୍ ହୋଇଗଲା । ଚକ୍ରଧରପୁରର ପ୍ରାଚୀନ ଗୌରବ ସେଇଦିନୁ ଲୋପ ପାଇଲା ।

ପଣ୍ଡିତ ମିଶ୍ରେ ଲେଖିଛନ୍ତି—ମୁଁ ଯିବା ସମୟରେ ସେଠାରେ ତାଙ୍କ ବଂଶଧର 'ନରପତ୍ ସିଂହ' ବାସ କରୁଥିଲେ । କିନ୍ତୁ ସେ ବାହାରକୁ କ୍ୱଚିତ୍ ବାହାରୁଥିଲେ । ତାଙ୍କ ପୂର୍ବପୁରୁଷ ସେଠାରେ ଯେଉଁ ରାଜଧାନୀ ଗଢ଼ିଥିଲେ, ବ୍ରାହ୍ମଣଶାସନ ବସାଇଥିଲେ, ତାହା ବର୍ତ୍ତମାନ 'ପୁରୁଣାବସ୍ତି' ଆଖ୍ୟା ପାଇଛି । ସେଠାରେ ପ୍ରକୃତରେ ସବୁ ଜିନିଷ ପୁରୁଣା । ଘର, ଗାଁ, ଦେଉଳ, ପୋଖରୀ ସବୁ ଦେଖିଲେ ଗୋଟିଏ ପ୍ରାଚୀନ ଐତିହ୍ୟଶୀଳ ଗୌରବମୟ ରାଜଧାନୀର ଭଗ୍ନାବଶେଷ ପରି ଦେଖାଯାଏ ।

'ପୁରୁଣାବସ୍ତି'ର ଲୋକେ ସବୁ ଓଡ଼ିଆ । କିନ୍ତୁ ଚକ୍ରଧରପୁର ବଜାରରେ ହିନ୍ଦୁସ୍ଥାନୀ ବଙ୍ଗାଳୀ, ମାରୁଆଡ଼ି ପ୍ରଭୃତି ବ୍ୟବସାୟୀମାନେ ରହନ୍ତି । ମୁଁ ଯାଇଁ ପୁରୁଣା ବସ୍ତିରେ ବସା କଲି । ସ୍କୁଲ ହେଲା ବଜାରରେ, ପୁରୁଣାବସ୍ତି ଓ ବଜାର ଭିତରେ ବାହାର କାରବାର ଓ ବ୍ୟବସାୟ ସମ୍ପର୍କ ମୋଟାମୋଟି ଭଲ ଥିଲେ ସୁଦ୍ଧା ମନ ଭିତରେ ଯେ ଖୁବ୍ ଗୋଟାଏ ମେଳ ଥିଲା ତାହା ନୁହେଁ କିନ୍ତୁ ମୋତେ ଉଭୟଙ୍କ ସହିତ ମିଳି ମିଶି ଚଳିବାକୁ ହେଲା । ପୁରୁଣା ବସ୍ତିର ବନ୍ଧୁମାନେ ବିଶେଷରେ କାହ୍ନୁ କିଶୋର ପାଣି ମୋତେ ଖୁବ୍ ଖୁଆଇ ପିଆଇ ରଖିଲେ । ଚକ୍ରଧରପୁରରେ ଯେଉଁ ହାଇସ୍କୁଲ ବସିଲା ସେ ସମ୍ପର୍କରେ ସାହାଯ୍ୟ ସହାନୁଭୂତି ବହୁ ଲୋକଙ୍କଠାରୁ ମିଳିଲା । ଏପରିକି ଚକ୍ରଧରପୁର ରେଲଷ୍ଟେସନ ବସ୍ତିରେ ଯେଉଁ ଗୋରାମାନେ ରହୁଥିଲେ ସେମାନେ ମଧ୍ୟ ସାହଚର୍ଯ୍ୟ ଦେଖାଇଲେ । ଅର୍ଥ ଦିଗରୁ ଘନନାଥ ପାଣ୍ଡେ ଓ କର୍ମୀ ହିସାବରେ ଗତିକୃଷ୍ଣ ଷଡ଼ଙ୍ଗୀ । ଗତିକୃଷ୍ଣ ଓଡ଼ିଆ ଯୁବକ । ସେ ଆଇ. ଏ. ପାଶ୍ କରି ଶିକ୍ଷା ବିଭାଗରେ ସବ୍-ଇନ୍‌ସପେକ୍ଟର ହୋଇଥିଲେ । ସଙ୍ଗେ ସଙ୍ଗେ ଇସ୍ତଫା ଦେଇ ତିରିଶ ଟଙ୍କା ଭତ୍ତାରେ କାର୍ଯ୍ୟରେ ଯୋଗ ଦେଲେ ।

ପଣ୍ଡିତ ମିଶ୍ରେ ଲେଖିଛନ୍ତି—ଗତିକୃଷ୍ଣ ଜାତି ସଙ୍ଗରେ ନିଜର ଜୀବନକୁ ଆହୂତି ଢାଳିଦେଇ ଥିଲେ । ତାଙ୍କ ଶେଷ ଜୀବନରେ ବେଶଭୂଷ

ଥିଲା—ଖଣ୍ଡିଏ ଆଣ୍ଠୁ ନଡେଇଁବା ଭଳି ଖଦା-ଲୁଗା ଓ କାନ୍ଧକୁ ଖଣ୍ଡିଏ ଗାମୁଛା । ତାଙ୍କପରି ସରଳ, ସ୍ପଷ୍ଟବାଦୀ, କର୍ତ୍ତବ୍ୟନିଷ୍ଠ ନିରଭିମାନ କର୍ମୀ ମୁଁ ଆଜି ଦେଖିନାହିଁ । ବିଧାତା ତାଙ୍କୁ ବେଶି କାଳ ବଞ୍ଚାଇ ରଖିଲା ନାହିଁ ।

ପ୍ରଥମରୁ ଦେଢ଼ବର୍ଷ ଉପରେ ସବୁବେଳେ ସ୍କୁଲଟି ଭଲରେ ଚାଲିଲା । ସିଂହଭୂମ ଜିଲ୍ଲାର ଲୋକ ସଂଖ୍ୟା ଥିଲା ୬, ୯୪, ୩୯୪ । ତା ମଧ୍ୟରୁ ଓଡ଼ିଆଙ୍କ ସଂଖ୍ୟା-୧, ୨୪, ୫୯୩ । ଏସବୁ ୧୯୧୧ ମସିହାର ଜନଗଣନା ସଂଖ୍ୟା । ମୋ ସିବାପରେ ଓଡ଼ିଆ ହାଇସ୍କୁଲ ତ ପ୍ରତିଷ୍ଠିତ ହେଲା । ଅନେକ ପ୍ରାଥମିକ ସ୍କୁଲ ମଧ୍ୟ ବସିଲା । ଗୋପବନ୍ଧୁ ବାବୁ 'ପଇସିକିଆ ପାଣ୍ଠି' ସଂଗ୍ରହ କରି ବାରହଜାର ପର୍ଯ୍ୟନ୍ତ ଟଙ୍କା ଉଠାଇଥିଲେ । ପ୍ରଚାରକ ଅନନ୍ତ ମିଶ୍ର ସିଂହଭୂମରେ ଓଡ଼ିଆ ପ୍ରଚାର ଯେପରି କଲେ, ଓଡ଼ିଶା ଯାକ ବୁଲି ପାଣ୍ଠି ସେହିପରି ସଂଗ୍ରହ କରି ପଠାଇଲେ । ଜିଲ୍ଲା ତମାମ୍ ଅପୂର୍ବ ଉତ୍ସାହ ଦେଖାଗଲା ।

ଏ ସବୁ ସିଂହଭୂମିର ଓଡ଼ିଆ ଜାଗରଣର ଫଳ । ଜଙ୍ଗଲରେ କାଠ ଶୁଖି ପଡ଼ିଥାଏ । ଥରେ ନିଆଁ ଲାଗିଲେ ଶୁଖିଲା କାଠ ତ ଜଳେ, କଞ୍ଚା ଗଛ ଗୁଡ଼ାକ ମଧ୍ୟ ଠିଆ ଠିଆ ଜଳିବାକୁ ଆରମ୍ଭ କରେ । ସିଂହଭୂମିର ଓଡ଼ିଆ ଜାଗରଣ ସେହିପରି ଭାବରେ ପ୍ରବଳ ବେଗରେ ଗତିକଲା । ମୁଷ୍ଟିମେୟ ବିହାରୀ ଏ ଘଟନା ଦଉଡ଼ା ଦଉଡ଼ି କଲେ । ୧୯୨୦ ମସିହା ଡିସେମ୍ବର ମାସରେ ଚକ୍ରଧରପୁରରେ ଉତ୍କଳ ସମ୍ମେଳନୀ ବସିଲା । ଏହିପରି ସମୟରେ ଭାରତରେ ଗୋଟାଏ ଭୁମୂଳ ଭୂମିକମ୍ପ ଘଟିଗଲା । ”

ଏଇ ଭୁମୂଳ ଭୂମିକମ୍ପଟି କ'ଣ ତାହା ଆମେ ସମସ୍ତେ ଜାଣୁ । ତା ହେଲା—କଂଗ୍ରେସ, ଅସହଯୋଗ ଆନ୍ଦୋଳନ ଆରମ୍ଭ କରିବ ବୋଲି ସିଦ୍ଧାନ୍ତ ନେବାର ଐତିହାସିକ ଘଟଣା ।

ଉତ୍କଳ ସମ୍ମେଳନୀ ଏବଂ ଜାତୀୟ କଂଗ୍ରେସ ସମ୍ବନ୍ଧରେ ଗୋପବନ୍ଧୁ ସତ୍ୟବାଦୀରେ ଲେଖିଥିଲେ—ଉତ୍କଳ ସମ୍ମେଳନୀର ଆୟୁ ଆସି ୧୭ ବର୍ଷରେ ପହଞ୍ଚିଲା । ବହୁ ବର୍ଷ ଧରି ଏ ସମ୍ମେଳନୀ କୌଣସି ରାଜନୀତିରେ ଅଂଶ ଗ୍ରହଣ କରିନାହିଁ ଏବଂ ଏଥିରେ ରାଜା, ଜମିଦାର ଏବଂ ସରକାରୀ ଅଫିସର-ମାନେ ଏ ସଭାର କାର୍ଯ୍ୟକ୍ରମରେ ଭାଗ ନେଉଛନ୍ତି । ବର୍ତ୍ତକେ ଥରେ ଏମାନେ

ନିଭୃତ କୋଠରୀରେ ବସି ଚରମ ଗରମ ଭାଷଣ ଦେବାରେ ବ୍ୟସ୍ତ । କେବଳ ଭାଷଣ ଏବଂ ପ୍ରସ୍ତାବ ପାଶ୍ କରିବା ଭିତରେ ଏହା ଶେଷ ହୁଏ । ସିଂହଭୂମି ଜିଲାରେ ଓଡ଼ିଆ ଭାଷା ପ୍ରଚାର କାର୍ଯ୍ୟରେ କିଛିଟା କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଛଡ଼ା ଉତ୍କଳ ସମ୍ମିଳନୀର ଆଉ ବିଶେଷ କିଛି ସାଫଲ୍ୟ ନାହିଁ ।

ଏଇ ପରିପ୍ରେକ୍ଷୀରେ ସେ ଖୁବ୍ ମର୍ମାହତ ହୋଇ ଲେଖିଥିଲେ— ଭାରତୀୟ ଜାତୀୟ କଂଗ୍ରେସ ଆଗକୁ ମାଡ଼ି ଚାଲିଛି । ଏହାର ପ୍ରତି-କ୍ରିୟା ଏବଂ ପ୍ରଭାବ ଓଡ଼ିଶାରେ ଅନୁଭୂତ ହେଉଛି । ଓଡ଼ିଆ ଯୁବକଙ୍କ ଭିତରେ ଖୁବ ଉତ୍ତେଜନା ଲକ୍ଷ୍ୟ କରାଯାଉଛି । ବୃଦ୍ଧିମାନ ତରୁଣ ଗୋଷ୍ଠି ଉତ୍କଳ ସମ୍ମିଳନୀ ଏବଂ ଜାତୀୟ କଂଗ୍ରେସ ଭିତରେ 'ସୀମା'ର ବାଛ ବିଚାର କରିବାକୁ ପ୍ରସ୍ତୁତ ନୁହେଁ । ଯଦିଓ ପୁରୁଣା ଲୋକମାନେ କହୁଛନ୍ତି—ଜାତୀୟ କଂଗ୍ରେସ ଆନ୍ଦୋଳନରେ ଯୋଗଦେବା ପାଇଁ ଓଡ଼ିଶାର ସମସ୍ତ ଆସିନାହାଁନ୍ତି, ତଥାପି କେହି ମତେ କହିପାରିବେକି, 'ଯଥାର୍ଥ ମୁହୂର୍ତ୍ତ'ଟିର ଅର୍ଥ କ'ଣ ? ହୋଇପାରେ, ବର୍ତ୍ତମାନର ଜାତୀୟ ଆନ୍ଦୋଳନରେ ସାମିଲ ହେବା ଦ୍ୱାରା କିଛି ଗୋଳମାଳିଆ ପରିସ୍ଥିତି ସୃଷ୍ଟି ହୋଇ ପାରେ । ଆମେମାନେ ବୋଧହୁଏ ଏପରି ଏକ ମୁହୂର୍ତ୍ତ ପାଇଁ ଅପେକ୍ଷା କରୁଛୁ ଯେତେବେଳେ ଜାତୀୟ ଆନ୍ଦୋ-ଳନରେ ଅଂଶ ଗ୍ରହଣ କଲେ ଆମ ପାଇଁ କୌଣସି ବିପଦର ଆଶଙ୍କା ନ ଥିବ, କେବଳ 'ବିଜୟ'ର ସୁଫଳରେ ଅଂଶୀଦାର ହେବାର ସୌଭାଗ୍ୟ ମିଳିବ । କେହି କହି ପାରିବେକି ପୃଥିବୀର କୌଣସି ଜାତି, ଏପରି ସୁବିଧାବାଦୀ ଭାବେ ଉପକୃତ ହୋଇଛି ? ସ୍ୱାଧୀନତା ପାଇଁ ଲଢ଼ୁଥିବା ଗୋଟିଏ ପରାଧୀନ ଜାତି, ଯେକୌଣସି କଷ୍ଟ ଆଉ ବିପଦର ସମ୍ମୁଖୀନ ହେବାକୁ ସଦା ସର୍ବଦା ପ୍ରସ୍ତୁତ ରହିବା ଉଚିତ୍ । ମୁକ୍ତି-ପଥର ଯୋଦ୍ଧାମାନେ ବିପଦକୁ ସଦାବେଳେ ମୁକାବିଲା କରିବାକୁ ତିଆର ରହିବା ଉଚିତ । ବିପଦ ଏବଂ ବିଜୟ ଭିତରେ ଲାଭ କ୍ଷତିର ହିସାବ କଷି କେହି ଜାତୀୟ ଆନ୍ଦୋଳନରେ ଯୋଗ ଦିଏ ନାହିଁ । ଜଣେ ଭୀରୁ ଆଉ କାପୁରୁଷ କେବଳ 'ଯଥାର୍ଥ ସମୟ' କଥା କହି, ସୁବିଧା ସୁଯୋଗକୁ ଅପେକ୍ଷା କରିବସେ । ଜାତୀୟ ଶକ୍ତି ହେଉଛି ଅମର ପ୍ରେରଣା । ଜୀବନର ଧାରା, ଜାତୀୟ ଆନ୍ଦୋଳନର ପ୍ରଖର ସ୍ରୋତରେ ମିଶିଯିବା ଉଚିତ୍ । ପରାଧୀନତା ହେଲା ଦାସତ୍ୱ । ସ୍ୱାଧୀନତା

ହେଲା ମୁକ୍ତ—ସ୍ୱର୍ଗୀୟ ଆନନ୍ଦ ! ଏଣୁ ଆଉ ସମୟ ବିଳମ୍ବ ନକରି ସର୍ବ-ଭାରତୀୟ ଜାତୀୟ ଆନ୍ଦୋଳନରେ ନିଜକୁ ସାମିଲ କରି ଦେବାକୁ ହେବ ।

ଏଇ ସବୁରୁ ସ୍ପଷ୍ଟ ଜଣାଯାଏ—ଗୋପବନ୍ଧୁ ଥିଲେ ଜଣେ ମହାନ୍ ବିପ୍ଳବୀ । ସମସ୍ତ ବାଧା ପ୍ରତିବନ୍ଧକକୁ ଦଳଦେଇ ଜାତୀୟ ଆନ୍ଦୋଳନରେ ଝାମ୍ପ ଦେବାପାଇଁ ସେ ସମଗ୍ର ଓଡ଼ିଆ ଜାତିକୁ ଆହ୍ୱାନ ଦେଇଥିଲେ ବଳିଷ୍ଠ କଣ୍ଠରେ ।

ମହାଭାରତୀୟ କଂଗ୍ରେସ ଆନ୍ଦୋଳନରେ ଯୋଗ ଦେବା ପାଇଁ ଓଡ଼ିଆ ଜାତିକୁ କେବଳ ମୌଖିକ ଆହ୍ୱାନ ସେ ଦେଇ ନ ଥିଲେ, ଜଣେ ସାମ୍ବାଦିକ ଭାବରେ ତାଙ୍କ ଦ୍ୱାରା ସମ୍ପାଦିତ 'ସମାଜ' କାଗଜରେ ବହୁ ସମ୍ବାଦ, ବହୁ ପ୍ରବନ୍ଧ ଲେଖୁଥିଲେ ଜାତି ଉଦ୍ଦେଶ୍ୟରେ ।

ଏହି ଲେଖା ଲେଖି ଭିତରେ ବିଶେଷ ଭାବରେ ସ୍ଥାନ ପାଉଥିଲା ସିଂହଭୂମ୍‌ରେ ଓଡ଼ିଆ ଶିକ୍ଷା ଆନ୍ଦୋଳନ ସମ୍ପର୍କିତ ସମ୍ବାଦ ଏବଂ ଆଲୋଚନା ।

'ଶିକ୍ଷା, ଶିକ୍ଷକ ଓ ଛାତ୍ର' ପୁସ୍ତକରେ ପ୍ରକାଶିତ କେତୋଟି ପରିଚ୍ଛେଦ ଏଠି ଉଦ୍ଧାର କରାଯାଇପାରେ ।

'ସିଂହଭୂମି ଶିକ୍ଷା ସମାଚାର' ଶୀର୍ଷକ ଏକ ଲେଖାରେ ୧୧।୧୦।୧୯ ତାରିକରେ ଲେଖିଥିଲେ ସିଂହଭୂମି ଜିଲାର ଚକ୍ରଧରପୁର ଏବଂ ଧଳଭୂମି ଅନ୍ତର୍ଗତ ବହଡ଼ାଗୋଡ଼ା ଏହି ଦୁଇ ସ୍ଥାନରେ ଯେ ଦୁଇଟି ହାଇସ୍କୁଲ ଆରମ୍ଭ କରାଯାଇଛି, ତହିଁରେ ୪ର୍ଥ ଶ୍ରେଣୀ ପର୍ଯ୍ୟନ୍ତ କ୍ଲାସ ଖୋଲିଛି ମାତ୍ର । କୌଣସି ସ୍କୁଲର ଏ ପର୍ଯ୍ୟନ୍ତ ସ୍ୱତନ୍ତ୍ର ଘର ନାହିଁ । ଚକ୍ରଧରପୁର ସ୍କୁଲ ନିମନ୍ତେ ଖଣ୍ଡେ ଜାଗା ସୁବିଧାରେ ନ ମିଳିଲା । ଚକ୍ର-ଧରପୁର ରାଜା ଏବଂ ଡେପୁଟି କମିଶନର ମଧ୍ୟରେ କାହାର ଜମି ଦେବାର ଅଧିକାର ଅଛି, ଠିକ୍ ହୋଇ ନ ପାରିଲା । ଅବଶେଷରେ ଉଦ୍ୟୋକ୍ତାମାନେ ସେ ସବୁ ଦ୍ୱନ୍ଦରେ ନ ପଶି ଜଣେ ସାଧାରଣ ବ୍ୟକ୍ତିଙ୍କଠାରୁ ଖଣ୍ଡେ ଜମି ପଟ୍ଟା ନେଇଛନ୍ତି । ଗଲା ଦଶହରା ଦିନ ଉକ୍ତ ଭୂମିରେ ସ୍କୁଲ ଘରର ଶୁଭ ଦିଆ ଯାଇଅଛି । ବର୍ତ୍ତମାନ କେବଳ ଖୋଲା ଭୂଲଆ ହେବାର ଆୟୋଜନ ହେଉଅଛି । ଆଗାମୀ ଜାନୁୟାରୀଠାରୁ ସେହି ଭୂଲଆରେ ସ୍କୁଲ ହେବ ।

ପଣ୍ଡିତ ଶ୍ରୀ ଦୀନନାଥ ପାଣ୍ଡେ ଅକାତରରେ ସ୍କୁଲର ସମସ୍ତ ବ୍ୟୟ ଚଳାଉ ଅଛନ୍ତି ।

× × ×

ସିଂହଭୂମି ଉତ୍କଳ ସଭାର ସମ୍ପାଦକ ଓକିଲ ଶ୍ରୀ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ଏବଂ ଧଳଭୂମିର ଅନ୍ୟତମ ଉତ୍ସାହୀ ଯୁବକ ଓକିଲ ଶ୍ରୀମାନ ସୁରେଶଚନ୍ଦ୍ର ଷଡ଼ଙ୍ଗୀ ଓ ବାବୁ ତ୍ରିଲୋଚନ ମିଶ୍ରମାନେ ପୂଜା ବନ୍ଦ ମଧ୍ୟରେ ବହଡ଼ାଗୋଡ଼ା ସ୍କୁଲ ଲାଗି ଚାନ୍ଦା ସଂଗ୍ରହ କରିବା କାରଣ ମଫସଲରେ କେତେକ ଗ୍ରାମକୁ ଯାଇଥିଲେ । ଲୋକଙ୍କ ଅବସ୍ଥା ବଡ ଖରାପ, ବର୍ଷା ଅଭାବରେ ଫସଲର ଆଗମ ଭଲ ନୁହେଁ । ତେଣୁ ଆଶାନୁରୂପ ସାହାଯ୍ୟ ମିଳି ନାହିଁ, କେବଳ ଏକ ହଜାର ଟଙ୍କା ମଧ୍ୟରେ ଚାନ୍ଦା ଉଠି ଅଛି । ଫଳ ଯାହା ହେଉ, ଆମ୍ଭେମାନେ ଉଦ୍ୟୋକ୍ତାମାନଙ୍କ ଉଦ୍ୟମ ଏବଂ ସ୍ୱାର୍ଥତ୍ୟାଗକୁ ଧନ୍ୟବାଦ ଦେଉଅଛୁ । କୁମାର ପୂର୍ଣ୍ଣିମୀ ସନ୍ଧ୍ୟାରେ ବହଡ଼ାଗୋଡ଼ା ନିକଟବର୍ତ୍ତୀ ସମସ୍ତ ଗ୍ରାମର ଲୋକମାନଙ୍କର ଯେ ବୈଠକ ହୋଇଥିଲା, ସେଥିରେ ସ୍କୁଲର ସ୍ଥାୟିତ୍ୱ ବିଷୟରେ ବିଶେଷ ଆଲୋଚନା ହୋଇଥିଲା । ମାସିକ ଚାନ୍ଦା କେତେ ଆଦାୟ ଏବଂ କେତେ ନୂଆ ସ୍ୱାକ୍ଷର ହୋଇଅଛି । ଆଗାମୀ ଫସଲ ହେଲେ ସ୍କୁଲର ଅବସ୍ଥା ଭଲ ହେବ ବୋଲି ସମସ୍ତଙ୍କର ପୂର୍ଣ୍ଣ ଆଶା ।

× ×

ସମ୍ବଲପୁରର ସୁପରିଚିତ ପଣ୍ଡିତ ଶ୍ରୀ ଧରଣୀଧର ମିଶ୍ର ବାନପ୍ରସ୍ଥ ମିଶ୍ର ପ୍ରେସର ଏ ବର୍ଷର ଲାଭରୁ ସିଂହଭୂମି ଓଡ଼ିଆ ଶିକ୍ଷା ନିମନ୍ତେ ଏକଶ ଟଙ୍କା ଆମ୍ଭମାନଙ୍କ ନିକଟକୁ ପଠାଇଅଛନ୍ତି । ଏଥି ନିମନ୍ତେ ଆମ୍ଭେମାନେ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଅଛୁ ଏବଂ ମିଶ୍ର ପ୍ରେସର ଉତ୍ତରୋତ୍ତର ଉନ୍ନତି କାମନା କରୁଅଛୁ । ସିଂହଭୂମିର ଓଡ଼ିଆମାନଙ୍କର ଜାତୀୟଭାବ ଜାଗି ଅଛି, ଓଡ଼ିଆ ଭାଷା ଶିକ୍ଷା ନିମନ୍ତେ ଇଚ୍ଛା ଏବଂ ଆଗ୍ରହ ଜନ୍ମିଅଛି । ମାତ୍ର ବିଭାଗୀୟ ସ୍ଥାନୀୟ ହାକିମମାନଙ୍କର ସହାନୁଭୂତି ନାହିଁ । ତେଣୁ ଓଡ଼ିଆ ଶିକ୍ଷାର ପ୍ରଚୁର କଷ୍ଟ ସାଧ୍ୟ ହେଉଅଛି । ଏଣେ ପୁଣି ସେଠା ଓଡ଼ିଆଙ୍କର ସେପରି ଧନବଳ ନାହିଁ । ସିଂହଭୂମିରେ ଓଡ଼ିଆ ଭାଷାର ଉଦ୍ଧାର ସମଗ୍ର ଓଡ଼ିଆ ଜାତିର କାର୍ଯ୍ୟ । ପଣ୍ଡିତ ଧରଣୀଧରଙ୍କ ପରି ସମସ୍ତେ ଯଥାସାଧ୍ୟ ସାହାଯ୍ୟ ନ କଲେ ଏ କାର୍ଯ୍ୟ ସିଦ୍ଧ ହେବା ଅସମ୍ଭବ ।

ସେଇ ତାରକରେ ଗୋପବନ୍ଧୁ ପୁଣି ଲେଖିଥିଲେ—ଚାଇଁବସା ଜିଲ୍ଲା ସ୍କୁଲର ମ୍ୟାନେଜିଂ କମିଟି ସେ ସ୍କୁଲରୁ ଓଡ଼ିଆ ଶିକ୍ଷା ବ୍ୟବସ୍ଥା ଉଠାଇଦେବା ପ୍ରସ୍ତାବ କରିଛନ୍ତି । କମିଟି କହନ୍ତି, ଚାଇଁବସା ଜିଲ୍ଲା ସ୍କୁଲରେ ଓଡ଼ିଆ ପଢ଼ୁଥିବା ଛାତ୍ର ସଂଖ୍ୟା କମ୍, ମଫସଲରେ ଓଡ଼ିଆ ପ୍ରାଇମେରୀ ସ୍କୁଲ ନ ବସିବାଯାଏ ଜିଲ୍ଲା ସ୍କୁଲରେ ଓଡ଼ିଆ ଛାତ୍ର ସଂଖ୍ୟା ବଢ଼ିବା ଅସମ୍ଭବ । ସୁତରାଂ ମଫସଲରେ ପ୍ରାଇମେରୀ ଓଡ଼ିଆ ସ୍କୁଲ ନ ବସିବାଯାଏ ଜିଲ୍ଲା ସ୍କୁଲରେ ଓଡ଼ିଆପଢ଼ା ଲାଗି କୌଣସି ବ୍ୟବସ୍ଥା ରଖିବା ଅନାବଶ୍ୟକ । ସିଂହଭୂମି ଜିଲାର ମଫସଲରେ ଓଡ଼ିଆ ପ୍ରାଇମେରୀ ଏବଂ ମିଡିଲ ସ୍କୁଲମାନ ଶୀଘ୍ର ବସିବା ପ୍ରୟୋଜନ । ତାହା ହେଲେ ଜିଲ୍ଲା ସ୍କୁଲରେ ଓଡ଼ିଆ ପଢ଼ିବା ଛାତ୍ର ସଂଖ୍ୟା ବଢ଼ିବ, ଏହା ନିଶ୍ଚୟ । କିନ୍ତୁ ଏହା ବୋଲି ବର୍ତ୍ତମାନ ସେଠାରୁ ଓଡ଼ିଆପଢ଼ା ଏକାବେଳେକେ ଉଠାଇଦେବା କଦାପି ଉଚିତ ନୁହେଁ । ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ପ୍ରମୁଖ ସିଂହଭୂମିର ଓଡ଼ିଆମାନଙ୍କ ଆବେଦନ ଏବଂ ନିବେଦନ ଅନୁସାରେ ୧୯୧୫ ସାଲ ଜୁନ ମାସରେ ସେଠା ଜିଲ୍ଲା ସ୍କୁଲରେ ସର୍ବପ୍ରଥମେ ଓଡ଼ିଆ ଶିକ୍ଷାର ବନ୍ଦୋବସ୍ତ ହୁଏ । ସେତେବେଳେ ବାରଜଣ ମାତ୍ର ଓଡ଼ିଆ ପଢ଼ା ଆରମ୍ଭ କରିଥିଲେ । ବର୍ତ୍ତମାନ ଚାଇଁବସା ସ୍କୁଲରେ ୩୫ ଜଣ ଛାତ୍ର ଓଡ଼ିଆ ପଢ଼ୁଛନ୍ତି । ଏହି ଚାରି ବର୍ଷ ମଧ୍ୟରେ କେତେ ଜଣ ଛାତ୍ର ଓଡ଼ିଆରେ ମାଟ୍ରିକ୍ୟୁଲେଶନ ପାଶ୍ କରି ଗଲେଣି । ଦିନକୁ ଦିନ ଓଡ଼ିଆ ଛାତ୍ର ସଂଖ୍ୟା ବଢ଼ୁଛି । ତଥାପି ଅନେକ ଛାତ୍ର ଜାତିରେ ଓଡ଼ିଆ, ଘରେ ଓଡ଼ିଆ କହନ୍ତି, ମାତ୍ର ପ୍ରାଇମେରୀ ଓ ମିଡିଲ ସ୍କୁଲମାନଙ୍କରେ ବାଧ୍ୟ ହୋଇ ବଙ୍ଗଳା ଓ ହିନ୍ଦି ପଢ଼ି ଆସିଥିବା ହେତୁ ହାଇସ୍କୁଲରେ ନୂଆ ଓଡ଼ିଆପଢ଼ା ଆରମ୍ଭ କରିବାକୁ ସାହସୀ ହୁଅନ୍ତି ନାହିଁ । ମଫସଲ ସ୍କୁଲରେ ଓଡ଼ିଆ ଶିକ୍ଷା ଚଳିଲେ ଜିଲ୍ଲା ସ୍କୁଲରେ ସଂଖ୍ୟା ଆହୁରି ବଢ଼ିବ ।

ଇତିମଧ୍ୟରେ ଖରସୁଆଁ ଓ ସରେଇକଳା ରାଜ୍ୟମାନଙ୍କରେ ସ୍କୁଲ ଓ କଚେରୀରେ କେବଳ ଓଡ଼ିଆ ଜାରି ହୋଇଥିବାରୁ ସେଠାରୁ ଯେଉଁ ଛାତ୍ରମାନେ ଚାଇଁବସା ଜିଲା ସ୍କୁଲକୁ ଆସୁଛନ୍ତି, ସେମାନେ ମୂଳରୁ ଓଡ଼ିଆ ପଢ଼ୁଛନ୍ତି । ଏ ଅବସ୍ଥାରେ ଜିଲ୍ଲା ସ୍କୁଲରୁ ଓଡ଼ିଆ ଉଠିଗଲେ ଅନେକ ଓଡ଼ିଆ ଛାତ୍ରଙ୍କର ଅସୁବିଧା ହେବ । ବିଶେଷତଃ ବର୍ତ୍ତମାନ ଯେଉଁମାନେ ସେଠାରେ ଓଡ଼ିଆ ପଢ଼ୁଛନ୍ତି, ସେମାନଙ୍କ ଦଶା କଅଣ ହେବ ? ଅନ୍ତତଃ

ସେମାନଙ୍କର ମାଟ୍ରିକ୍ୟୁଲେସନ ପରୀକ୍ଷା ପର୍ଯ୍ୟନ୍ତ ଓଡ଼ିଆ ଶିକ୍ଷାର ବ୍ୟବସ୍ଥା ରହିବା ତ ସର୍ବଥା ଉଚିତ ଏବଂ ଆବଶ୍ୟକ । ଇତି ମଧ୍ୟରେ ମଫସଲରେ ଓଡ଼ିଆ ପ୍ରାଇମେରୀ ଓ ମିଡ଼ିଲ ସ୍କୁଲମାନ ବସିଲେ ଚେଣ୍ଣିକ୍ର ଓଡ଼ିଆ ପଢ଼ିବା ଛାତ୍ର କ୍ରମାଗତ ଅଧିକ ସଂଖ୍ୟାରେ ଜିଲ୍ଲା ସ୍କୁଲରେ ଭର୍ତ୍ତି ହେବେ । ଓଡ଼ିଆ ପ୍ରାଇମେରୀ ସ୍କୁଲ ନିମନ୍ତେ ସିଂହଭୂମିର ଓଡ଼ିଆମାନେ କର୍ତ୍ତୃପକ୍ଷଙ୍କଠାରେ ବାରମ୍ବାର ଆବେଦନ କରିଛନ୍ତି । ଓଡ଼ିଆ ଅଞ୍ଚଳରେ ଓଡ଼ିଆ ପ୍ରାଇମେରୀ ସ୍କୁଲମାନ ଆଗରୁ ବସିଥିଲେ ଜିଲ୍ଲା ସ୍କୁଲରେ ଓଡ଼ିଆ ଛାତ୍ର ସଂଖ୍ୟା ଆଜି ଆହୁରି ଅଧିକ ହୋଇଥାଆନ୍ତା । ଅତଏବ ଆମ୍ଭମାନଙ୍କ ମତରେ ଜିଲ୍ଲା ସ୍କୁଲରୁ ଓଡ଼ିଆ ଛାତ୍ର ନ ଉଠାଇ ସଙ୍ଗେ ସଙ୍ଗେ ମଫସଲରେ ଓଡ଼ିଆ ପ୍ରାଇମେରୀ ଏବଂ ମଧ୍ୟ ସ୍କୁଲମାନ ବସାଇବା ସଙ୍ଗତ । ନ ହେଲେ ପ୍ରାଇ-ମେରୀ ସ୍କୁଲରେ ଓଡ଼ିଆ ଶିକ୍ଷା ନାହିଁ ବୋଲି ଜିଲ୍ଲା ସ୍କୁଲରୁ ଆଗେ ଓଡ଼ିଆ ଉଠାଇ ଦିଆଯାଇ ପରେ ପ୍ରାଇମେରୀ ସ୍କୁଲ ବସିବା ବେଳକୁ ଯେବେ କୁହାଯାଏ ଯେ କଲେଜରେ ଓଡ଼ିଆ ଚଳେ ନାହିଁ, କିମ୍ବା ହାଇସ୍କୁଲରେ ଓଡ଼ିଆ ଶିକ୍ଷାର ବନ୍ଦୋବସ୍ତ ନାହିଁ, ସୁତରାଂ ଓଡ଼ିଆ ପ୍ରାଥମିକ ଶିକ୍ଷାର କିଛି ପ୍ରୟୋଜନ ନାହିଁ, ତାହାହେଲେ "ଓଡ଼ିଆ ଅତୋଭ୍ରଷ୍ଟ ତତୋଭ୍ରଷ୍ଟ" । ସିଂହଭୂମିରେ ଓଡ଼ିଆ ପ୍ରତି ଆଜିଯାଏ ଯେ ବ୍ୟବହାର ହୋଇ ଆସିଛି, ସେଥିରେ ଏପରି ଆଶଙ୍କା ଅମୂଳକ ବା ଅସଙ୍ଗତ ନୁହେଁ । ମ୍ୟାନେଜିଙ୍ଗ୍ କମିଟି ବୋଧହୁଏ ତାଙ୍କ ପ୍ରସ୍ତାବ ଶିକ୍ଷା ବିଭାଗର ଡିରେକ୍ଟରଙ୍କଠାକୁ ପଠାଇଥିବେ । ଆମ୍ଭେମାନେ ଆଶାକରୁଁ, ବିଚକ୍ଷଣ ଫକ୍ସ ସାହେବ ଏଥିରୁ ସିଙ୍ଘଭୂମିରେ ଓଡ଼ିଆ ପ୍ରାଇମେରୀ ଶିକ୍ଷାର ଆବଶ୍ୟକତା ଉତ୍ତମରୂପେ ବୁଝି ପାରିବେ ଏବଂ ଜିଲ୍ଲା ବିଦ୍ୟାଳୟରୁ ଓଡ଼ିଆଶିକ୍ଷା ନଉଠାଇ ମଫସଲର ଓଡ଼ିଆ ଅଞ୍ଚଳମାନଙ୍କରେ ଓଡ଼ିଆ ପ୍ରାଥମିକ ଓ ମଧ୍ୟମ ବିଦ୍ୟାଳୟମାନ ବସାଇବାର ବିହିତ ବିଚାର କରିବେ ।

'ସମାଜ'ର ୨୫-୧୦-୧୯୧୯ ତାରିଖ କାଗଜରେ 'ସିଂହଭୂମି ଓଡ଼ିଆ ଶିକ୍ଷା ସମସ୍ୟା' ଶୀର୍ଷକ ଦେଇ ଲେଖିଥିଲେ—ପୂର୍ବବର୍ଷ ହେଲା ସିଂହ-ଭୂମିର ଚାଇଁବସା ଜିଲ୍ଲା ବିଦ୍ୟାଳୟରେ ଓଡ଼ିଆ ଶିକ୍ଷା ନିମନ୍ତେ ଜଣେ ଓଡ଼ିଆ ପଣ୍ଡିତ ଏବଂ ଜଣେ ଓଡ଼ିଆ ଇଂରେଜି ଶିକ୍ଷକ ନିଯୁକ୍ତ ଅଛନ୍ତି । ଇଂରେଜି

ଶିକ୍ଷକ ଏ ବର୍ଷ ଟ୍ରେନିଂ କଲେଜକୁ ଯିବାରୁ ତାଙ୍କ ସ୍ଥାନରେ ଓଡ଼ିଆ ପରିବର୍ତ୍ତରେ ଜଣେ ବଙ୍ଗାଳି ଶିକ୍ଷକ ରଖାଗଲେ । ଏ ବିଷୟରେ ଯଥା ସମୟରେ ସମ୍ବାଦ ପତ୍ରରେ ଆପତ୍ତି ଉଠିଥିଲା । ସିଂହଭୂମି ଉତ୍କଳ ସଭା ମଧ୍ୟ ଓଡ଼ିଆ ଶିକ୍ଷକ ରଖାଇବା ଲାଗି ନିର୍ଦ୍ଧାରଣ କରି ଶିକ୍ଷା ବିଭାଗର କର୍ତ୍ତା-ମାନଙ୍କଠାରୁ ଏବଂ ଜିଲ୍ଲାର ଡେପୁଟି କମିଶନରଙ୍କ ଠାକୁ ପଠାଇଥିଲେ । ସେଥିରେ ବିଶେଷ କିଛି ଫଳ ହେବାର ଦେଖାଗଲା ନାହିଁ । ପରେ ଲାଟ୍ ସାହେବଙ୍କ ସଭାରେ ଏ ପ୍ରସଙ୍ଗରେ ପ୍ରଶ୍ନ ଉଠିବାରୁ ଉତ୍ତର ମିଳିଲା ଯେ, ଜଣେ ଓଡ଼ିଆ ଶିକ୍ଷକ ନିଯୁକ୍ତି ଲାଗି ଇନ୍‌ସପେକ୍ଟରଙ୍କୁ ଆଦେଶ ଦିଆଯାଇଛି ।

ଚୃଇଁବସା ସ୍କୁଲରେ ଓଡ଼ିଆ ଶିକ୍ଷକ ଆବଶ୍ୟକ ବୋଲି ଜାଣି କେତେ ଜଣ ଓଡ଼ିଆ ଦରଖାସ୍ତ ଦେଇଥିଲେ । ଉପରୁ ଆଦେଶ ପାଇ ଇନ୍‌ସପେକ୍ଟର ସେମାନଙ୍କ ମଧ୍ୟରୁ ଜଣେ କାହାକୁ ମନୋନୀତ କରିଥିଲେ । ମାତ୍ର ସେ ଏ ପର୍ଯ୍ୟନ୍ତ କାର୍ଯ୍ୟରେ ଯୋଗ ଦେଇ ନାହାନ୍ତି । ଶୁଣାଯାଏ, ସେ ଯିବାକୁ ନାରାଜ । ତାହାହେଲେ ଶୀଘ୍ର ଅନ୍ୟ ଓଡ଼ିଆ ପ୍ରାର୍ଥୀଙ୍କି ନିଯୁକ୍ତ କରିବା ଆବଶ୍ୟକ । ନହେଲେ ଓଡ଼ିଶା ବିଭାଗର ଇନ୍‌ସପେକ୍ଟରଙ୍କୁ ଲେଖିଲେ ସେ'ଅଞ୍ଚଳ ସତ୍ତ୍ୱର ଜଣେ ଉପଯୁକ୍ତ ଶିକ୍ଷକ ପଠାଇ ଦେଇ ପାରନ୍ତେ । ଏହିପରି କିଛି ନ କରି ଓଡ଼ିଆ ଶିକ୍ଷକ କେହି ମିଳିଲେ ନାହିଁ ବୋଲି କହି ନିଜକଥା ବଜାଏ ରଖିବା ଲାଗି ଇନ୍‌ସପେକ୍ଟର ଯେବେ ସଙ୍ଗେ ସଙ୍ଗେ ଜଣେ ବଙ୍ଗାଳି ବା ଓଡ଼ିଆ ନ ଜାଣିଥିବା ଅନ୍ୟ କୌଣସି ଶିକ୍ଷକ ନିଯୁକ୍ତ କରି ଦିଅନ୍ତି, ତାହାହେଲେ ଚୃଇଁବସା ବିଦ୍ୟାଳୟର ଓଡ଼ିଆ ପିଲାମାନଙ୍କର ସର୍ବନାଶ !

ଏବେ ତିନି ଚାରି ମାସ ହେଲା ଅନୁବାଦ ପ୍ରଭୃତି କେତେକ ବିଷୟ ଓଡ଼ିଆ ପିଲାମାନଙ୍କର ଆଦୌ ପଢ଼ା ହେଉ ନାହିଁ । ଏହିପରି କ୍ରମାଗତ ଓଡ଼ିଆ ପଢ଼ାରେ ଅସୁବିଧା ଘଟିଲେ ଭବିଷ୍ୟତରେ ହୁଏତ କୌଣସି ଓଡ଼ିଆ ପିଲା ଆଉ ଓଡ଼ିଆ ନେବେ ନାହିଁ । ଫଳରେ ଚୃଇଁବସା ବିଦ୍ୟାଳୟରୁ ଓଡ଼ିଆ ଉଠିଯିବ । ଏହାକୁ କହନ୍ତି, ହାତରେ ନ ମାରି ଭାତରେ ମାରିବା । ଏହା କରି ପାରିଲେ ହେଡ୍‌ମାଷ୍ଟର ଏବଂ ଡେପୁଟି ଇନ୍‌ସପେକ୍ଟରଙ୍କ ମନୋରଥ ସିଦ୍ଧି ହେବ । ଇନ୍‌ସପେକ୍ଟର କୃତାର୍ଥ ହେବେ ଏବଂ ଡେପୁଟି କମିଶନର ସ୍କଟ ସାହେବ ସନ୍ତୁଷ୍ଟ ହେବେ । ଆମ୍ଭେମାନେ ବର୍ତ୍ତମାନ ଠାରୁ,

ଏବେ ପିଲାମାନଙ୍କର ୩।୪ ମାସ କାଳ ପଢ଼ାରେ ଯେ କ୍ଷତି ହେଲା, ସେଥି-ଲାଗି ଦାୟୀ କିଏ ? ଓଡ଼ିଆ ଇଂରେଜୀ ଶିକ୍ଷକ ନିଯୁକ୍ତ ହୋଇଥିବା ସ୍ଥଳେ ସେ ସ୍ଥାନରେ ସଙ୍ଗେ ସଙ୍ଗେ ଜଣେ ଓଡ଼ିଆ ନ ରଖି ବ୍ୟବସ୍ଥାପକ ସଭାରେ ଏ ପ୍ରସଙ୍ଗ ଉଠିବା ଯାଏ ଇନ୍‌ସପେକ୍‌ଟରେ ନିଜ ଖିଆଲ ଅନୁସାରେ କାମ କରିବାଦ୍ୱାରା ବିଚରା ପିଲାମାନଙ୍କର ଏତେ ଦିନ ଯେ ଅନିଷ୍ଟ ଘଟିଲା, ତହିଁର ପ୍ରତିକାର କ'ଣ ? ଏହି କାରଣରୁ କେହି ପିଲା ଆଗାମୀ ବାର୍ଷିକ ପରୀକ୍ଷାରେ ଯେବେ କ୍ଲାସ ଉଠି ନପାରେ, ତାହାର ଯେ କ୍ଷତି ସମ୍ଭବ କିଏ ? ବଡ଼ ଲୋକଙ୍କ ଖିଆଲରେ ଗରିବଙ୍କର ସର୍ବନାଶ ! ସାମାନ୍ୟ ଶିକ୍ଷକ ଜଣକର ନିଯୁକ୍ତି ବିଷୟରେ ଓଡ଼ିଆମାନଙ୍କୁ ଯେବେ ବ୍ୟବସ୍ଥାପକ ସଭା ପର୍ଯ୍ୟନ୍ତ ଯିବାକୁ ପଡ଼େ, ତେବେ ସେମାନଙ୍କର ଉନ୍ନତିର ଆଶା ଆଉ କେଉଁଠାରେ ? ଏତ ଗଲା ଇନ୍‌ସପେକ୍‌ଟର ସାହେବଙ୍କ କ୍ରିୟା । ଏହି ଓଡ଼ିଆ ଶିକ୍ଷକ ନିଯୁକ୍ତି ପ୍ରସଙ୍ଗରେ ଡେପୁଟି କମିଶନର ସ୍କଟ ସାହେବ କି ଭାବ ଓ ମତ ପ୍ରକାଶ କରିଥିଲେ, ସିଂହଭୂମିର ଓଡ଼ିଆ ଶିକ୍ଷା ସମସ୍ୟା ଏହାପରି ଗୁରୁତର ହୋଇଥିବା ସ୍ଥଳେ ଓଡ଼ିଆ ଶିକ୍ଷିତ ଯୁବକ କେହି ନିଯୁକ୍ତ ହୋଇ ନପିବା ଅତ୍ୟନ୍ତ ଆକ୍ଷେପର ବିଷୟ ।

'ସିଂହଭୂମି ଶିକ୍ଷା ସମାଚାର' ଶୀର୍ଷକ ଏକ ଲେଖାର ୮-୧୧-୧୯୧୯ ତାରିକରେ ଲେଖିଥିଲେ-ସିଂହଭୂମିର ଡେପୁଟି କମିଶନର ଚାଇଁବସା ଜିଲ୍ଲା ସ୍କୁଲରେ ଓଡିଆ ରଖିବାର ପକ୍ଷପାତୀ ନ ଥିବାପରି ଜଣାଯାଏ । ସେ ଉକ୍ତ ସ୍କୁଲ ମ୍ୟାନେଜିଂ କମିଟିର ପ୍ରେସିଡେଣ୍ଟ । ମ୍ୟାନେଜିଂ କମିଟି ଜିଲା ସ୍କୁଲରେ ଓଡ଼ିଆ ଶିକ୍ଷା ବିଷୟରେ ଯେ ମତ ଦେଇଛନ୍ତି ତାହା ଇତିପୂର୍ବେ ପାଠକ-ମାନଙ୍କୁ ଜଣାଇଅଛୁ । ଡେପୁଟି ଇନ୍‌ସପେକ୍ଟର ଓ ସ୍କୁଲ ହେଡ଼ମାଷ୍ଟରଙ୍କର ଭାବ ମଧ୍ୟ ସାଧାରଣ ଅବଗତ ଅଛନ୍ତି । ସ୍କୁଲ ଇନ୍‌ସପେକ୍ଟର ଓଡିଆ ମାଷ୍ଟର ରଖିବାର ପକ୍ଷପାତୀ ନୁହନ୍ତି । ଡେପୁଟୀ କମିଶନର କହନ୍ତି, ଚାଇଁ-ବସା ଜିଲ୍ଲା ସ୍କୁଲରେ ଓଡିଆ ପଢୁଥିବା ୩୫ ଜଣ ପିଲାଙ୍କ ମଧ୍ୟରୁ ୫ ଜଣ କେବଳ ସିଂହଭୂମି ଜିଲ୍ଲାର । ବାକି ୩୦ ଜଣ ଦେଶୀୟ ରାଜ୍ୟର ଏବଂ ଓଡ଼ିଶାର । ଏ ବାହାର ପିଲାଙ୍କ ଲାଗି ସିଂହଭୂମି ଶିକ୍ଷା ପରିବର୍ତ୍ତନ କିମ୍ବା କୌଣସି ସ୍ୱତନ୍ତ୍ର ବନ୍ଦୋବସ୍ତ କରାଯାଇ ନ ପାରେ । ଡେପୁଟି କମିଶନର ଯେ ହିସାବ ଧରିଛନ୍ତି, ତାହା ଠିକ୍ ନୁହେଁ । ଠିକ୍ ବୋଲି ମାନିଲେ ସୁଦ୍ଧା

ଗୃହିଁବସା ଜିଲ୍ଲା ସ୍କୁଲରେ ଓଡ଼ିଆ ଶିକ୍ଷାର ବନ୍ଦୋବସ୍ତ କରା ନ ଯିବା ପକ୍ଷେ ତାହା କାରଣ ନୁହେଁ । ସିଂହଭୂମି ଜିଲ୍ଲାର ଭିତରୁ ବା ବାହାରର ଭିତରୁ, ଯେଉଁ ଛାତ୍ରମାନେ ଗୃହିଁବସା ଜିଲ୍ଲା ସ୍କୁଲରେ ଓଡ଼ିଆ ନେଇଛନ୍ତି ଏବଂ କ୍ରମାଗତ କେତେ ବର୍ଷ ହେଲା ଓଡ଼ିଆ ପଢ଼ି ଆସୁଛନ୍ତି, ସେମାନଙ୍କ ଲାଗି ଓଡ଼ିଆ ଶିକ୍ଷକ ନିଯୁକ୍ତ ନ କରିବା ସିଂହଭୂମି ଶିକ୍ଷାର ପରିବର୍ତ୍ତନ ହେଲା ସିନା, ମାତ୍ର ସମ୍ବଲପୁର, ପୁରୀ ପ୍ରଭୃତି ଜିଲା ସ୍କୁଲମାନଙ୍କରେ ସେ ଜିଲ୍ଲାବାସୀ ବଙ୍ଗାଳୀ ଏବଂ ମୁସଲମାନ ଛାତ୍ର କେତେ ଜଣ ? ତଥାପି ସେମାନଙ୍କ ଲାଗି ସ୍ୱତନ୍ତ୍ର ବଙ୍ଗଳା ଏବଂ ଉର୍ଦ୍ଦୁ ପଢ଼ାର ବ୍ୟବସ୍ଥା ରହିଅଛି; କିନ୍ତୁ ଗୃହିଁବସା ସ୍କୁଲରେ ଓଡ଼ିଆ ପିଲାମାନଙ୍କର ଶିକ୍ଷାଲାଗି ଯେ ବ୍ୟବସ୍ଥା ଏତେଦିନ ହେଲା ଚାଲିଆସିଛି, ତାକୁ ବଦଳାଇବାକୁ ଜିଲ୍ଲାର ହାକିମ ଆଜି ତିଆର । ସମ୍ଭବତଃ ଷଡ଼େଇକଳା, ଖରସୁଆଁର ପିଲାମାନଙ୍କୁ ଡେପୁଟି କମିଶନର ସିଂହଭୂମି ଜିଲା ପିଲା ବୋଲି ଧରି ନାହାନ୍ତି । ସେମାନେ କେଉଁ-ଠାକୁ ଯିବେ ? ଷଡ଼େଇକଳା ଖରସୁଆଁର ଇତିହାସ ଏବଂ ଭୂଗୋଳ ଅନୁସନ୍ଧାନ କରିଥିଲେ ଡେପୁଟି କମିଶନର ଏପରି କହି ନଥାନ୍ତେ । ବ୍ରିଟିଶ ଶାସିତ ଅଞ୍ଚଳ ସହିତ ସଂଲଗ୍ନ ଦେଶୀୟ ରାଜ୍ୟମାନଙ୍କ ସମ୍ପର୍କ ବିଷୟରେ ଆମ୍ଭେମାନେ ଇତିପୂର୍ବେ କହିଅଛୁଁ । ସିଂହଭୂମି ଜିଲା ଶାସନରୁ ଖରସୁଆଁ ଷଡ଼େଇକଳାର ଶାସନ ସ୍ୱତନ୍ତ୍ର ହେଲେ ସୁଦ୍ଧା ସକଳ ବିଷୟରେ ସେମାନଙ୍କର ସିଂହଭୂମି ସଙ୍ଗେ ଘନିଷ୍ଠ ସମ୍ବନ୍ଧ ରହିଅଛି । ଏହି ଦେଶୀୟ ରାଜ୍ୟର ପୂର୍ବ ରାଜାମାନଙ୍କ ସାହାଯ୍ୟ ସହଯୋଗିତାରେ ସିଂହଭୂମି ଜିଲାର ଇଂରେଜ ଶାସନ ସ୍ଥିର ହୋଇଅଛି । ଆଜି ସେହି ରାଜ୍ୟମାନଙ୍କୁ ଇଂରେଜ ଶାସନକର୍ତ୍ତା ଦୂର ଦୂର କରିବାକୁ ବସିଲେଣି । ଓଡ଼ିଶାରୁ କେହି କେହି ଛାତ୍ର ଗୃହିଁବସା ସ୍କୁଲରେ ପଢ଼ିଲେ ସେମାନଙ୍କର କଅଣ ଓଡ଼ିଆ ପଢ଼ିବା ଅଧିକାର ଲୋପପାଏ ? ଡେପୁଟି କମିଶନରଙ୍କୁ ଯେଉଁମାନେ ଏପରି ପରାମର୍ଶ ଦେଇଛନ୍ତି, ସେମାନେ ଭୁଲରେ ବୁଝାଇ ଅଛନ୍ତି । ସେମାନେ ତ ଭୁଲ ବୁଝାଇବେ, କିଛି ଆଶ୍ଚର୍ଯ୍ୟ ନାହିଁ, ମାତ୍ର ଜିଲା ହାକିମଙ୍କର ଓଡ଼ିଆ ପ୍ରତି ଏହିପରି ଭାବ ଥିଲାବେଳେ ଗୋଟାଏ ଦୁର୍ବଳ ସମାଜ ସିଂହଭୂମି ଜିଲ୍ଲାରେ ନିଜର ଅଧିକାର ଏବଂ ସତ୍ତ୍ୱ ପାଇଁ ମୁଣ୍ଡ ଟେକିବ କପରି ? ଓଡ଼ିଆ ସମ୍ବନ୍ଧେ ଯାହା ପ୍ରଶ୍ନ ପଡ଼ିବ, ସରକାରତ ସ୍ଥାନୀୟ କର୍ତ୍ତାମାନଙ୍କ ମତ ଲୋଡ଼ିବେ ଏବଂ

ତଦନୁସାରେ ଚଳବେ । ସ୍ଥାନୀୟ କର୍ତ୍ତାଙ୍କ ସ୍ୱତ୍ତ ଏହ୍ବପରି ସେ ପୁଣି ଯେଉଁ ନିମ୍ନସ୍ଥ କର୍ମଚାରୀମାନଙ୍କ ମତରେ ଚଳବେ, ସେମାନଙ୍କ ଗତିବିଧି ନାନା ଘଟନାରେ ଦେଖାଯାଉଅଛି ଏବଂ 'ସମାଜ' ସ୍ତମ୍ଭରେ ବର୍ଣ୍ଣିତ ହୋଇଅଛି । ସିଂହଭୂମି ଓଡ଼ିଆମାନଙ୍କର ଆପତ୍ତି ଏବଂ ଦୁଃଖ ଗୁହାରିର ସ୍ୱତନ୍ତ୍ର ଅନୁସନ୍ଧାନ କରାଯାଇ କୌଣସି ବିହିତ ପ୍ରତିକାର ନ ହେଲେ ଗୋଟାଏ ସମାଜର ଦାବୀ ପ୍ରତି ଅନ୍ୟାୟ କରାଯାଉଛି ବୋଲି କୁହାଯିବ ।

ସିଂହଭୂମି ଓଡ଼ିଆ ଶିକ୍ଷା ପ୍ରସଙ୍ଗ ଶୀର୍ଷକ ଲେଖାରେ 'ସମାଜ'ରେ ଲେଖିଥିଲେ—ସିଂହଭୂମିର ଓଡ଼ିଆମାନେ ମଫସଲରେ ନିଜ ନିଜ ଗାଁରେ ଓଡ଼ିଆ ବିଦ୍ୟାଳୟ କରିବା ନିମନ୍ତେ ଅତ୍ୟନ୍ତ ଇଚ୍ଛୁକ ଥିବା କଥା ଆମ୍ଭେମାନେ ବାରମ୍ବାର ଲେଖିଅଛୁଁ । ଶିକ୍ଷା ବିଭାଗର ହାକିମମାନେ ବାଧାଦେଇ ଏହା କରିଇ ଦେଇ ନାହାନ୍ତି । ଫଳରେ କେତେ ଗାଁରେ ଓଡ଼ିଆ ପଢ଼ା ଆରମ୍ଭ ହୋଇ ପରେ ଉଠିଯାଇଛି, ତଥାପି ଲୋକେ ଉଦ୍ୟମ ଛାଡ଼ିନାହାନ୍ତି । ଗଲା ସେପ୍ଟେମ୍ବର ମାସ ଲାଟସାହେବଙ୍କ ସଭାର ଗୋଟି ବୈଠକରେ ମାନ୍ୟବର ଗୋପବନ୍ଧୁ ଦାସ ପଚାରିଥିଲେ, "ସେମାନଙ୍କ ନିଜ ଗାଁରେ ଓଡ଼ିଆ ପ୍ରାଇମେରୀ ବିଦ୍ୟାଳୟ ବସାଇବା ଲାଗି ସିଂହଭୂମି ଜିଲାର ଭିନ୍ନ ଭିନ୍ନ ଅଞ୍ଚଳର ଓଡ଼ିଆମାନେ ଡେପୁଟି କମିଶନରଙ୍କଠାରେ ଦରଖାସ୍ତ କରିଥିବା କଥା ସତ କି ? ସତ ହେଲେ ଗଲା ଜୁଲାଇମାସ ଶେଷତକ ଏଭଳି କେତେ ଖଣ୍ଡ ଦରଖାସ୍ତ ହୋଇଅଛି ?" ସରକାର ତରଫରୁ ଏଥିର ଉତ୍ତର ମିଳିଲା 'ହଁ, ଏପରି ଦରଖାସ୍ତ ହୋଇଅଛି । ୧୯୧୯ ସାଲ ମାର୍ଚ୍ଚ ମାସ ୧୦ ତାରିଖ ସୁଦ୍ଧା ଏଭଳି ୮ ଖଣ୍ଡ ଦରଖାସ୍ତ ମିଳିଅଛି । ତା ପରେ ଆଉ କେତେ ଦରଖାସ୍ତ ଆସିଅଛି, ସରକାରଙ୍କଠାରେ ସେ ଖବର ପହଞ୍ଚି ନାହିଁ ।" ଆମ୍ଭେମାନେ ସମ୍ବାଦ ପାଇଅଛୁ, ମାର୍ଚ୍ଚ ପରେ ଏହିପରି ଅନେକ ଗୁଡ଼ିଏ ଦରଖାସ୍ତ ନାନା ସ୍ଥାନରୁ ଡେପୁଟି କମିଶନରଙ୍କଠାକୁ ଆସିଅଛି । ଏବେ ସୁଦ୍ଧା କୌଣସି କୌଣସି ଓଡ଼ିଆ ଗ୍ରାମରୁ ଏପରି ଦରଖାସ୍ତ ମଧ୍ୟ ହେଉଅଛି ।

ମାତ୍ର ଏ ଦରଖାସ୍ତ ଉପରେ କଣ କାର୍ଯ୍ୟ ହେଲା ଆମ୍ଭେମାନେ ଜାଣି ପାରି ନାହୁଁ । ସିଂହଭୂମିର ଓଡ଼ିଆମାନେ କେବଳ ଦରଖାସ୍ତ ଦେଇ

ନଷ୍ଟ କିନ୍ତୁ ନାହାନ୍ତି, ସେମାନଙ୍କ ମଧ୍ୟରୁ କେହି କେହି ନିଜ ଗାଁରେ ଓଡ଼ିଆ ପ୍ରାଇମେରୀ ସ୍କୁଲ ବସାଇଅଛନ୍ତି । ଗ୍ରାମବାସୀମାନେ କିଛି ସାହାଯ୍ୟ ଦେଉଛନ୍ତି, ଅବଶିଷ୍ଟ ସାହାଯ୍ୟ ସିଂହଭୂମି ଓଡ଼ିଆ ଶିକ୍ଷା ପାଣ୍ଠିରୁ ଦିଆ ହେଉଅଛି । ପୋଡ଼ାହାଟ ସର୍କଲରେ ଏପରି ଛଅଟି ସ୍କୁଲ ହୋଇଥିବା ବିଷୟ ଏଥିପୂର୍ବେ ପାଠକମାନଙ୍କୁ ଜଣାଇଅଛୁଁ । ସୁଖର କଥା, ସୋଣୁଆ ନିକଟବର୍ତ୍ତୀ "ଗୟୁଲମୁଣ୍ଡା" ଗ୍ରାମରେ ଏହି ମାସ ମଧ୍ୟରେ ଆଉ ଗୋଟିଏ ଓଡ଼ିଆ ପ୍ରାଇମେରୀ ବିଦ୍ୟାଳୟ ବସିଅଛି । ଏ ଗାଁରେ ଘର ସଂଖ୍ୟା ପଚିଶ ଉପରେ । ନିକଟରେ ଆଉ କେତେଗୁଡ଼ିଏ ଓଡ଼ିଆ ଗାଁ ଅଛି । ସେ ସମସ୍ତ ଗ୍ରାମର ବାସିନ୍ଦାମାନଙ୍କର ଓଡ଼ିଆ ପଢ଼ାପାଇଁ ଭାରି ଆଗ୍ରହ । ସେମାନଙ୍କ ମଧ୍ୟରୁ ଶ୍ରୀ ଭଗବାନ ପ୍ରଧାନ ପ୍ରଭୃତି କେତେ ଜଣ ମୁଖିଆ ଲୋକଙ୍କ ଅନୁରୋଧ ଅନୁସାରେ ପ୍ରଚାରକ ଶ୍ରୀ ଅନନ୍ତ ମିଶ୍ର ଏବଂ ଚକ୍ରଧରପୁରର ଶ୍ରୀ ଈଶ୍ୱରପ୍ରସାଦ ଷଡ଼ଙ୍ଗୀ ଗୟୁଲମୁଣ୍ଡା ଯାଇ ସ୍କୁଲ କାର୍ଯ୍ୟର ବନ୍ଦୋବସ୍ତ କରିଦେଇ ଆସିଅଛନ୍ତି । ହିନ୍ଦି ସ୍କୁଲରୁ ପିଲାଙ୍କୁ ଉଠାଇ ଆଣି ମାସେ ହେଲା ଏହି ଓଡ଼ିଆ ଗ୍ରାମବାସୀମାନେ ଜଣେ ଓଡ଼ିଆ ଜାଣିଥିବା ଲୋକଙ୍କୁ ରଖାଇ ଓଡ଼ିଆ ପଢ଼ାଉଛନ୍ତି । ଶିକ୍ଷକଙ୍କୁ ଖାଇବାକୁ ଦେଇ ଆଉ ୨।୩ ଟଙ୍କା ମାତ୍ର ଦେଇ ପାରିବା ସେମାନଙ୍କର ବଳ । ମାତ୍ର ସେଥିରେ ଶିକ୍ଷକଙ୍କର କୁଳାଏ ଚଳୁ ନାହିଁ । ତେଣୁ ସେମାନେ ଓଡ଼ିଆ ଶିକ୍ଷା ପାଣ୍ଠିରୁ ସାହାଯ୍ୟ ପ୍ରାର୍ଥନା କରିଛନ୍ତି । ପ୍ରତି ସ୍କୁଲକୁ ଦ୍ୱିଗୁଣ ଅଧିକେ ଓଡ଼ିଆ ଶିକ୍ଷା ପାଣ୍ଠିରୁ ସାହାଯ୍ୟ ଦେବାକୁ ପଡୁଛି । ଜିଲ୍ଲାର କେତେକ ସ୍ଥାନରେ ଓଡ଼ିଆମାନେ ଓଡ଼ିଆ ଶିକ୍ଷା ନିମନ୍ତେ ଯଥାର୍ଥରେ ବ୍ୟାକୁଳ ଥିବା ଇତି ମଧ୍ୟରେ ତେଜପୁଟି କମିଶନର ବୁଝି ପାରି ଅଛନ୍ତି ବୋଲି ଆମ୍ଭମାନଙ୍କର ବିଶ୍ୱାସ । ଆମ୍ଭେମାନେ ଆଶାକରୁଁ, ଆଗାମୀ ବର୍ଷ ବଜେଟରେ ଏହି ସବୁ ବିଦ୍ୟାଳୟର ସାହାଯ୍ୟ ନିମନ୍ତେ ସେ ବିହିତ ବନ୍ଦୋବସ୍ତ କରିବେ ।

'ସିଂହଭୂମି ସମାଚାର' ଶୀର୍ଷକ ଏକ ଲେଖାରେ 'ସମାଜ'ର ୧।୫।୧୯୨୦ ତାରିଖରେ ଲେଖିଥିଲେ—ଯୋଡ଼ା ପୋଖରୀ ଗୁରୁ ଟ୍ରେନିଂ ସ୍କୁଲର ତୃତୀୟ ଶିକ୍ଷକ ସେଠା ହେଡ୍ ପଣ୍ଡିତ ଏବଂ ଜିଲ୍ଲାର ଶିକ୍ଷା ବିଭାଗୀୟ ଇନସ୍‌ପେକ୍ଟରଙ୍କ ବିରୁଦ୍ଧରେ ଦରଖାସ୍ତ କରିବାରୁ ଛୋଟନାଗପୁରର

ଇନସ୍‌ପେକଟ୍‌ର ସାହେବ ମହୋଦୟ ମାର୍ଚ୍ଚ ମାସ ୩୦ ତାରିଖଠାରୁ କ୍ରମାଗତ ୩ ଦିନ ପର୍ଯ୍ୟନ୍ତ ତଦନ୍ତ କରି ଯାଇଅଛନ୍ତି । ଫଳ କିଛି ଜଣା ପଡୁନାହିଁ । ହେଡ଼ ପଣ୍ଡିତ ବାବୁ ବିହାରୀ ରାମ ଥରେ ଜେଲ ଯାଇଥିଲେ । ମାତ୍ର ଡେପୁଟି ଇନସ୍‌ପେକ୍‌ଟର ତାଙ୍କୁ କାମ ଦେଇଛନ୍ତି । ସେହି ସ୍କୁଲର ଦ୍ୱିତୀୟ ଶିକ୍ଷକ ପାଶ୍ ନ କରି ସୁଦ୍ଧା କାର୍ଯ୍ୟରେ ନିଯୁକ୍ତ ହୋଇଛନ୍ତି । ଏହା ଜିଲା ଇନସ୍‌ପେକ୍‌ଟରଙ୍କର ବିଚକ୍ଷଣତାର ପ୍ରମାଣ । ଏହି ଶିକ୍ଷକ ମାନେ ଯେ କି ବଳରେ ଜିଲା ଇନସ୍‌ପେକ୍‌ଟରଙ୍କ ଠାରୁ ଅଭୟ ପାଇ ଏତେ ଦିନ ଥିଲେ, ତାହା ସହଜରେ ଅନୁମାନ କରାଯାଇପାରେ । ଆପତ୍ତିକାରୀ ମଧ୍ୟ ଜିଲା ଇନସ୍‌ପେକ୍‌ଟରଙ୍କ ଘୁଷ୍ ନେବା କଥା ଦରଖାସ୍ତରେ ଉଲ୍ଲେଖ କରିଥିଲେ । ଅବଶ୍ୟ ଉପସ୍ଥିତ ଘଟନାରେ ଏକଥା ପ୍ରମାଣିତ ହେବା ସହଜ ନୁହେଁ । ଫଳ କଅଣ ହେଲା, ଜଣା ପଡୁନାହିଁ, ମାତ୍ର ଜିଲା ଇନସ୍‌ପେକ୍‌ଟର ବାବୁ ପରେଶ ନାଥ ଘୋଷ ସିଂହଭୂମିରେ ବହୁତ ଦିନ ରହିଲେଣି । ତାଙ୍କ ବ୍ୟବହାରରେ ଲୋକେ ବଡ଼ ସନ୍ତୁଷ୍ଟ ଥିବା ପରି ଜଣା ଯାଏନାହିଁ । ଆମ୍ଭମାନଙ୍କ ମତରେ ତାଙ୍କୁ ଆଉ ଅଧିକ ଦିନ ସେ ଜିଲାରେ ରଖିବା ଉଚିତ ନୁହେଁ । ଆମ୍ଭେମାନେ ବାରମ୍ବାର କହିଅଛୁ, ଆଦିମବାସୀ 'ହୋ'ମାନଙ୍କୁ ଛାଡିଦେଲେ ସମଗ୍ର ସିଂହଭୂମି ଜିଲାରେ ବଙ୍ଗାଳୀ ଏବଂ ହିନ୍ଦି ଲୋକଙ୍କଠାରୁ ଓଡିଆଙ୍କ ସଂଖ୍ୟା ବହୁତ ଅଧିକ । ଏଥି ମଧ୍ୟରେ ଅନେକଗୁଡିଏ ଓଡ଼ିଆ ସ୍କୁଲ ହେଲଣି ଏବଂ କ୍ରମେ ଆହୁରି କେତେ ହେବ । ଓଡିଆ ଗ୍ରାମମାନଙ୍କରେ ଓଡିଆ ପ୍ରାଇମେରୀ ସ୍କୁଲ ହେବାଲାଗି ସରକାର ମଧ୍ୟ କହି ଅଛନ୍ତି । ଏହି ସବୁ କାରଣରୁ ଆମ୍ଭେମାନେ କହୁ, ସେ ଜିଲାକୁ ବର୍ତ୍ତମାନ ଜଣେ ଓଡ଼ିଆ ଡେପୁଟି ଇନସ୍‌ପେକ୍‌ଟର ଯିବା ଉଚିତ । ଯେ କେହି ଓଡ଼ିଆ ଡେପୁଟି ଇନସ୍‌ପେକ୍‌ଟର ବଙ୍ଗଳା, ହିନ୍ଦି ସ୍କୁଲର ପରିଦର୍ଶନ କାର୍ଯ୍ୟ ଚଳାଇପାରିବେ । ଅଳ୍ପଦିନ ଚେଷ୍ଟା କଲେ ସେ ମଧ୍ୟ ହୋ ଭାଷା ଶିଖିପାରିବେ । ସ୍କୁଲ ପ୍ରଚଳିତ ହିନ୍ଦି, ବଙ୍ଗଳା, ଓଡିଆ ତିନି ଭାଷା ମଧ୍ୟରେ ଓଡ଼ିଆ ଭାଷୀ ଲୋକଙ୍କ ସଂଖ୍ୟା ଯେତେବେଳେ ଅଧିକ ଏବଂ ଓଡ଼ିଆ ସ୍କୁଲ ବର୍ତ୍ତମାନ ବିଭିନ୍ନ ସ୍ଥାନରେ ବସାଇବାର ଆୟୋଜନ ହେଉଅଛି, ଓଡ଼ିଆ କାହାରିକୁ ଡେପୁଟି ଇନସ୍‌ପେକ୍‌ଟର କରିବା ଉଚିତ ଏବଂ ବାଞ୍ଛନୀୟ ।

ଏଇ ସବୁ ଲେଖାରୁ ଜଣାପଡୁଚି, ଗୋପବନ୍ଧୁଙ୍କ ଆନ୍ତରିକ ଭାବରେ

ସିଂହଭୂମ୍‌ରେ ଓଡ଼ିଆ ଶିକ୍ଷାର ପ୍ରଚାର ଓ ପ୍ରସାର ଦିଗରେ ଦିନରାତି ସର୍ବଦା ଆଜି ସଜାଗ ହୋଇ ରହିଥିଲେ ।

ପୁରୀ ଜିଲାରେ ଜନ୍ମ ହୋଇ ସେ ତାଙ୍କ ନିଜ ଗାଁ ଲୋକଙ୍କ ପାଇଁ ଯେତେ ଭାବି ନଥିଲେ, ହୁଏତ ତାଠୁ ବେଶୀ ଭାବିଥିଲେ ସିଂହଭୂମ୍, ଧଳ-ଭୂମ୍ ଲୋକଙ୍କ କଥା । ରାସ୍ତା-ଘାଟ, ନଈ-ନାଳ, ପାହାଡ଼-ପ୍ରାନ୍ତରଠୁ ଆରମ୍ଭ କରି ବ୍ୟକ୍ତି ବିଶେଷଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସମ୍ବନ୍ଧରେ ସେ ବିସ୍ତାରିତ ଭାବରେ ଲେଖିଛନ୍ତି । ସେମାନଙ୍କ ଦୁଃଖ କଷ୍ଟରେ ଭାଗୀ ହେଲାପରି ମର୍ମାନ୍ତିକ ବ୍ୟଥାରେ ଅସ୍ଥିର ହୋଇଛନ୍ତି । ଓଡ଼ିଆ ଅଧିବାସୀଙ୍କ ଦୁଃଖ-ମୋଚନ ପାଇଁ ପ୍ରାଣପଣେ ଚେଷ୍ଟା କରିବାକୁ ପାଇଁ ସେ କୋଉଠି ସରକାରଙ୍କ ସାଙ୍ଗରେ ଲଢ଼ିଛନ୍ତି ତ କୋଉଠି ସାରା ଓଡ଼ିଶାର ଘର ଘରେ ଭିକ୍ଷା ଝୁଲି ଧରି ପଇସା-ଟିଏ ଲେଖା ଭିକ ମାଗିଛନ୍ତି—ସିଂହଭୂମିର ନିରକ୍ଷର ଓଡ଼ିଆଙ୍କୁ ସାକ୍ଷର କରିବାପାଇଁ । ସେମାନଙ୍କୁ ପାଠ ପଢ଼ାଇ, ମଣିଷ କରାଇ, ଭାରତର ଅନ୍ୟାନ୍ୟ ପ୍ରଦେଶର ଲୋକଙ୍କ ସହିତ ଶିକ୍ଷାରେ, ବୁଦ୍ଧିରେ ସମକକ୍ଷ କରାଇ ନିଜର ମାନବିକ ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ସାହାଯ୍ୟ କରିବାରେ । ତଳେ ପଡ଼ିଥିବା ଜଣେ ଲୋକକୁ କେବଳ ନୁହେଁ ସିଂହଭୂମ୍‌ର ଦେଢ଼ଲକ୍ଷ ଓଡ଼ିଆଙ୍କୁ ଉପରକୁ ଉଠାଇବା ପାଇଁ ଗୋପବନ୍ଧୁଙ୍କର ଯୋଉ ଅକ୍ଳାନ୍ତ ପରିଶ୍ରମ, ଆପ୍ରାଣ ଚେଷ୍ଟା, ତାହା ତାଙ୍କର ସମଗ୍ର ଜୀବନକାଳ ମଧ୍ୟରେ ହୁଏତ ଏକ ଅସାଧାରଣ କୃତିତ୍ୱର ସାଫଲ୍ୟ । ଏ ସାଫଲ୍ୟ ଆଜି ସାଧନା ଅତୁଳନୀୟ !!!

ଗୋପବନ୍ଧୁ ଏ କ୍ଷେତ୍ରରେ ଅନନ୍ୟ, ଅସାଧାରଣ । ଏବଂ ଏଇ ଅସା-ଧାରଣତା ଭିତରେ ସେ ଜଣେ କ୍ରାନ୍ତିର ପ୍ରବର୍ତ୍ତକ ! ଅଗ୍ନି-ଯୁଗର ସ୍ରଷ୍ଟା !! ଜାତିପ୍ରୂବାଣ କର୍ମ-ତତ୍ପରତା ଭିତରେ ଜଣେ ମହାନ୍ ବିପ୍ଳବୀ !!!

## ॥ ବିପ୍ଳବୀ ଗୋପବନ୍ଧୁ ॥

'ବିପ୍ଳବୀ' ଶବ୍ଦଟି ଉଚ୍ଚାରଣ କଲା ମାତ୍ରେ ଆମେ ଏକ ଧାରଣା କରି ନେଉ, ସେ ବ୍ୟକ୍ତିଟି ହୁଏତ ଜଣେ ଉଗ୍ରପନ୍ଥୀ ବା ଭୀଷଣ ସନ୍ତ୍ରାସବାଦୀ ! ବୋମାରେ ଅଗ୍ନି ସଂଯୋଗ ହେଲେ ଯେପରି ବିସ୍ଫୋରଣ ହୁଏ, 'ବିପ୍ଳବୀ' ବ୍ୟକ୍ତିର କାର୍ଯ୍ୟକଳାପ ହୁଏତ ସେହିପରି ଧ୍ୱଂସାତ୍ମକ । କିନ୍ତୁ ଏ ଉକ୍ତି ନିଶ୍ଚୟ ଗୋପବନ୍ଧୁଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ । ଏଠି ଗୋପବନ୍ଧୁଙ୍କୁ ବିପ୍ଳବୀ କହିବାର ଉଦ୍ଦେଶ୍ୟ ହେଲା—ସେ ଯେହେତୁ ଥିଲେ ବିକାଶ ଧର୍ମୀ, ଜାତିକୁ ପ୍ରଗତି ପଥରେ ଯୋଉଠି, ପୁରୁଣା ଭାବଧାରାକୁ ଜାବୁଡ଼ି ଧରି ବ୍ୟକ୍ତି-ବିଶେଷରେ କୂପମଣ୍ଡୁକତା ଲକ୍ଷ୍ୟ କରୁଥିଲେ, ସେଇଠି ସେ ନିଆଁ ପରି ଜଳି ଉଠୁଥିଲେ ଏବଂ ପ୍ରଗତି ପଥରେ ସମସ୍ତ ବାଧାବିଘ୍ନକୁ ଦଳି-ଚକଟି ଚୁରମାର କରିଦେବା ପାଇଁ ଦ୍ରୁତ ପଦକ୍ଷେପରେ ଆଗେଇ ଯାଉଥିଲେ ।

ଏହି ପରିପ୍ରେକ୍ଷୀରେ ସେ କେବଳ ଜଣେ ବିପ୍ଳବୀ ନଥିଲେ, ଥିଲେ ଜଣେ ଦୁର୍ଦ୍ଦାନ୍ତ ବିଦ୍ରୋହୀ । ସମସ୍ତ ପ୍ରାଚୀନ-ପନ୍ଥୀ ଲୋକଙ୍କୁ ବିରୋଧ କରି-ବାରେ ଜଣେ ଦୁର୍ଦ୍ଧର୍ଷ ସମାଲୋଚକ । ସେଇଥିପାଇଁ ୧୯୧୯ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର କାର୍ଯ୍ୟାବଳୀ ସମ୍ବନ୍ଧରେ ଏବଂ ତାର ବିଶିଷ୍ଟ ସଭ୍ୟମାନଙ୍କୁ ଆକ୍ଷେପ କରି ସେ ସ୍ପଷ୍ଟ କହିଥିଲେ ୧୬ ବର୍ଷ ଧରି ଏ ସମ୍ମିଳନୀ କେବଳ ରୁଦ୍ଧ ପ୍ରକୋଷ୍ଠ ଭିତରେ ବସି କିଛି ବକ୍ତୃତା ଦେଉଛି ବା ପ୍ରସ୍ତାବ ପାଶ୍ କରିଛି । କାର୍ଯ୍ୟ ଘରେ ଶୂନ୍ ! ଏଣୁ ଭାରତୀୟ ଜାତୀୟ ଆନ୍ଦୋଳନରେ

ଯୋଗଦେବା ପାଇଁ ଓଡ଼ିଶାର ଯୁବଶକ୍ତି ଆଜ ଯେଉଁ ଅଭିଳାଷ ପୋଷଣ କରନ୍ତି, ସେଥିପାଇଁ ରାସ୍ତା ସାଫ୍ ହୋଇଯିବା ଉଚିତ୍ ।

କହିବା ବାହୁଲ୍ୟ ଏ ଯୁବଶକ୍ତିର ପ୍ରଣେତା, ଗୋପବନ୍ଧୁ ଥିଲେ ନିଜେ—ଏବଂ କାହାର ମତାମତକୁ ଭ୍ରୂକ୍ଷେପ ନକରି, ଜାତୀୟ ଆନ୍ଦୋଳନରେ ଭାଗନେବା ପାଇଁ ସେ ଛୁଟି ଯାଇଥିଲେ ନାଗପୁରରେ ବସୁଥିବା ମହାଭାରତୀୟ ଜାତୀୟ କଂଗ୍ରେସର ଐତିହାସିକ ଅଧିବେଶନକୁ ।

ଏ ଅଧିବେଶନକୁ ଯିବା ଆଗରୁ ସେ ଅଗଷ୍ଟ ୧୯୨୦ରେ ପୁରୀଜଲ୍ଲା କଂଗ୍ରେସ କମିଟିର ସଭାପତି ଭାବରେ ଦାୟିତ୍ୱ ଗ୍ରହଣ କରି ସାରିଥିଲେ ।

ଭାରତୀୟ ଜାତୀୟ କଂଗ୍ରେସ ଇତିହାସରେ ନାଗପୁର ଅଧି-ବେଶନଟି ଥିଲା ସର୍ବପ୍ରଥମ ବୃହତ୍ତମ ସମ୍ମେଳନୀ । ଏଇ ସମ୍ମେଳନୀରେ ମହାତ୍ମା ଗାନ୍ଧି ସ୍ପଷ୍ଟ ଘୋଷଣା କରିଥିଲେ—'ଅସହଯୋଗ' ଆନ୍ଦୋଳନ ଫଳରେ ବର୍ଷକ ଭିତରେ ଦେଶ ସ୍ୱାଧୀନ ହୋଇଯିବ ।

ଗାନ୍ଧିଙ୍କର ଏ ଘୋଷଣାରେ ଭାରତର ସବୁ ପ୍ରଦେଶର ନେତୃ-ସ୍ଥାନୀୟ ବ୍ୟକ୍ତି ପ୍ରଭାବିତ ହୋଇଯାଇଥିଲେ । ଗୋପବନ୍ଧୁ ଦେଖିଥିଲେ, ଖୁବ୍ ଶୀଘ୍ର ଜାତୀୟ କଂଗ୍ରେସର ପ୍ରତିପତ୍ତି ପ୍ରତିଷ୍ଠା ହେଇଯିବ, ଏବଂ କଂଗ୍ରେସର ପତାକା ତଳେ ଭାରତର ତିରିଶ କୋଟି ଲୋକ ଏକ ମହାନ୍ ସହଯୋଗ ଓ ମୈତ୍ରୀ ମନ୍ତ୍ରରେ ଦୀକ୍ଷିତ ହୋଇ ସାର୍ବଜନୀନ ମହାନୁଭବତାରେ ଅନୁ-ପ୍ରାଣିତ ହୋଇ ଉଠିବେ । ତେଣୁ ଏକ ଚତୁରତା ସହିତ ଗୋପବନ୍ଧୁ ବାବୁ ମହାତ୍ମାଗାନ୍ଧିଙ୍କୁ ପ୍ରଭାବିତ କଲେ—ଭାଷା ସୂତ୍ରରେ ଭାରତର ପ୍ରଦେଶ ଗୁଡ଼ିକ ଗଠନ ନେଇ ଏକ ପ୍ରସ୍ତାବ ଏ ସମ୍ମେଳନୀରେ ଗୃହୀତ ହେଉ । ଏହା ପଛରେ ତାଙ୍କର ଅସଲ ଉଦ୍ଦେଶ୍ୟଟି ଥିଲା, ଏ ପ୍ରସ୍ତାବ ପାଶ୍ ହୋଇଗଲେ ଭାଷା ସୂତ୍ରରେ ଉତ୍କଳ ପ୍ରଦେଶ ଗଠନ ଦାବୀକୁ ଜାତୀୟ କଂଗ୍ରେସ ସମର୍ଥନ କରିବାକୁ ବାଧ୍ୟ ହେବ । ଏବଂ ଉତ୍କଳ ସମ୍ମେଳନୀ ଏ ପର୍ଯ୍ୟନ୍ତ ଯୋଉ ଦାବୀ କରିଆସୁଛି—ତାହା ହାସଲ ହେବାରେ କୌଣସି ପ୍ରତିବନ୍ଧକ ରହିବନାହିଁ ।

ସୌଭାଗ୍ୟକୁ ଏ ପ୍ରସ୍ତାବଟି ନାଗପୁର କଂଗ୍ରେସରେ ଗୃହୀତ ହୋଇ ଯାଇଥିଲା ଏବଂ ସେଇଠାରୁ ଅପରିସୀମ ଆନନ୍ଦରେ ଏକ ଅଦମ୍ୟ ଉତ୍ସାହ ନେଇ ଗୋପବନ୍ଧୁ ନାଗପୁର କଂଗ୍ରେସ ଅଧିବେଶନରୁ ଆସିଥିଲେ

ସିଂହଭୂମର ଚକ୍ରଧରପୁରଠାରେ ବସିଥିବା ଉତ୍କଳ ସମ୍ମେଳନୀର ସଭାମଣ୍ଡପକୁ ।

ଜଗବନ୍ଧୁ ସିଂହ ଏ ସମ୍ମେଳନୀରେ ସଭାପତିତ୍ୱ କରୁଥିଲେ । ଅଭ୍ୟର୍ଥନା ସଭାର ସଭାପତି ଥିଲେ ଠାକୁର ଉଦ୍ଧବ ନାରାୟଣ ସିଂହଦେଓ ।

ଏ ସଭାରେ ଯୋଗ ଦେଇଥିଲେ ଓଡ଼ିଶାର ବ୍ରଜସୁନ୍ଦର ଦାସ, ବିଶ୍ୱନାଥ କର, ପଣ୍ଡିତ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ପ୍ରଚାରକ ଅନନ୍ତ ମିଶ୍ର ଏବଂ ସିଂହଭୂମର ବହୁ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଭିତରେ ଥିଲେ—ସର୍ବଶ୍ରୀ କାଶୀନାଥ ମହାପାତ୍ର, ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, କାହ୍ନୁ ପାଣି, ବ୍ରଜମୋହନ ତ୍ରିପାଠୀ ଏବଂ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ।

ଗୋପବନ୍ଧୁ ଏଇ ମର୍ମରେ କହିଥିଲେ—ନାଗପୁର କଂଗ୍ରେସ ଅଧିବେଶନରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ପ୍ରସ୍ତାବ ଗୃହୀତ ହେଲା ପରେ ସାରା ଭାରତବର୍ଷରେ ବ୍ରିଟିଶ ସରକାର ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହୋଇଯିବ । ଏ ଅବସ୍ଥାରେ ଓଡ଼ିଶାର ଦେଢ଼ କୋଟି ଲୋକ ଶୋଇ ରହିଲେ ଚଳିବ ନାହିଁ । ଆମମାନଙ୍କୁ ମଧ୍ୟ ଜାତୀୟ କଂଗ୍ରେସର ଆହ୍ୱାନ ସଙ୍ଗେ ସ୍ୱର ମିଳାଇବାକୁ ପଡ଼ିବ । ମହାତ୍ମା ଗାନ୍ଧିଙ୍କ ନିର୍ଦ୍ଦେଶରେ ଅସହଯୋଗ ଆନ୍ଦୋଳନରେ ସାମିଲ ହେବାକୁ ପଡ଼ିବ ।

ଏ ଆନ୍ଦୋଳନରେ ଓଡ଼ିଆ ତାର କର୍ତ୍ତବ୍ୟନିଷ୍ଠା ଦେଖାଇଥିଲେ—ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ସମସ୍ୟା, ଏବଂ ଓଡ଼ିଶାର ସ୍ୱତନ୍ତ୍ର ପ୍ରଦେଶ ଦାବୀ ମଧ୍ୟ ନିଶ୍ଚୟ ସଫଳ ହେବ । କାରଣ ନାଗପୁର କଂଗ୍ରେସରେ ପ୍ରସ୍ତାବ ଗ୍ରହଣ କରାଯାଇଛି—ଭାଷା ସୂତ୍ରରେ ପ୍ରଦେଶ ଗଠନକୁ କଂଗ୍ରେସ ଅନୁମୋଦନ କରିବ ।

ଏଣୁ ମୁଁ ପ୍ରସ୍ତାବ ଆଗତ କରୁଛି କି-ଉତ୍କଳ ସମ୍ମେଳନୀର ଗୃହୀତ ନୀତି ଆଦର୍ଶ ଓ ଆଭିମୁଖ୍ୟ ସହିତ ଏଣିକି ଭାରତୀୟ କଂଗ୍ରେସର ଲକ୍ଷ୍ୟ ଓ ନୀତି ଯୋଗ କରାଯିବ ।”

ଏ ପ୍ରସ୍ତାବକୁ ଅନୁମୋଦନ କରିଥିଲେ ଚନ୍ଦ୍ରଶେଖର ବେହେରା ।

ଖରସୁଆଁର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଦ୍ୱିତୀୟ ପ୍ରସ୍ତାବ ଆଗତ କରିଥିଲେ··ଏହି ସମ୍ମେଳନୀ ଜାତୀୟ କଂଗ୍ରେସ ଅଧିବେଶନରେ ଗୃହୀତ

ଭାଷା ସୂତ୍ରରେ ପ୍ରଦେଶ ଗଠନ ପ୍ରସ୍ତାବକୁ ସର୍ବାନ୍ତଃକରଣରେ ଗ୍ରହଣ କରୁଅଛୁ ।'

ପଣ୍ଡିତ ନୀଳକଣ୍ଠ ଦାସ ଏ ପ୍ରସ୍ତାବକୁ ଅନୁମୋଦନ କରିଥିଲେ ।

ଏଇ ପ୍ରସ୍ତାବ ଦୁଇଟି ଗୃହୀତ ହେଲା ପରେ ସମ୍ମିଳନୀରେ ଅତୀତରେ ଗୃହୀତ ହୋଇଥିବା ସମସ୍ତ ପ୍ରସ୍ତାବ ଅକାମୀ ହୋଇପଡିଥିଲା ।

ଉତ୍କଳ ସମ୍ମିଳନୀର ପ୍ରାଣ ପ୍ରତିଷ୍ଠାତା ମଧୁବାବୁଙ୍କ ସମେତ ଓଡ଼ିଶାର ବହୁ ନେତୃସ୍ଥାନୀୟ ବ୍ୟକ୍ତି ଗୋପବନ୍ଧୁଙ୍କଠୁ ଏକପ୍ରକାର ଅଲଗା ହୋଇଗଲେ ଏବଂ ଓଡ଼ିଶାରେ ଏଇ ଚକ୍ରଧରପୁର ସମ୍ମିଳନୀ ପରଠାରୁ ଦୁଇଟି ଗୋଷ୍ଠୀର ସୂତ୍ରପାତ ହେଲା । ତା ଭିତରୁ ଗୋଟିଏ ଦଳ ରହିଲା ବ୍ରିଟିଶ ସରକାରଙ୍କ ପକ୍ଷରେ । ଅନ୍ୟଟି ମହାଭାରତୀୟ ଜାତୀୟ କଂଗ୍ରେସର ଅନୁଗାମୀ ଭାବରେ ଗୋପବନ୍ଧୁଙ୍କ ନେତୃତ୍ୱକୁ ଗ୍ରହଣ କଲା ।

ସିଂହଭୂମର ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ଅଧି-ବେଶନ, ଓଡ଼ିଶାର ଜାତୀୟ ଇତିହାସରେ ଏକ ନୂତନ ଯୁଗାନ୍ତର ଅଧ୍ୟାୟ । ଏବଂ ସେଇ ଯୁଗାନ୍ତର ପୂର୍ବଭାଗରେ ଗୋପବନ୍ଧୁଙ୍କ ନେତୃତ୍ୱ ମଧ୍ୟ ଏକ ବିପ୍ଳବୀର ଭୂମିକା ବୋଲି କୁହାଗଲେ ଯଥାର୍ଥ ହେବ, ତାର କାରଣ ଏଇଠି ତାଙ୍କ କାର୍ଯ୍ୟ-କଳାପରେ ଓଡ଼ିଶାର କେତେ ଜଣ ନେତୃସ୍ଥାନୀୟ ବ୍ୟକ୍ତି ଭିନ୍ନ-ମତ ପୋଷଣ କରି ବିରୋଧ କରିବା ଆରମ୍ଭ କଲେ ।

ଏଇଠି ହେଲା ତାଙ୍କର ରାଜନୈତିକ ଜୀବନର ପ୍ରଥମ ଉନ୍ମେଷ ! କଂଗ୍ରେସର ଅସହଯୋଗ ବାର୍ତ୍ତାକୁ ସମଗ୍ର ଓଡ଼ିଆ ଜାତି ଉଦ୍ଦେଶ୍ୟରେ ପ୍ରଚାର କରିବାରେ ତାଙ୍କର ଶକ୍ତି, ସାହାସ, ଏବଂ ସାମର୍ଥ୍ୟ, ଏବଂ ଓଡ଼ିଶାକୁ ନୂତନ ନେତୃତ୍ୱ ଦେବାରେ ମହାନ୍ ବ୍ୟକ୍ତିତ୍ୱର ପରକାଷ୍ଠା ଏଇଠି, ଅନ୍ଧକାର ଭିତରେ ପ୍ରଭାତର ସୂର୍ଯ୍ୟାଲୋକପରି ଉଦ୍ଭାସିତ ହୋଇ ଉଠିଥିଲା ।

ତାଙ୍କ ଚରିତ୍ରର ବୈପ୍ଳବିକ ଦିଗଟି ଏଇ ସିଂହଭୂମ୍ ମାଟିରେ ହିଁ ସିଂହ ବିକ୍ରମରେ ପ୍ରକଟିତ ହୋଇ ଉଠିଥିଲା । ଯୋଉ ଗୋପବନ୍ଧୁ ଦିନେ ଭୁବନେଶ୍ୱରରେ ରହି ଖଣ୍ଡଗିରି ଓ ଭୁବନେଶ୍ୱରର ମାଧୁରୀରେ ଉଦ୍‌ବୁଦ୍ଧ ହେଉଥିବା ବେଳେ ଜଣେ ବିପ୍ଳବୀ ଦେଶ-ପ୍ରେମୀ ଶିକ୍ଷକଙ୍କ ସହିତ ସମ୍ପର୍କରେ

ଆସି, ବୋମା ନିକ୍ଷେପକାରୀ ଉଗ୍ର-ପନ୍ଥୀ ବିପ୍ଳବୀ ଖୁଦିରାମଙ୍କ 'ବନ୍ଦେ-ମାତରମ୍' ଆନ୍ଦୋଳନ ଆଡ଼କୁ ଆକୃଷ୍ଟ ହୋଇପଡ଼ିଥିଲେ···ସେଇ ଗୋପବନ୍ଧୁଙ୍କ କାବ୍ୟିକ ପ୍ରାଣରେ ପୁଣି ଥରେ ବହୁ ବର୍ଷ ପରେ ସିଂହଭୂମିର ମୁକ୍ତ ଆକାଶ ତଳେ ଶଶିଭୂଷଣଙ୍କ ଆଦର୍ଶ ଯିପ୍ତ ହୋଇ ଉଠିଲା । ସେଇ ସ୍ୱଦେଶୀ ଭାବର ଉଚ୍ଛ୍ୱାସ, ସନ୍ତ୍ରାସବାଦର ରକ୍ତାକ୍ତ-ଶପଥ ଉଦ୍ଦୀପନା ! ! ସେ ଏଇଠୁ ପୁଣି ଥରେ ଉଚ୍ଚାରଣ କଲେ ସମଗ୍ର ଜାତି ଉଦ୍ଦେଶ୍ୟରେ ମହାତ୍ମା ଗାନ୍ଧୀଙ୍କ ଜୟ, ଜୟ ସ୍ଲୋଗାନ, ସ୍ୱାଧିନତାର ନୂତନ ଯୁଗ ଅଣିବା ପାଇଁ ।

ପଣ୍ଡିତ ଗୋଦାବରୀଶ ତାଙ୍କ ଆତ୍ମ ଜୀବନୀର 'ଅସହଯୋଗ' ପରି-ଚ୍ଛେଦରେ ଲେଖିଛନ୍ତି—ସେ ଅସହଯୋଗ ଯିଷାରେ ଏକାବେଳକେ ତନ୍ମୟ ହୋଇ ପଡିଥିଲେ । ତାଙ୍କ ପାଟିରେ ଭଲ ନଶୁଦ୍ଧିଲେ ମଧ ସେ ନଜେ 'ମହାତ୍ମା ଗାନ୍ଧୀକି ଜୟ' ଧ୍ୱନି କରୁଥିଲେ । ଅସହଯୋଗରେ ୧୯୨୧ ମସିହାର ବାର-ମାସ ଭିତରେ ଦେଶ ସ୍ୱାଧୀନ ହୋଇଯିବ ବୋଲି ତାଙ୍କର ଅଟଳ ବିଶ୍ୱାସ ଜନ୍ମିଥିଲା ।

ଗୋପବନ୍ଧୁଙ୍କ ମନରେ କଂଗ୍ରେସ ପ୍ରତି ଅଟଳ ବିଶ୍ୱାସର ଉଚ୍ଛ୍ୱାସ ଦେଖି ସମଗ୍ର ସିଂହଭୂମିର ଓଡିଆମାନଙ୍କ ଭିତରେ ପ୍ରବଳ ଉତ୍ସାହ ଦେଖା-ଦେଇଥିଲା । ହଜାର ହଜାର ସଂଖ୍ୟାରେ କଂଗ୍ରେସ ସଭ୍ୟଭୁକ୍ତ ହେଲେ । କାହ୍ନୁ କିଶୋର ପାଣି ଏ କାମରେ ଅଗ୍ରଣୀ ହୋଇ ବାହାରିଲେ । ସିଂହଭୂମ୍ କଂଗ୍ରେସ କମିଟି ଗଢ଼ାଗଲା । କାହ୍ନୁ ବାବୁ ପ୍ରେରକ ଅନନ୍ତ ମିଶ୍ରଙ୍କୁ, ଏକ ଛାପାଖାନା କିଣେଇ ଦେଲେ । ତା ନା' ହେଲା 'ସମ୍ମେଳନୀ ପ୍ରେସ୍' । ସେଥିରୁ ପ୍ରକାଶ ପାଇଲା ସାପ୍ତାହିକ କାଗଜ "ସେବକ", ଏଥିରେ ଧାରା-ବାହିକ ଭାବେ ଲେଖା ଲେଖି କଲେ ପଣ୍ଡିତ ଗୋପବନ୍ଧୁ ଏବଂ ଗୋଦାବରୀଶ ବାବୁ । ଏ ପ୍ରେସ୍‌କୁ ବାପାଙ୍କ ସାଙ୍ଗରେ ମୁଁ ଥରେ ଯାଇଥିବା କଥା ସ୍ପଷ୍ଟ ମନେ ଅଛି । ତାହା ଗୋଟିଏ ଶଲ ମାର୍କା ହାଣ୍ଡ ପ୍ରେସ ଥିଲା । ସେଦିନ ସନ୍ଧ୍ୟାରେ ପ୍ରେସ୍ ଦେଖିସାରିଲା ପରେ ଅନନ୍ତ ମିଶ୍ରେ ଆମକୁ ପେଟେ ଖାଇବାକୁ ଦେଇଥିଲେ । ସେଥିରେ ମିଠା ଭାଗ ଯଥେଷ୍ଟ ଥିଲା ବୋଲି ମନେପଡ଼ୁଛି ।

ଆମକୁ ଖୁଆଇ ପିଆଇ ସାରି ସାଙ୍ଗରେ ଧରି, ବଡ ଗାଡ଼ିରେ ଟାଟା

ଫେରିବା ଆଗରୁ ଆମକୁ 'ପୁରୁଣା ବସ୍ତି'ରେ କାହ୍ନୁବାବୁଙ୍କ ଘରକୁ ନେଇ ଯାଇଥିଲେ ।

ସେଠାରେ କାହ୍ନୁବାବୁ ଆମକୁ ପୁଣି ଖାଇବାକୁ ବାଧ୍ୟ କଲେ । ଖୁବ୍ ଅନିଚ୍ଛାସତ୍ତ୍ୱେ ଆମେ ବସିଲୁ । କାହ୍ନୁବାବୁ ରୁଟି ତରକାରୀ ବାଢ଼ିଲେ । ମୁଁ ପ୍ରଚୁର ମିଠା ଖାଇ ଆସିଥିବାରୁ ରୁଟିର ଚେହେରା ଦେଖି ଖାଇବାକୁ ଅମଙ୍ଗ ହେଲି । କାହ୍ନୁବାବୁ କହିଲେ—ଖଣ୍ଡିଏ ଖାଇବାକୁ ହେବ । ବାପାବି ଆକଟ କରି କହିଲେ । ଆମେ ସମସ୍ତେ ଖାଇବସିଲୁ । କିନ୍ତୁ ଏ କ'ଣ ? ଏ ରୁଟି କାଗଜ ପରି କି ପାତଳ ! କି ଆଶ୍ଚର୍ଯ୍ୟ ସୁଆଦ ! ପାଟିରେ ଦେଲା ମାତ୍ରେ କୁଆଡ଼େ ମିଳେଇଗଲା, ଜାଣି ହେଲା ନାହିଁ । ଖଣ୍ଡିଏ ଖାଇବାକୁ ଅମଙ୍ଗ ହେଉଥିଲି କିନ୍ତୁ ଗୋଟିକ ପରେ ଗୋଟିଏ ଛ ସାତପଟ ମୁଁ ଗିଳି ପକେଇଲି ।

ବାପା ପଚାରିଲେ ଏ ରୁଟି ଏମିତି ମିଠା ଲାଗୁଚି କେମିତି ।

କାହ୍ନୁବାବୁ ବୁଝେଇଥିଲେ—ଗହମ ଆଣି, ଧୁଆ ଧୋଇ କରି ତାକୁ ଖରାରେ ଶୁଖାଇ ଦିଆଯାଏ । ତାପରେ ଯୋରଣୀ ଚକିରେ ତାକୁ ଘରେ ମାଇପିମାନେ ହାତରେ ପେଷନ୍ତି । ଏ କାମ ତାଙ୍କ ସ୍ତ୍ରୀ ନିଜେ ତତ୍ତ୍ୱ ନେଇ କରନ୍ତି ।

ଜୀବନରେ ଏ ପର୍ଯ୍ୟନ୍ତ ଏପରି ରୁଟି ମୁଁ ଆଉ କେବେ ଖାଇନାହିଁ କି ରୁଟି ପୁଣି ଏପରି ସୁଆଦ ଲାଗେ ସ୍ୱୀକାର ଜାଣିନାହିଁ ।

ଜାମସେଦ୍‌ପୁରରେ କଂଗ୍ରେସ ସଭ୍ୟ କାର୍ଯ୍ୟରେ ଲଗିଥିଲେ ଜଗନ୍ନାଥ ରଥ, ଚେରମାନନ୍ଦ ମହାପାତ୍ର, ବଳଭଦ୍ର ନାୟକ, ଦଇତାରୀ ଶତପଥୀ, ଅଦ୍ୱୈତ ପ୍ରସାଦ ମହାନ୍ତି । ଅନନ୍ତ ଚୌଧୁରୀ, ବ୍ରଜବନ୍ଧୁ ଦାଶ, ଉଦୟନାଥ ମିଶ୍ର ପ୍ରଭୃତି ତରୁଣ ଯୁବକମାନେ ମଧ୍ୟ ପ୍ରବଳ ଉତ୍ସାହରେ ଅସହଯୋଗ ଆନ୍ଦୋଳନରେ ଝାମ୍ପ ଦେଲେ ।

ଜାମସେଦ୍‌ପୁରରେ କଂଗ୍ରେସ ସଗଠନ ପାଇଁ ମଝିରେ ମଝିରେ କାର୍ଯ୍ୟର ତଦାରଖ ପାଇଁ ଆସୁଥିଲେ ପଣ୍ଡିତ ଗୋଦାବରୀଶ ମିଶ୍ର ଆଉ ପ୍ରବୃରକ ଅନନ୍ତ ମିଶ୍ର ଚନ୍ଦ୍ରଧରପୁରଠାରୁ ।

ଆମଘରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ମୁଁ ବହୁବାର ଦେଖିବାର ସ୍ମୃତି ଏବେ ବି ଖୁବ୍ ସତେଜ ।

ପ୍ରଚାରକ ଅନନ୍ତ ମିଶ୍ରଙ୍କ କଥା ତ ମୋର ଖୁବ୍ ମନେ ଅଛି । ଘର ଦୁଆର ମୁହଁରୁ 'ନଟ ବୋଉ' 'ନଟ ବୋଉ' ଡାକ ମୋ ମାଆଙ୍କୁ ଖାଇବାକୁ ମାଗିବାର ଦୃଶ୍ୟ, ଏବେ ବ ଆଖି ଆଗରେ ନାଚ ଯାଉଚ । ମିଠା ଖାଇବାକୁ ସେ ଖୁବ୍ ଭଲ ପାଉଥିଲେ । ଅସମୟରେ ପହଞ୍ଚିଲେ, ଦହି ପଖାଳ, ସାଗ ବଡ ସନ୍ତୁଳା ବାଢ଼ି ଦେଲେ ସେ ଖୁବ୍ ତୃପ୍ତିରେ ଖାଉଥିଲେ । ବାପାଙ୍କର ଗୋଟିଏ ଭଲ ଗୁଣ ଥିଲା ସେ ସମସ୍ତଙ୍କୁ ଖାଇବା ପିଇବାକୁ ଦେଇ ଖୁବ୍ ଖସି ମନରେ ଅତିଥି ଚର୍ଚ୍ଚା କରୁଥିଲେ । ଏଇଥିପାଇଁ ଅନନ୍ତ ମିଶ୍ରେ, ଅଧିକାଂଶ ସମୟ ଆମର ଘରେ ରହିବାକୁ ସୁଖ ପାଉଥିଲେ । ଜାମସେଦ୍‌ପୁରରେ ଆଉ ଜଣେ ଛ' ଭଜା ନଅ ତିଅଣ କର ଅତିଥି ଅଭ୍ୟାଗତଙ୍କୁ ପରଶିବାରେ ସୁନାମ ଅର୍ଜନ କରିଥିଲେ ସେ ହେଉଛନ୍ତି ସାକ୍ଷୀଗୋପାଳର ଜଗନ୍ନାଥ ରଥ । ଟାଟା କମ୍ପାନୀର ସେଲ୍ ଟନ୍ଂ ଡ଼ିପାର୍ଟମେଣ୍ଟରେ ସେ ଖୁବ୍ ମୋଟା ଦରମାରେ ଚାକରୀ କରୁଥିଲେ ।

ଓଡିଶାର ବିଭିନ୍ନ ଜିଲ୍ଲାରେ କଂଗ୍ରେସ ସଭ୍ୟ ସଂଗ୍ରହ କାର୍ଯ୍ୟ ଯେତେ ଯୋରସୋରରେ ନଚାଲିଲା ତା'ଠୁ ବେଶୀ ଉତ୍ସାହରେ ଚାଲିଲା ସିଂହଭୂମ୍‌ରେ । ତା'ର କାରଣ ଓଡ଼ିଶା ପ୍ରଦେଶ କଂଗ୍ରେସ ସହିତ, ସିଂହଭୂମି କଂଗ୍ରେସକୁ ସ ମିଲ କର ରଖିବାକୁ ହେବ, ଏଇ ଉଦ୍ଦେଶ୍ୟରେ । ଓଡିଶା କଂଗ୍ରେସ କମିଟି ସହିତ ରହିଲେ ଓଡ଼ିଆଭାଷୀ କଂଗ୍ରେସ ସଭ୍ୟଙ୍କ ସଂଖ୍ୟା ବହାରୀ ବଙ୍ଗାଳୀଙ୍କଠାରୁ ଯଥେଷ୍ଟ ବେଶୀ ହେବା ଉଚିତ୍, ଏହା ଗୋପବନ୍ଧୁ ବାବୁ ସମସ୍ତଙ୍କୁ କହିଦେଇ ଥାଆନ୍ତି । ତାଙ୍କର କହିବା ଅନୁସାରେ ସଭ୍ୟ ସଂଗ୍ରହ କାର୍ଯ୍ୟ ଚାଲିଥାଏ ।

ଏଇ ସଭ୍ୟ ସଂଗ୍ରହ କାର୍ଯ୍ୟରେ ଜିଲାର ଓଡିଆ ଅଧିବାସୀ, ବହାରୀ ମାନଙ୍କୁ ଟପି ଯାଇଥିଲେ । ଏବଂ ସିଂହଭୂମ ଜିଲା କଂଗ୍ରେସ କମିଟି ଓଡିଶା ସହିତ ସାମିଲ ହେଇ ରହିବା ଅପରିହାର୍ଯ୍ୟ ହୋଇ ପଡିଥିଲା ।

କିନ୍ତୁ ପରେ ଏ ନେଇ ବାଦାନୁବାଦ ଚାଲିଲା ଓଡିଆ-ବହାରୀଙ୍କ ଭିତରେ । ଏକଥା ଗୋଦାବରୀଶ ବାବୁ ତାଙ୍କ ଆତ୍ମ ଜୀବନୀରେ ବିଷଦ-ଭାବରେ ବର୍ଣ୍ଣନା କରିଛନ୍ତି । 'ଅନୁରୋଧ ଓ ବକ୍ତୃତା'' ଅଧ୍ୟାୟରେ ସେ ଲେଖିଛନ୍ତି—କଂଗ୍ରେସ ପ୍ରଚାରରେ ସାରା ସିଂହଭୂମ ଜିଲ୍ଲାର କୌଣସି ସ୍ଥାନ

ବାଦ ପଡ଼ିଲା ନାହିଁ । ବେଳେବେଳେ ଗୋପବନ୍ଧୁ ବାବୁ ଯାଇ ପହଞ୍ଚନ୍ତି । ତାଙ୍କ ବକ୍ତୃତା ଶୁଣିବାକୁ ଲୋକେ ସୁଅ ପ୍ରମାଣେ ମାଡ଼ି ଆସନ୍ତି ।

ସିଂହଭୂମ ଜିଲ୍ଲା ତମାମ ବୃଣ୍ଆଡ଼େ କ ଖଗ କ ବର୍ଷା ସବୁ ସହି ଆମେମାନେ କଂଗ୍ରେସବାର୍ତ୍ତା ଗ୍ରାମେ ଗ୍ରାମେ ପ୍ରଚାର କରିବାକୁ ଲାଗି ପଡ଼ିଲୁ ପରେ କର୍ମୀମାନେ ଜଗନ୍ନାଥପୁରରୁ ଆସି ପହଞ୍ଚିଗଲେ । ତାଙ୍କ ସାଙ୍ଗରେ ପାଞ୍ଚ ମାଇଲ ବୁଲି, ଜଗନ୍ନାଥପୁରରେ ପହଞ୍ଚିଲି । ପୂର୍ବ ରାତିର ପଞ୍ଚୋଦ୍ଦୋଳ ମେଳଣପରି ସଭା ସକାଳ ଓଳ ହେଲା । ପ୍ରାୟ ଦେଢ଼ ହଜାର ଲୋକ ରୁଣ୍ଡ ହୋଇଥିଲେ । ଜଗନ୍ନାଥପୁର ଅଞ୍ଚଳଟା କୋହ୍ଲଣର ଓଡ଼ିଆ ଅଞ୍ଚଳ, ତାହା ତା'ର ନାମରୁ ଜଣା ଯାଉଛି । ଏ ନାମ ଗୁଇଁବସା, କେନ୍ଦୁପୋଷି, ଭଲ ପଶା, ଚେଲାବେଡ଼ା, ଯୁକୁଯୁକା ପ୍ରଭୃତି ନାମଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏହି ସବୁ କୋହ୍ଲ ଗ୍ରାମ ମାନଙ୍କରେ ଯେ ଓଡ଼ିଆ ନାହାନ୍ତି ତା ନୁହେଁ, କୋହ୍ଲ ଗାଁ ଯେତେ ଛୋଟ ହେଉ ପଛକେ ସେଥିରେ ଅନ୍ତତଃ ଘରେ ଘରେ କମାର, ତେଲି, ତନ୍ତୀ ଓ ବଢ଼େଇ ଥିବା ନିଶ୍ଚିତ । ଏମାନେ ସବୁ ଓଡ଼ିଆ । ପୂର୍ବେ ଏହିମାନେ ହିଁ କୋହ୍ଲ ଗ୍ରାମମାନଙ୍କରେ ଆର୍ଯ୍ୟ ସଭ୍ୟତା ନେଇ ପୂରାଇଥିଲେ ।"

'ସିଂହଭୂମରେ ଜାଗରଣ' ଅଧ୍ୟାୟରେ ପଣ୍ଡିତ ମିଶ୍ରେ ଲେଖିଛନ୍ତି— ମୁଁ ସିଂହଭୂମକୁ ଉଚ୍ଚ ବିଦ୍ୟାଳୟ ସ୍ଥାପନ କରିବାକୁ କିମ୍ବା କଂଗ୍ରେସ ପ୍ରଚାର ଲାଗି ଯାଇନଥିଲି । ସେଠାରେ ପଣ୍ଡିତ ଗୋପବନ୍ଧୁ ଦାଶଙ୍କର ସାହଚର୍ଯ୍ୟରେ ଯେଉଁ ଓଡ଼ିଆ ଜାଗରଣ ଜନ୍ମିଥିଲା, ତାହାକୁହିଁ ବଢ଼ାଇବା ଲାଗି ସିଂହ-ଭୂମିର ବନ୍ଧୁମାନେ ମୋତେ ଲୋଡ଼ିଥିଲେ । ସେ ଜିଲାର ଅନ୍ନ ଜଳରେ ମୁଁ ବଢ଼ିଛି । ସେଠାର ବାୟୁ ଗ୍ରହଣ କରି ମୁଁ ବଞ୍ଚିଛି । ସେହି ପରିବେଷ୍ଟନୀ ମଧ୍ୟରେ ମୁଁ ପୁଷ୍ଟ ହୋଇଛି । ତେଣୁ ମୁଁ ନିଜକୁ ସିଂହଭୂମର ବୋଲି ମନେ କରେ । ସିଂହଭୂମ ବାସୀଙ୍କର ବୋଧହୁଏ ସେହି ଧାରଣା ରହିଛି ।

'ଅସହଯୋଗ' ଅଧ୍ୟାୟରେ ଲେଖିଛନ୍ତି—ଭାରତର ଯେ ଭୂମୂଳ ଭୂମି-କମ୍ପ ଘଟିଲା, ସିଂହଭୂମ ସେଥିରୁ ବାଦ ପଡ଼ିଲା ନାହିଁ । ସେ ଭୂମିକମ୍ପରେ ଭାରତସାରା ଦୋହଲି ଗଲା । ଇଂରେଜ ସରକାର ଦେଡ଼ବର୍ଷ ହେଲା ଭାରତ ଅଧିକାର କରିଥିଲେ । କିନ୍ତୁ ସିଂହଭୂମ ଅଧିକାର କରିଥିଲେ ସେ

ଘଟଣାର ଷାଠିଏ ବର୍ଷ ତଳେ, ୧୮୫୯ ମସିହାରେ । ବିଦେଶୀ ଶାସନ ଶୃଙ୍ଖଳ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଯେତେ ଘାତକ ହୋଇଥିଲା ସିଂହ-ଭୂମରେ ସେତେ ହୋଇ ନଥିଲା । ସିଂହଭୂମର ଅନାର୍ଯ୍ୟ ଅଧିବାସୀମାନେ ଇଂରେଜ ସରକାରଙ୍କ ପୋଷା ଆତୁର ମାନି ନଥିଲେ । ସେଥିପାଇଁ ବେଳେ ବେଳେ ସେଠାରେ ମେଳି ବିଦ୍ରୋହ ଆଦି ହେଉଥିଲା । ସେଠା 'ବିର୍ସା ଭଗବାନ, ମେଳିରେ ଇଂରେଜ ସରକାରଙ୍କ ଆତଙ୍କ ପଡ଼ିଯାଇଥିଲା ।"

ଦେଶସାରା ବିପୁଳ ଉତ୍ସାହ ଜନ୍ମିଲା । ମହାତ୍ମା ଗାନ୍ଧୀଙ୍କ ଜୟଧ୍ୱନିରେ ଆକାଶ ଉଚ୍ଛୁଳି ପଡ଼ିଲା । ମୁଁ ଅସହଯୋଗ ଦୀକ୍ଷା ଅବଶ୍ୟ ଗ୍ରହଣକଲି । କିନ୍ତୁ ଜାତୀୟ ବିଦ୍ୟାଳୟ ଚଳାଇବା ଓ କେବଳ ଚକ୍ରଧରପୁରରେ ସଭା ସମିତି କରିବା ଛଡ଼ା ଆଉ କିଛି କଲି ନାହିଁ ।'

ଅନ୍ୟ କିଛି ନ କରିବା କଥା ଲେଖିଥିଲେ ମଧ୍ୟ, ସିଂହଭୂମି ଜିଲ୍ଲା କଂଗ୍ରେସ କମିଟି ଓଡ଼ିଶା କି ବିହାର କଂଗ୍ରେସ କମିଟି ସହିତ ରହିବ ଏ ଯେଉଁ ଦ୍ୱନ୍ଦ୍ୱ ଲାଗିଲା, ବିହାରୀ ଓଡ଼ିଆଙ୍କ ଭିତରେ···ସେଥିରେ ତାଙ୍କ ଭୂମିକା ଖୁବ ଉଲ୍ଲେଖ ଯୋଗ୍ୟଥିଲା ।

'ସିଂହଭୂମର ଜାଗରଣ' ଅଧ୍ୟାୟର ଦ୍ୱିତୀୟ ପରିଚ୍ଛେଦରେ ସେ ଲେଖିଛନ୍ତି—ସିଂହଭୂମିରେ ସେ ସମୟରେ ମୁଷ୍ଟିମେୟ ବିହାରୀ ଥିଲେ । କିନ୍ତୁ ଚକ୍ରଧରପୁରରେ ଯେଉଁମାନେ ରହୁଥିଲେ, ସେମାନେ ଖୁବ୍ ଦୁର୍ଦ୍ଧର୍ଷ । ବିହାରୀମାନେ କହିଲେ ଯେ କଂଗ୍ରେସ ବିଭାଗ ଅନୁସାରେ ସିଂହଭୂମି ବିହା-ରରେ ରହିବା ଦରକାର । କିନ୍ତୁ ଓଡ଼ିଆମାନେ ତାହା ଗ୍ରହଣ କଲେ ନାହିଁ । ଫଳରେ ବିହାରୀ ଓ ଓଡ଼ିଆଙ୍କ ମଧ୍ୟରେ ଏହି ବିଷୟରେ ମତଭେଦ ହେବାକୁ ଲାଗିଲା, ଏବଂ ବିବାଦ ଦିନକୁ ଦିନ ବଡ଼ ଆକାର ଧାରଣ କଲା । ମୁଁ ଘଟଣାଗୁଡ଼ିକ ଏଣେ ଓଡ଼ିଶାରେ ଗୋପବନ୍ଧୁ ବାବୁଙ୍କୁ ଓ ତେଣେ ବିହାରରେ ଶ୍ରୀଯୁକ୍ତ ରାଜେନ୍ଦ୍ର ପ୍ରସାଦଙ୍କୁ ଜଣାଇଲି । ସ୍ଥିର ହେଲା ଯେ ଗୋଟିଏ ତଦନ୍ତ କମିଟୀ ବସାଇ ବିବାଦଟା ନିଷ୍ପତ୍ତି କରି ନେବାକୁ ହେବ । କମିଟୀରେ ଓଡ଼ିଶାରୁ ରହିଲେ ପଣ୍ଡିତ ଗୋପବନ୍ଧୁ ଦାସ ଓ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ବିହାରରୁ ଭାଗଲପୁରର ନେତା ଶ୍ରୀଯୁକ୍ତ ଦୀପ୍ ନାରାୟଣ ଓ ମୌଲବୀ ସାଫି ରହିଲେ । ଦୀପ୍ ନାରାୟଣ ନିଷ୍ଠାବାନ ଓ ନ୍ୟାୟପରାୟଣ ବ୍ୟକ୍ତି । କିନ୍ତୁ

ତାଙ୍କର ବହାରୀ ସହକର୍ମୀଙ୍କ ବିଷୟରେ ସିଂହଭୂମି ଲୋକେ ବେଳେବେଳେ କହୁଥିଲେ, ଏ 'ସାଙ୍ଗି' ନୁହନ୍ତି 'ମଇଳା'। କାରଣ ସେ ସବୁବେଳେ ସବୁ କଥାରେ ବହାର ଆଡ଼କୁ ଟାଣୁଥିଲେ।

କମିଟୀର ବୈଠକ ସି ସ୍ଥିରକଲା ଯେ, ସମଗ୍ର ସିଂହଭୂମି ଜଲାରେ ଯେତେ ଜଣ କଂଗ୍ରେସ ମେମ୍ବର ହୋଇଥିବେ, ସିଂହଭୂମ୍, ବହାର କ ଓଡ଼ଶାରେ କେଉଁ ପ୍ରଦେଶରେ ରହବ ତାହା ସେମାନଙ୍କ ମତ ଦ୍ୱାରା ନିଷ୍ପତ୍ତି ହେବ।

ଚନାଘନାରେ ସଭ୍ୟ ସଂଗ୍ରହ କାର୍ଯ୍ୟ ଚଳବା ଦ୍ୱାରା ତା ପ୍ରାୟ ପାଞ୍ଚ ହଜାର ଦୁଇଶହ ପର୍ଯ୍ୟନ୍ତ ହୋଇଥିଲା। ଏମାନଙ୍କ ପାଖକୁ ଛପାଇ ପୋଷ୍ଟ-କାର୍ଡରେ ଲେଖି ମତାମତ ପଚରାଗଲା। ପ୍ରାୟ ହଜାର ଲୋକଙ୍କଠାରୁ କୌଣସି ଉତ୍ତର ଆସି ନ ଥିଲା। ବାକ ୩,୨୦୦ ଲୋକ ଓଡ଼ଶା ସପକ୍ଷରେ ଏବଂ ୨୮୦ ପର୍ଯ୍ୟନ୍ତ ବହାର ସପକ୍ଷରେ ମତ ଦେଇଥିଲେ। ଫଳରେ ସିଂହ-ଭୂମି ଜଲ୍ଲା କଂଗ୍ରେସ କମିଟି ଓଡ଼ଶା ପ୍ରଦେଶ କଂଗ୍ରେସ କମିଟି ସହତ ସାମିଲ ହୋଇ ରହଥିଲା।

ଏ ନିଷ୍ପତ୍ତି ପକ୍କା କରବାକୁ ଓଡ଼ଶାରୁ ଗୋପବନ୍ଧୁ ବାବୁ ଏବଂ ବହାରରୁ ରାଜେନ୍ଦ୍ର ପ୍ରସାଦ ଆସି ଥିଲେ। ସଭାରେ ରାଜେନ୍ଦ୍ର ବାବୁ କହଲେ, କେହ କେହ ମତେ ବହାର ସହତ ସିଂହଭୂମ୍ ଜଲ୍ଲା କଂଗ୍ରେସ କମିଟିକୁ ରଖିବାକୁ କହୁଛନ୍ତି—କନ୍ତୁ କଂଗ୍ରେସ ଏକ ଗଣତାନ୍ତ୍ରିକ ଅନୁଷ୍ଠାନ। ବର୍ତ୍ତ-ମାନ ଲୋକମତର ଯୁଗ। ଏଣୁ ଆପଣମାନେ ଏକଯୁଟ ହୋଇ ଜାତୀୟ କାର୍ଯ୍ୟରେ ଲଗି ଯାଆନ୍ତୁ।

ରାଜେନ୍ଦ୍ର ପ୍ରସାଦ ଏ କଥା ସଭାରେ ବୁଝାଇ କହଥିଲେ ମଧ୍ୟ, ପରେ ଭିତରିଆ ସଲା ସୂତରା ହେଇ ଚାଇଁବସାର ବହାରୀ ବେପାରୀ ରାମ ଲଗନଙ୍କୁ କହ ଦେଇଗଲେ—ଗୋଳମାଳ ଲଗାଇ ରଖ। ଭବିଷ୍ୟତରେ ନିଶ୍ଚୟ ଫଳ ମିଳବ।

ଫଳ କଛୁ ମିଳଥିଲା ଅବଶ୍ୟ। ଗୋଦାବରୀଶ ବାବୁ ରାମଲଗନଙ୍କ ପାଖକୁ ରାଜେନ୍ଦ୍ର ପ୍ରସାଦ ଦେଇଥିବା ଗୋଟିଏ ଚିଠି କୌଶଳକ୍ରମେ ଗଡ଼-କୃଷ୍ଣ ଷଡ଼ଙ୍ଗୀ ଓ ଈଶ୍ୱର ଚରଣ ଷଡ଼ଙ୍ଗୀଙ୍କ ଜରଆରେ ହାସଲ କର

ନେଇ ୧୯୨୧ରେ ଅହମଦାବାଦରେ ବସୁଥିବା କଂଗ୍ରେସ ଅଧିବେଶନକୁ ମୋତିଲାଲ ନେହେରୁଙ୍କ ପାଖକୁ ପଠେଇ ଦେଇଥିଲେ । ମୋତିଲାଲ ସେତେବେଳେ ସମ୍ପାଦକ ଥିଲେ, ନିଖିଳ ଭାରତ କଂଗ୍ରେସ କମିଟିର । ସବୁ ଶୁଣି, ବୁଝି ସେ ଏକ ଅଦ୍ଭୁତ ରାୟ ଦେଇ ବସିଲେ— କହିଲେ ସିଂହଭୂମି ଜିଲ୍ଲା କଂଗ୍ରେସ କମିଟିକୁ ବିହାର ଅଧୀନରେ ରଖିବାକୁ ରାଜେନ୍ଦ୍ର ପ୍ରସାଦଙ୍କ ମତ । ସେଇ ନିଷ୍ପତ୍ତି ଅନୁସାରେ ସିଂହଭୂମିରୁ ନଅ ଜଣ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ବାଟେ ଓ ଦୁଇ ଜଣ ବିହାର ପ୍ରାଦେଶିକ କଂଗ୍ରେସ କମିଟୀ ବାଟେ ଅଧିବେଶନକୁ ଯାଇଥିଲେ ।

ଏଇ ଯେଉଁ ଟଣା-ଓଟରା-ଛକ-ପଂଝା, ମତ ଶୃଙ୍ଖଳ, ତା ଫଳରେ, କେବଳ କଂଗ୍ରେସ କାର୍ଯ୍ୟରେ ଗୋଳମାଳିଆ ପରିସ୍ଥିତି ସୃଷ୍ଟି ହେଲା ନାହିଁ ସିଂହଭୂମ୍‌ରେ ଓଡ଼ିଆ ଶିକ୍ଷା କାର୍ଯ୍ୟରେ ମଧ୍ୟ ଅନେକ ବ୍ୟାଘାତ ଘଟିଲା ।

ଗୋପବନ୍ଧୁ ବାବୁ କଂଗ୍ରେସ ଆଣିବା କର୍ଯ୍ୟଟିର ଶୁଭ ଉଦ୍‌ବୋଧନ କାର୍ଯ୍ୟ ସିଂହଭୂମ୍‌ରେ ସିନା ଆନୁଷ୍ଠାନିକ ଭାବରେ ସମ୍ପନ୍ନ କଲେ, କିନ୍ତୁ ତାକୁ ସାରା ଓଡ଼ିଶାର ସହର, ନଗର, ପୁର-ପଲ୍ଲୀରେ ପ୍ରତିଷ୍ଠା କରିବାର ଦାୟୀତ୍ଵ ବି ରହିଲା ତାଙ୍କର ଉପରେ । ତେଣୁ ସେ ଆଉ ବେଶୀ ସମୟ ସିଂହଭୂମ୍‌ର ଶିକ୍ଷା କାର୍ଯ୍ୟ ପାଇଁ ଦେଇ ପାରିଲେ ନାହିଁ । ଗୋଦାବରୀଶ ବାବୁଙ୍କୁ ସେ କଂଗ୍ରେସର ସଂଗଠନ କାର୍ଯ୍ୟରେ ସାହାଯ୍ୟ ଦେବାକୁ କହିଲେ । କିନ୍ତୁ ଗୋଦାବରୀଶ ବାବୁ ସ୍ପଷ୍ଟ ମନା କରିଦେଲେ, କହିଲେ-ଆପଣ ସଂଗଠନ କାର୍ଯ୍ୟନେଇ ରହନ୍ତୁ ମତେ ସିଂହଭୂମିରେ ଏ ଦୁଇଟି ସ୍କୁଲର ପରିଚାଳନା ଦାୟୀତ୍ଵ ଛାଡ଼ିଦିଅନ୍ତୁ ।

ଗୋଦାବରୀଶ ବାବୁ ଦାୟୀତ୍ଵ ନେଲେ ସିନା, ହେଲେ ଆଉ ବେଶୀ ଦିନ ଏ କାର୍ଯ୍ୟରେ ଲାଗି ରହି ପାରିଲେ ନାହିଁ । କାରଣ ଅର୍ଥାଭାବ ସମସ୍ୟା ଏକ ଗୁରୁତର ପରିସ୍ଥିତି ସୃଷ୍ଟି କଲା । ସ୍ଥାନୀୟ ଓଡ଼ିଆ ଅଧିବାସୀଙ୍କଠାରୁ ସେପରି ଆନ୍ତରିକ ସାହାଯ୍ୟ ମିଳିଲା ନାହିଁ ।

ପୁଣି ଏଣେ କଂଗ୍ରେସ ଆନ୍ଦୋଳନ କାର୍ଯ୍ୟ ବି ବଳେଇ ପଡ଼ିଲା । ଓଡ଼ିଶାକୁ କଂଗ୍ରେସ ଆଣିବାରେ କେବଳ ଗୋପବନ୍ଧୁ ପ୍ରଧାନ ଓ ପ୍ରଥମ ନ ଥିଲେ, ଏଇ ସିଂହଭୂମ୍‌ରେ ବ୍ରିଟିଶ ସରକାର ତାଙ୍କୁ ପ୍ରଥମେ ହିଁ ଗିରଫ

ହରକତ କରୁଥିଲେ । ତାଙ୍କ ପଛେ ପଛେ କଡ଼ା ପୁଲିସ ପହରା ଘୁରି ବୁଲୁଥିଲା ।

ଅସହଯୋଗ ଆନ୍ଦୋଳନରେ ଯୋଗ ଦେବେ ନାହିଁ ବୋଲି ଯେତେ କହିଲେ ବି ଗୋପବନ୍ଧୁ ବାବୁ କିନ୍ତୁ ଗୋଦାବରୀଶ ବାବୁଙ୍କୁ ସାଙ୍ଗରେ ନେଇ ସିଂହଭୂମିର ଚାରିଆଡ଼େ ସଭା ସମିତି କରି ବୁଲିଲେ ।

ବଙ୍ଗାଳୀ ବେପାରୀମାନେ ସହଯୋଗ କଲେ ନାହିଁ । ତେଣୁ ପାଟଣା ଅଞ୍ଚଳୁ କେହି ମଧ୍ୟ ଆସିଲେ ନାହିଁ । କଂଗ୍ରେସ ଆନ୍ଦୋଳନ ଚଳାଇବା ଭାର କେବଳ ଓଡ଼ିଆଙ୍କ ଉପରେ ପଡ଼ିଲା । ଅର୍ଥ ଆଉ କର୍ମୀ ଉଭୟର ଅଭାବ ପଡ଼ିଲା । ତାର ଭିତରେ ଗୋପବନ୍ଧୁ କିନ୍ତୁ ଚାଲିଥାଆନ୍ତି ଅଦମ୍ୟ ଉତ୍ସାହରେ । ଝଡ଼ର ବେଗ ଆଉ ମେଘର ଗର୍ଜନ ରହିଥାଏ ତାଙ୍କ ଚାଲି ଆଉ ବକ୍ତୃତାର ଉଚ୍ଛ୍ୱାସରେ ।

ସଭା ସମିତି ଭାଷଣ, ସଂଗଠନ, ଏପରି ଜୋରଦାର ହୋଇ ଉଠିଲା ସବଡିଭିଜନାଲ ଅଫିସର ଏକପ୍ରକାର ଡରି ଚଟପଟ ହୋଇଗଲେ । ଗୋପବନ୍ଧୁଙ୍କୁ ଆଉ ଆୟତ୍ତରେ ରଖିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ ।

ଗୋଦାବରୀଶ ବାବୁଙ୍କ ସହିତ ପରାମର୍ଶ କରି ଗୋପବନ୍ଧୁ ବାବୁ ସିଂହଭୂମି ଜିଲ୍ଲା ଚାରିଆଡ଼େ କଂଗ୍ରେସ ପ୍ରଚାର ଗସ୍ତରେ ଯିବା ଠିକ କଲେ । ଖଣ୍ଡିଏ ମୋଟର ଗାଡ଼ି ମଧ୍ୟ ଯୋଗାଡ଼ ହୋଇଗଲା ।

'ପୋଡ଼ହାଟ'ରେ ଦୁଇଟା ସଭା କାମ ସାରି ଗୋପବନ୍ଧୁ 'କୋହ୍ଲାନ' ଆସିଲେ । ଆସିବା ବାଟରେ ଚାଇଁବସାଠି ପହଞ୍ଚି ଶୁଣିଲେ ସବଡିଭିଜନାଲ ଅଫିସର ତାଙ୍କୁ ଡକାଇଛନ୍ତି । ସେ ଦେଖାକରିବାକୁ ବାହାରିଲେ । ଗୋଦାବରୀଶ ବାବୁ କହିଲେ—ଯିବା ଠିକ୍ ହେବନାହିଁ । ଶହେ ଚଉରାଳିଶ ଧାରା ନୋଟିସ ଆପଣଙ୍କପାଇଁ ଝୁଲୁଚି ।

ଗୋପବନ୍ଧୁ ହସି ହସି କହିଲେ—ତୁମେ ବଡ଼ ସନ୍ଦେହୀ । ଏ ହାକିମ ମୋର ବନ୍ଧୁ ପୁରୁଣା ସାଙ୍ଗ । ଭୟ କରୁଚ କାହିଁକି ?

ଗଡ଼କୃଷ୍ଣଙ୍କୁ ସାଙ୍ଗରେ ନେଇ ଗୋପବନ୍ଧୁ ବାବୁ ଗଲେ । ଗୋଦାବରୀଶ ବାବୁ ନିଜ ଅନିଚ୍ଛା ସତ୍ତ୍ୱେ ତାଙ୍କ ପଛେ ପଛେ ଗଲେ ।

ଏଇ ଘଟଣାଟି ଗୋଦାବରୀଶ ବାବୁ ବଡ଼ ସୁନ୍ଦର ଭାବରେ ଲେଖି-ଛନ୍ତି ତାଙ୍କ ଜୀବନୀରେ—ହାକିମ ନିଶ୍ୱାସ ରୁଦ୍ଧ କାଗଜ କଲମ ଧରି ଚର୍ ଚର୍ କରି ଲେଖିବାରେ ଲଗିଲେ, ସମ କୃଷ୍ଣ ପଦେ କଥା କହିଲେ ନାହିଁ । ସେ ଲେଖୁଥାନ୍ତି, କାଟୁଥାନ୍ତି, ପୁଣି ଲେଖନ୍ତି-କାଟନ୍ତି । ମୋ ଆଖିଟା ତାଙ୍କ ଗୋଡ଼ ଆଡ଼କୁ ଚାଲିଗଲା । କିନ୍ତୁ ପର ମୁହୂର୍ତ୍ତରେ ମୁଁ ସ୍ଥିର କରି ନେଲା ଯେ ଗେଦରା ନ ହୋଇ ମଧ୍ୟ ଲୋକ ଯେତିକି କୋଡ଼େ, ସେତିକି ହାତରେ ପୁଣି ମାଡ଼ ଯାଏ । ମୁଁ ଘଣ୍ଟା ଧରି ବସିଲି । ୪୦ମିନିଟ୍ ଚାଲିଗଲା, ତଥାପି ତାଙ୍କର ଦଶ ଧାଡ଼ି କାନ୍ଦର ଲେଖା ସରିଲା ନାହିଁ । ଖାଲି ଲେଖୁଥାନ୍ତି, କାଟୁଥାନ୍ତି, କାଗଜ ଉପରେ ମୟୁର ପକ୍ଷୀ କଲମ ଚର ଚର ଚାଲୁଥାଏ । ଦେହରୁ ଟମ୍ ଗମ୍ ଝାଳ ବୋହି ଯାଉଥାଏ । ପଞ୍ଚାବନ ମିନିଟ୍ ବସିବା ପରେ ମୁଁ ଗୋପ-ବନ୍ଧୁ ବାବୁଙ୍କୁ କହିଲି—ଆଜ୍ଞା, ଏଟା ୧୪୪ଧାରା ନୋଟିସ ଲେଖୁଚ ! ନୋହିଲେ ତଉଟି ଶିର ଦୁହାଁଇ କାମରେ ଲଗିଥାନ୍ତା ନା ? ଉତ୍ତରରେ ଗୋପବନ୍ଧୁ ବାବୁ କହିଲେ—ସତେମ କ'ଣ କରିବା ? ମୁଁ କହିଲି ଚାଲନ୍ତୁ ଚଳାଇବା । ସେ ଉତ୍ତର ଦେଲେ—ଉହୁଁ ଚଳାଇବା ! ଡ଼ାକ ଆଣି ବସାଇଚି, ଅଭଦ୍ରତା ହେବ । ତାପରେ ସେ ଓ ମୁଁ ଦୁହେଁ ଦୁଇ ଚାରି ମିନିଟ ଚୁପ୍ ଚାପ୍ ହେଲୁ । ଶେଷରେ ଗୋପବନ୍ଧୁ ବାବୁ ବଙ୍ଗଳାରେ କହିଲେ—ଆପଣତ କାମରେ ଲଗିଛନ୍ତି, ଫୁରୁସତ ନାହିଁ । ମୁଁ ଏବେ ଯାଏ ପରେ ଦେଖାହେବ । ହାକିମ ଉତ୍ତରରେ କହିଲେ, ନାଇଁ ସରିଲାଣି ଆଉ ମିନିଟିଏ ବସନ୍ତୁ । ଗୋପ-ବନ୍ଧୁ ବାବୁ ବସିବାକୁ ଯାଉଥିଲେ । ତା ଦେଖି ମୁଁ କହିଲି—ଆମର ବଡ ଜରୁରୀ କାମ ଅଛି । ଆମେ ଯାଉଛୁ । ଆପଣ ପରେ ପଠାଇ ଦେବେ । ”

ଗିରଫ ହେବା ବପଦଟିକୁ ସିନା ଗୋପବନ୍ଧୁ ଏଠି ପାର୍ ହୋଇ-ଗଲେ ଗୋଦାବରୀଶ ବାବୁଙ୍କ ଉପସ୍ଥିତ ବୁଦ୍ଧି ବଚକ୍ଷଣତା ଯୋଗୁଁ କିନ୍ତୁ ଜଗନ୍ନାଥପୁରରେ ପହଞ୍ଚି ସେଠି ସବୁ କାମ ସାରି ସେ ଯାଇ ଯେତେବେଳେ ସୋଣୁଆରେ ପହଞ୍ଚିଲେ ପ୍ରାୟ ଦଶ ହଜାର ଲୋକଙ୍କର ଏକ ବରାଟ ଜନ ସଭାରେ ଭାଷଣ ଦେବା ପାଇଁ, ସ୍ପଷ୍ଟ ଅନୁମାନ କରି ପାରିଲେ ତାଙ୍କର ଏଇଠି ଗିରଫ ହୋଇଯିବା ପ୍ରାୟ ନିଶ୍ଚିତ । କିନ୍ତୁ ସେତେବେଳେ ଯାଏ ୧୪୪ ଧାରା ନୋଟିସ ଅମାନ୍ୟ କରିବାର ସମୟ ଆସି ନଥାଏ । ବକ୍ତୃତା

ଦେବା ମାତ୍ରେ ତାଙ୍କ ଉପରେ ବୃଟିଶ ହାକିମଙ୍କ ଗିରଫ ପରୱାନା ଜାରି ହୋଇ ଥାଆନ୍ତା । ଏଣୁ ସେ ବକ୍ତୃତା ନ ଦେଇ ଗୋଦାବରୀଶ ବାବୁ ଦେଲେ, ଦେଲେ ଗୋପବନ୍ଧୁ ବାବୁ ଯେଉଁ ଘୋଷଣାଟି ଆଗରୁ ଡାକ ଦେଇଥିଲେ । ଦଶ ହଜାର ଲୋକ ଗ୍ରାମଫୋନର ରେକର୍ଡ଼ ଗାଉଣା ଶୁଣିଲା ପରି ତନ୍ମୟ ହୋଇ ଶୁଣିଲେ ।

ଗିରଫ ନୋଟିସ ଜାରି ହୋଇ ପାରିଲା ନାହିଁ ସିନା କିନ୍ତୁ ଗୋପବନ୍ଧୁ ବାବୁ ହେଉଛନ୍ତି କଂଗ୍ରେସର ପ୍ରଥମ ନେତା ଯାହାଙ୍କୁ ଗିରଫ କରିବା ପାଇଁ ବୃଟିଶ ସରକାର ୧୦୪ ଧାରା ନୋଟିସ ଲେଖି··ପଛେ ପଛେ ଗୋଡ଼େଇଲେ । ଏବଂ ତାହା ପୁଣି ଏଇ ସିଂହଭୂମ୍‌ରେ । ଯେଉଁ ସିଂହଭୂମିକୁ, ସମଗ୍ର ଓଡ଼ିଆ ଜାତି ପାଇଁ, ଗୋପବନ୍ଧୁ ଭଗୀରଥ ପରି, ଜାତୀୟ କଂଗ୍ରେସର ପୁଣ୍ୟ ସ୍ରୋତଧାରାକୁ ଡ଼ାକ ଆଣିଥିଲେ, ଏବଂ ଯୋଉଠୁ ଓଡ଼ିଶାର ସହର, ନଗର, ପୁରପଲ୍ଲୀ ଗୃହଆଡ଼େ ସେ ଧାରାକୁ ବୁହାଇ ନେବାର ମହାନ୍ କାର୍ଯ୍ୟ ଆରମ୍ଭ କରିଥିଲେ, ବିପୁଳ ଉତ୍ସାହରେ ।

ଏଇ କାର୍ଯ୍ୟଟି ସମ୍ପନ୍ନ କରିବା ପାଇଁ ସେ ଚାଲିଗଲେ ଓଡ଼ିଶା ଭିତରକୁ । ଯାଇଁ ପ୍ରାଦେଶିକ କଂଗ୍ରେସ କମିଟି ଗଢ଼ିଲେ । ତାର ନେତୃତ୍ୱ ନେଲେ । ମହାତ୍ମାଗାନ୍ଧିଙ୍କୁ ଆଣିଲେ ୧୯୨୧ ମାର୍ଚ୍ଚ ମାସରେ । ତାଙ୍କୁ ସାଙ୍ଗରେ ଧରି ପୁରୀରେ, କଟକରେ, ବ୍ରହ୍ମପୁରରେ ସଭା କରେଇଲେ । ଏ ସଭାମାନଙ୍କରେ ପଣ୍ଡିତ ନୀଳକଣ୍ଠଙ୍କର ସଂଗୀତ ବୋଲା ହେଲା ।

ସ୍ୱରାଜ ହସ୍ତୀ ଅଲବତ୍ ହୋଗା ଗ୍ରେଡ଼କେ ଆଓ ଗୋଲାମି ।
ଭାରତ ଲଡ଼କା ଗୋଲାମ୍ ହୋକେ କାହେ କରେ ବଦନାମି ।

ପୁରୀ ଶରଧା ବାଲିରେ ଜନସଭାର ଏକ ଐତିହାସିକ ଗୁରୁତ୍ୱ ଅଛି । କାରଣ ଏଇଠି ଗୋପବନ୍ଧୁ ମହାତ୍ମାଙ୍କ ଆଗରେ ବକ୍ତୃତା ପ୍ରସଙ୍ଗରେ କହିଥିଲେ— ମୁଁ ମହାତ୍ମାଙ୍କୁ ଜଣାଇ ଦେବାକୁ ଚାହେଁ, ଓଡ଼ିଶା ଅସହଯୋଗର ଦୀକ୍ଷା ଗ୍ରହଣ କରି ଭାରତ ପ୍ରତି ତାର ଜାତୀୟତାର ପ୍ରମାଣ ଦେଇଛି ।"

ଏହି 'ପ୍ରମାଣ' ଦେବାକେବଳ ମୁହଁର କଥା ନଥିଲା, ଗୋପବନ୍ଧୁଙ୍କ ପାଇଁ କାର୍ଯ୍ୟରେ କରିଦେଖାଇବା ପାଇଁ ମଧ୍ୟ ସେ ଆପ୍ରାଣ ଚେଷ୍ଟାଚଳାଇଲେ ।

ଏଇ ଚେଷ୍ଟା ଭିତରେ ସେ ଏପରି ବ୍ୟସ୍ତ ରହିଲେ ଓଡ଼ିଶାର ଏକ

ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଘୂରି ବୁଲିବାରେ, ଆଉ ସିଂହଭୂମ ଆଡେ ଆସିବାକୁ ସମୟ ପାଇଲେ ନାହିଁ ।

ଏଣେ ଗୋଦାବରୀଶ ବାବୁ ଅର୍ଥ ଅଭାବରେ ପଡି ସିଂହଭୂମ ଛାଡି ଚାଲିଯିବା ସ୍ଥିର କଲେ । ସେ ଆତ୍ମଜୀବନୀରେ ଲେଖିଛନ୍ତି—ଆମମାନଙ୍କର ପ୍ରଚାର କାର୍ଯ୍ୟ କ୍ରମେ ମାନ୍ଦା ହୋଇ ଆସିଲା । ଓଡ଼ିଶାରେ ଗୋପବନ୍ଧୁ ବାବୁଙ୍କର ପୂର୍ବର ଟାଣ ନାହିଁ । ଜେଲଖାନାକୁ ଯିବା ପାଇଁ ସେ ପ୍ରସ୍ତୁତ ହୋଇ ରହିଥାନ୍ତି । ସିଂହଭୂମ୍ ଅବସ୍ଥା ଜଣାଇ ମୁଁ ତାଙ୍କୁ ଆଉ ବ୍ୟସ୍ତ କରିବାକୁ ଇଚ୍ଛା କଲି ନାହିଁ । ମଧୁବାବୁ ସେତେବେଳେ ବିହାର ଓଡ଼ିଶା ମନ୍ତ୍ରୀ । ମନ୍ତ୍ରୀ ପଦ ଛାଡ଼ିବେ ଛାଡିବେ ହେଉଥାଅନ୍ତି । କ୍ରମେ ସିଂହଭୂମରେ ରହି କାର୍ଯ୍ୟ ଚଳାଇବା ମୋତେ ଦୁଃସାଧ୍ୟ ବୋଧ ହେଲା । ମୁଁ ମୋର ସିଂହଭୂମ କାର୍ଯ୍ୟ କ୍ଷେତ୍ର ଛାଡି ସାକ୍ଷୀଗୋପାଳକୁ ନ ଫେରି ବାଣପୁରରେ ଯାଇଁ ପହଞ୍ଚିଲି । ”

ଗୋଦାବରୀଶ ବାବୁ ସିଂହଭୂମ ଛାଡି ଚାଲିଗଲେ । ଗୋପବନ୍ଧୁ ବାବୁ କଂଗ୍ରେସ ଆନ୍ଦୋଳନରେ ଜେଲ ଗଲେ ୧୯୨୩ରେ । ଜାନୁୟାରୀ ୨୪ ତାରିଖରେ ହଜାରୀବାଗ ଜେଲରେ ସେ ବନ୍ଦୀ ହୋଇ ରହିଲେ ପାଖ ଦେଢ଼ ବର୍ଷ କାଳ । ସେ ଜେଲରୁ ଖଲାସ ହେଲେ ୨୬ । ୬ । ୧୯୨୪ରେ ।

ଜେଲରୁ ମୁକ୍ତ ହୋଇ ଆସିଲା ପରେ ମଧ୍ୟ ବାକି ଯୋଉ ଚାରିଟି ବର୍ଷ ରହିଥିଲେ ୧୭ । ୬ । ୧୯୨୮ରେ ତାଙ୍କର ମୃତ୍ୟୁ ଦିନ ପର୍ଯ୍ୟନ୍ତ ଆଉ ସମୟ ଦେଇପାରି ନଥିଲେ ସିଂହଭୂମ୍ ଶିକ୍ଷା ପ୍ରଚାର ପାଇଁ । ହେଲେ ସିଂହ-ଭୂମ୍‌କୁ ସେ ଯା' ଆସ କରିଛନ୍ତି ମଝିରେ ମଝିରେ । ୧୯୨୫ରେ ଆଣ୍ଡ୍ରୁଜ ସାହେବଙ୍କୁ ସାଙ୍ଗରେ ନେଇ ତ ଆସିଥିଲେ ଜାମସେଦ୍‌ପୁର । ପ୍ରଚାରକ ଅନନ୍ତ ମିଶ୍ରଙ୍କୁ ସିଂହଭୂମରେ ରହି ଓଡ଼ିଆ ଜାତୀୟତାର ଆନ୍ଦୋଳନ ଚଳାଇଯିବାକୁ ସେ କେତେ ବରାବର ନିର୍ଦ୍ଦେଶ ଦେଉଥିଲେ··ଓଡ଼ିଶାର ବିଭିନ୍ନ ସ୍ଥାନରୁ, କଂଗ୍ରେସ କାର୍ଯ୍ୟର ନାନା ବ୍ୟସ୍ତତା ଭିତରେ ।

ଗୋପବନ୍ଧୁ ସବୁଦିନ ପାଇଁ ଚାଲିଗଲେ । ହେଲେ ୧୯୧୩ଠାରୁ ୧୯୨୨ ପର୍ଯ୍ୟନ୍ତ ଦୀର୍ଘ ୧୦ଟି ବର୍ଷ, ଧରିବାକୁ ଗଲେ ପୂରାପୂରି ଗୋଟିଏ ଯୁଗ ସେ ସିଂହଭୂମ ପାଇଁ ଯାହା କରିଯାଇଛନ୍ତି, ଯେତେ ସବୁ କରି ଯାଇଛନ୍ତି, ତାହା ଓଡ଼ିଶାର ଆଉ କୌଣସି ଜିଲ୍ଲା ପାଇଁ ସେ କରି ନାହାନ୍ତି ଏଥିରେ

ସନ୍ଦେହ ନାହିଁ । ଏଇ ସିଂହଭୂମ୍ ମାଟିରୁ ସେ ରାଧାନାଥ ରଥଙ୍କ ପ୍ରତିଭାକୁ ଆବିଷ୍କାର କରିଥିଲେ । ଯୋଉ ରାଧାନାଥ ବାବୁ ଆଜ ଓଡ଼ିଶାର ବହୁଖ୍ୟାତ ଦୈନିକ 'ସମାଜ'ର ସମ୍ପାଦକ । ଯାହାଙ୍କ ଚେଷ୍ଟାରେ ଦିନେ ଗୋପବନ୍ଧୁଙ୍କ ଦ୍ୱାରା ଓଡ଼ିଶାରେ ଆରମ୍ଭ ହୋଇଥିବା 'ସାମ୍ବାଦିକତା' ଆଜ ସର୍ବ ଭାରତୀୟ ସ୍ତରରେ ଖ୍ୟାତି ଆଉ ସୁନାମର ଶୀର୍ଷ ସ୍ଥାନରେ ପହଞ୍ଚିଛି । ଏଇ ସିଂହଭୂମ ମାଟିରେ ଗୋପବନ୍ଧୁ ପୋତି ଦେଇଥିଲେ ଓଡ଼ିଆ ଜାତୀୟତାର ଏପରି ଏକ ଶକ୍ତିଶାଳୀ ବୀଜ··ଯାହା ଅଙ୍କୁରିତ ହୋଇ ଏଇ ଦୀର୍ଘ ପଚାଶ ବର୍ଷ ଭିତରେ ଏକ ମହାଦ୍ରୁମରେ ପରିଣତ ହୋଇଛି । ଏବଂ ଯାହାର ଚେର ମାଟିର ଏତେ ଗଭୀରକୁ ଯାଇଛି, ତାକୁ ପୃଥିବୀର କୌଣସି ଶକ୍ତି ଆଉ ଓପାଡ଼ି, ଫିଙ୍ଗି ଦେବା ସମ୍ଭବ ନୁହେଁ ।

ସେତେବେଳେ ଓଡ଼ିଆ ଅଧିବାସୀଙ୍କର ସହଯୋଗର ଅଭାବ ଯୋଗୁଁ ଶିକ୍ଷା କାର୍ଯ୍ୟଟି ଗୋପବନ୍ଧୁଙ୍କ ଅନୁପସ୍ଥିତିରେ ଆଗେଇ ନ ପାରିଲେ ବି ଆଜ ଆଉ ସେ ଅବସ୍ଥା ନାହିଁ । ଆଜ ସିଂହଭୂମିରେ ଓଡ଼ିଆମାନଙ୍କର ଯେଉଁ ଉତ୍ସାହ ଯେଉଁ ଆଗ୍ରହ, ଯେଉଁ ଉନ୍ମାଦନା ତା ଦେଖିଲେ ବାସ୍ତବିକ ଆଶ୍ଚର୍ଯ୍ୟ ଆଉ ଆନନ୍ଦରେ ନାଚିବାକୁ ମନହୁଏ ।

ନାଚି ଆସିଛି ମୁଁ ବାସ୍ତବିକ ସେଦିନ 'ସିଂହଭୂମ ଉତ୍କଳ ସଭା'ର ବାର୍ଷିକ ଅଧିବେଶନ ଯୋଉଦିନ ଅନୁଷ୍ଠିତ ହେଲା ୨୬ ଓ ୨୭ ଡ଼ିସେମ୍ବରରେ । ଉତ୍କଳମଣିଙ୍କ ସ୍ଥାପିତ 'ସିଂହଭୂମ ଉତ୍କଳ ସଭା'ର 'ପୁନର୍ଜୀବିତ' କାର୍ଯ୍ୟଟି ଆରମ୍ଭ ହେଲା ଏଇ 'ଗୋପବନ୍ଧୁ ଜନ୍ମ ଶତବାର୍ଷିକୀ' ଅବକାଶରେ । ଦେଖି ଆସିଲି ସାରା ସିଂହଭୂମ ଜିଲ୍ଲାର ଗ୍ରାମାଞ୍ଚଳରୁ ଆସିଥିବା ଜନସାଧାରଣଙ୍କ ଗହଣରେ ଶ୍ରେଷ୍ଠ ବଡ଼ ନେତାମାନଙ୍କୁ । ପୂର୍ବତନ ବିଧାନ ସଭା ସଭ୍ୟ ମୁକୁନ୍ଦରାମ ତନ୍ତୀ, ବିଜୟ ପାଣିଙ୍କଠୁ ଆରମ୍ଭ କରି, ଗୋବିନ୍ଦଚନ୍ଦ୍ର ମହାନ୍ତି, ଭୂତଣେଚନ୍ଦ୍ର ପ୍ରଧାନ, ମୁରାରୀ ଷଡ଼ଙ୍ଗୀ, ଦିନେଶ ମହାପାତ୍ର, ଡ଼ାଃ ଘନେଶ ଷଡ଼ଙ୍ଗୀ, ସୁଧାଂଶୁ ମିଶ୍ର, ଈଶାନଚନ୍ଦ୍ର ଭଞ୍ଜ ମିଶ୍ର ବିଭୂତିଭୂଷଣ ହୋତା, ଚିତ୍ତରଞ୍ଜନ ମହାନ୍ତି, ରବିନ୍ଦ୍ର ପ୍ରହରାଜ, ଦେବେନ୍ଦ୍ର ପ୍ରଧାନ, ଭୂଦେବ ଷଡ଼ଙ୍ଗୀ, କୃଷ୍ଣଚନ୍ଦ୍ର ମହାରଣା, ସୁଧାଂଶୁ ମିଶ୍ର, ତ୍ରୈଲୋକ୍ୟ ନାଥ ହୋତା, ରାମଚନ୍ଦ୍ର ପଣ୍ଡା, ମୃତ୍ୟୁଞ୍ଜୟ ଦାଶ, ଅନାଦି ବେହେରା,

ପଣ୍ଡିତ ପାବନ ମଣ୍ଡଳ, ଧନଞ୍ଜୟ ମୋଦକ, ପୂର୍ଣ୍ଣଚନ୍ଦ୍ର ମିସ୍ତ୍ରୀ, ପ୍ରଶାନ୍ତ ଷଡଙ୍ଗୀ, ରବୀନ୍ଦ୍ର ଶତପଥୀ, ମଙ୍ଗଳ ଚରଣ ଗୋପ, ଶଶାଙ୍କ ଷଡଙ୍ଗୀ, ନରକାନ୍ତ ବରୁଆ, ସିଦ୍ଧେଶ୍ୱର ମହାପାତ୍ର, ପଶୁପତି ତ୍ରିପାଠୀ, ଭଗବତୀ ନାୟକ, କାଳିପଦ ବାରିକ, ଗୋପିନାଥ ପାଣି, ଶିଳ୍ପୀ ଅଜୟ ଷଡଙ୍ଗୀ, କାଳିପଦ ତ୍ରିପାଠୀ, ମନୋହର ମହାନ୍ତି, ହରିପଦ ପାଲ, ଗୌରଚନ୍ଦ୍ର ମିସ୍ତ୍ରୀ, ଦେବେନ୍ଦ୍ର ପ୍ରଧାନ, କାଳିଚରଣ ଗିରି, ବନବିହାରୀ ମହାନ୍ତି, ଶମ୍ଭୁଚରଣ ପ୍ରଧାନ, ଡାଃ ମକୁନ୍ଦ ପ୍ରଧାନ, ଲକ୍ଷ୍ମଣ କେଶରୀ ପ୍ରଧାନ, ହାସ୍ୟର ପ୍ରଧାନ ଡାଃ ଅଜିତ ନାରାୟଣ ସିଂହଦେଓ, ମଧୁସୂଦନ ଆଚାର୍ଯ୍ୟ, ଡାଃ ପୂର୍ଣ୍ଣଚନ୍ଦ୍ର କର ଏବଂ ଆହୁରି ଅନେକ ।

ଏ ସଭାରେ ସଭାପତିତ୍ୱ କରିଥିଲେ ମୁକୁନ୍ଦରାମ ତନ୍ତୀ ଏବଂ ବିଶିଷ୍ଟ ଅତିଥି ଭାବରେ ଯୋଗ ଦେଇଥିଲେ ସବୁଜ ଯୁଗର ପ୍ରଥିତଯଶା ସାହିତ୍ୟିକ, ପାଟଣା ହାଇକୋର୍ଟର ପୂର୍ବତନ ବିଚାରପତି, ଶ୍ରୀ ହରିହର ମହାପାତ୍ର ।

ଜନତାଙ୍କୁ ଉଦ୍‌ବୋଧନ ଦେଇ ବିଚାରପତି ଶ୍ରୀ ମହାପାତ୍ର କହିଥିଲେ—ଯେ ଯେକୌଣସି ଜାତି ତାର କାର୍ଯ୍ୟକାରୀ ଶକ୍ତି ହରାଇଲେ ତା'ର ଅନ୍ୟ ସବୁ ଶକ୍ତି ମଉଳିଯାଏ । ସେ ନିଜକୁ ଜଣେ ସିଂହ-ଭୂମିର ଲୋକ ବୋଲି ବର୍ଣ୍ଣନା କରି ତାଙ୍କର ଛାତ୍ର ଜୀବନ ବିଷୟରେ ସୂଚନା ଦେଇଥିଲେ । ଅତୀତର ସମସ୍ତ ତ୍ରୁଟିକୁ ଭୁଲି ହତାଶା ଓ ହୀନମନ୍ୟ-ତାକୁ ପରିହାର କରି ଓ ବର୍ତ୍ତମାନର ବାସ୍ତବତାକୁ ସ୍ୱୀକାର କରି, ଭବିଷ୍ୟତ ପ୍ରତି ଦୃଷ୍ଟି ଦେଇ ଅନ୍ୟମାନଙ୍କ ସହ ସମକକ୍ଷ ହୋଇ କାର୍ଯ୍ୟ କରିବା ନ୍ୟାଯ୍ୟ ଦାବୀ ଓ ପାଉଣା ଆଦାୟ ପାଇଁ କାହାରି ଦ୍ୱାରା ପାତ୍ର ନ ହୋଇ ନିଜର ସ୍ଥିତିକୁ ସୁଦୃଢ କରି ନିଜକୁ ପ୍ରତିଷ୍ଠିତ କରିବା, ସିଂହଭୂମି ଉତ୍କଳ ସଭାକୁ ସମସ୍ତ ପ୍ରକାର ଦଳଗତ ରାଜନୀତିରୁ ଊର୍ଦ୍ଧ୍ୱରେ ରଖିବା ଓ ନୂଆ ଯୁବକମାନଙ୍କୁ ଏହାପ୍ରତି ଆକୃଷ୍ଟ କରିବା, ଏହାର କାର୍ଯ୍ୟକଳାପକୁ କେବଳ ମାତ୍ର ଭାଷା ଓ ସଂସ୍କୃତି କ୍ଷେତ୍ରରେ ସୀମାବଦ୍ଧ ନରଖି ସିଂହଭୂମିର ଲୋକ-ମାନଙ୍କର ଅର୍ଥନୈତିକ, ସାମାଜିକ ନିଯୁକ୍ତିଗତ ସମସ୍ୟା ପ୍ରତି ଦୃଷ୍ଟି ଦେଇ ଭଳି ପ୍ରସାରିତ କରିବା, ବର୍ଷର ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ

ସାଂସ୍କୃତିକ ଉତ୍ସବମାନଙ୍କ ଜରିଆରେ ଓଡ଼ିଆମାନେ ନିଜର ଅବସ୍ଥିତିକୁ ପ୍ରତିଫଳିତ କରିବା ପାଇଁ ସେ ପରାମର୍ଶ ଦେଇଥିଲେ । ଅନ୍ୟାନ୍ୟ ବିଚ୍ଛିନ୍ନାଞ୍ଚଳମାନଙ୍କ ଅପେକ୍ଷା ସିଂହଭୂମି ଅଗ୍ରଣୀ ହୋଇଥିବାରୁ ଏହାର ଆଦର୍ଶ ଅନ୍ୟାନ୍ୟ ଅଞ୍ଚଳ ଲୋକଙ୍କୁ ଅନୁପ୍ରାଣିତ କରିବ ବୋଲି ସେ ଆଶା ପ୍ରକାଶ କରିଥିଲେ ।

ସେ କହିଥିଲେ ସିଂହଭୂମବାସୀଙ୍କ ପାଇଁ ଗୋପବନ୍ଧୁଙ୍କ ଅର୍ଥ ଭିନ୍ନ ପ୍ରକାର ଏବଂ ଅସଲ ଶିକ୍ଷାବ୍ରତୀ ଗୋପବନ୍ଧୁ ବଞ୍ଚି ରହିବେ କେବଳ ସିଂହ-ଭୂମିରେ । ୧୯୧୭ ମସିହାରେ ଶିକ୍ଷାବ୍ରତୀ ଗୋପବନ୍ଧୁଙ୍କର ଆବିର୍ଭାବ ହୋଇଥିଲା ସିଂହଭୂମିରେ ଏବଂ ସିଂହଭୂମିବାସୀଙ୍କର ଅସଲ ଗୋପବନ୍ଧୁ ଶତବାର୍ଷିକୀ ହେବ ଚାରି ଶହେବର୍ଷ ପରେ । ଦେଖାଯାଇଛି ଯେ, ମଝିରେ ମଝିରେ ଜଣେ ଜଣେ ମହାପୁରୁଷଙ୍କର ଆବିର୍ଭାବ ଘଟି ତାଙ୍କରି ଦିଗଦର୍ଶନ ବଳରେ ଇତିହାସର ମୋଡ ବଦଳି ଆସୁଛି ।

ନିଜକୁ ଜଣେ ସିଂହଭୂମବାସୀ ରୂପେ ବର୍ଣ୍ଣନା କରି ସେ କହିଲେ ଯେ, ତାଙ୍କର ଜନ୍ମ ପୁରୀ ଜିଲ୍ଲାରେ ହୋଇଥିଲେ ମଧ୍ୟ ଶିକ୍ଷାର ଗର୍ଭରୁ ତାଙ୍କର ଦ୍ୱିତୀୟ ଜନ୍ମ ଏହି ସିଂହଭୂମିରୁହିଁ ହୋଇଛି । ସେ ତାଙ୍କ ଜୀବନର ଯାହାକିଛି କୃତିତ୍ୱ—ଏହି ସିଂହଭୂମିରୁ ପାଇଛନ୍ତି ବୋଲି ଉଲ୍ଲେଖ କରି ସେ ଋଣ ଶୁଝିବା ପାଇଁ ଆଜି ଏଠାକୁ ଆସିଛନ୍ତି ବୋଲି ସୂଚାଇଥିଲେ ।

ସିଂହଭୂମିରେ ଓଡ଼ିଆ ଶିକ୍ଷାର ପ୍ରଗତି ଓ ଅଗ୍ରଗତିର ଯେଉଁ ବୀଜ ବପନ କରିଥିଲେ ତାହା ଏବେ ବଢ଼ି ବଢ଼ି ଚାଲିଥିବାର ଦେଖି ଗୋପବନ୍ଧୁ ସ୍ୱର୍ଗରୁ ନିଶ୍ଚୟ ଆନନ୍ଦିତ ହେଉଥିବେ ବୋଲି ଉଲ୍ଲେଖ କରିଥିଲେ । ସେ କହିଲେ ଯେ ଉତ୍କଳମଣି ଗୋପବନ୍ଧୁଙ୍କର ଗାଁ ଗହଳରେ ଥିବା ଲୋକ ଏବଂ ସେମାନଙ୍କ ସମସ୍ୟା ସହିତ ସମ୍ପର୍କହିଁ ତାଙ୍କର ଶିକ୍ଷାନୀତିର ମୂଳଭିତ୍ତି ଥିଲା । ଲୋକଙ୍କ ପ୍ରତି ସ୍ନେହ ଓ ଦୃଢ଼ ଆତ୍ମବିଶ୍ୱାସ ଥିବା ଯୋଗୁଁ ପରାଜୟ ସ୍ୱୀକାର କରିବା ପାଇଁ ତାଙ୍କର କୁଣ୍ଠା ନଥିଲା କି ତାଙ୍କ ମୁହଁରୁ ସ୍ମିତହାସ୍ୟ କେବେ ଲୋପ ପାଇ ନଥିଲା । ଏହି ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀରେ ଜଗବନ୍ଧୁ ସିଂହ ସଭାପତିତ୍ୱ କରି ଓଡ଼ିଆ ଜାତି ଉଦ୍ଦେଶ୍ୟରେ

ନିର୍ଭୀକ ଭାବରେ ସ୍ୱାଧୀନତା ଆନ୍ଦୋଳନ ଓ ଅସହଯୋଗର ବାର୍ତ୍ତା ଦେଇ ଭୀରୁତା ପରିହାର କରି ଆତ୍ମବିଶ୍ୱାସ ଓ ଦୂରଦୃଷ୍ଟିର ସହିତ ଅଗ୍ରସର ହେବା ପାଇଁ ସମସ୍ତଙ୍କୁ ଆହ୍ୱାନ ଦେଇଥିଲେ ।

ଗୋପବନ୍ଧୁ ସିଂହଭୂମିରେ ଯେଉଁ ସବୁ କାର୍ଯ୍ୟ ଆରମ୍ଭ କରିଥିଲେ ଯଦି ସିଂହଭୂମି ଉତ୍କଳ ସଭା ସେ ସବୁ କାର୍ଯ୍ୟକୁ ଆଗେଇ ନିଏ, ତେବେ ତାଙ୍କ ପ୍ରତି ସବୁଠାରୁ ଏହାହିଁ ବଡ଼ ଶ୍ରଦ୍ଧାଞ୍ଜଳି ହେବ । ”

ଏହି ସଭାରେ ଯେଉଁ ପ୍ରାଣମୟତା ଏ ଲେଖକ ସେ ଦିନ ଲକ୍ଷ୍ୟ କରିଥିଲା—ସିଂହଭୂମିରେ ରହିବାର ତ୍ରିଶ ବର୍ଷ ଭିତରେ ସେ ଆଉ କେବେ କୋଉଠି ଦେଖି ନାହିଁ ।

କହିବାକୁ ହେବ, ଉତ୍କଳମଣିଙ୍କ ଜନ୍ମ-ଶତ-ବାର୍ଷିକୀ ପାଳନ ବର୍ଷଟି ଭିତରେ ସିଂହଭୂମିରେ ଏଇ ସଭାଟି ହୁଏତ ଏକ ହଲଚଲ ସୃଷ୍ଟି କଲାପରି ବିରାଟ ସଭା । ତାପରେ, ଜାମସେଦପୁରରେ ଉତ୍କଳ ଆସୋସିଏସନ ତରଫରୁ ଏବଂ କଦମା ଅଞ୍ଚଳର ଆଉ ଏକ ସଭା ଗଙ୍ଗାଧର ମହାପାତ୍ର, ଓ ଶ୍ରୀ ହର ମିଶ୍ରଙ୍କ ଉପସ୍ଥିତିରେ ହେବା ମଧ୍ୟ ଉଲ୍ଲେଖ ଯୋଗ୍ୟ ।

ଏ ସଭାରେ ସିଂହଭୂମିବାସୀଙ୍କର ଉତ୍ସାହ ଉଦ୍ଦୀପନା ଦେଖିଲା ପରେ ଲେଖକ ମନେ କରେ—ଗୋପବନ୍ଧୁ ଏଠି ଓଡ଼ିଆ ଶିକ୍ଷା, ଭାଷା, ସଂସ୍କୃତି ଏବଂ କଂଗ୍ରେସ ବାର୍ତ୍ତା ପ୍ରଚାର ଆନ୍ଦୋଳନ ଭିତରେ ଯେତେବେଳେ ଏକ ଅଗ୍ନି ଝଡ଼ ସୃଷ୍ଟି ନ କରିଥିଲେ—ସାରା ଜିଲ୍ଲା ବ୍ୟାପି ପରିକ୍ରମା କରି ପ୍ରାଣ-ମତାଣିଆ ନିଦ-ଭଙ୍ଗା ଶବ୍ଦର ବୋମା ବାରୁଦ ନିକ୍ଷେପ କରି, ବିସ୍ଫୋରଣ କ୍ରିୟା ସୃଷ୍ଟି ନ କରିଥିଲେ, ନିରକ୍ଷରତାର ଜଡ଼ତା ଯାଇ ନଥାନ୍ତା କି ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କ ମନରେ ଜାଗରଣର ନୂତନ ସୂର୍ଯ୍ୟୋଦୟ ହୋଇ ନ ଥାନ୍ତା ।

ଏଇ ପରିପ୍ରେକ୍ଷୀରେ ଗୋପବନ୍ଧୁଙ୍କ ଆବିର୍ଭାବ, ସିଂହଭୂମର ଜନ-ଜୀବନରେ ଏକ ବିପ୍ଳବୀର ଭୂମିକା ବୋଲି ମନେ କରି, ମୁଁ କହିବି 'ବିପ୍ଳବୀ ଗୋପବନ୍ଧୁ ! ! '

## ।। ଏକ ସାକ୍ଷାତକାର :
## ଅବସରପ୍ରାପ୍ତ ବତ୍ପରପତି **ଶ୍ରୀ ହରହର ମହାପାତ୍ରଙ୍କ ସହିତ ।।**

ଏ ବହିଟିର ଲେଖା ଶେଷ କରିବା ଆଗରୁ ହଠାତ୍ ମନେ ପଡ଼ିଲା ଗୋପବନ୍ଧୁଙ୍କୁ ଭଲଭାବେ ଦେଖିଥିବା, ଜାଣି ଥିବା, ବ୍ୟକ୍ତି ସିଂହଭୂମରେ ଏବେ କିଏ ଅଛନ୍ତି, ଯାହାଙ୍କଠୁ ଗୋପବନ୍ଧୁଙ୍କ ସମ୍ବନ୍ଧରେ କିଛି ଜାଣିହେବ ।

ଯୋଗୁଆର କମଳକୃଷ୍ଣ ପ୍ରଧାନଙ୍କ ପାଖକୁ ଦିନେଶ ବାବୁ ଓ ମୁଁ ଉଭୟେ ଯାଇଥିଲୁ ଗତବର୍ଷ ଏକ ସାକ୍ଷାତକାର ପାଇଁ । ସେ ସାକ୍ଷାତ-କାରରେ ଟେପ୍ ରେକର୍ଡ଼ର ମେସିନ୍‌ଟି ଆମକୁ ଧୋକା ଦେଇଥିଲା । ତେବେ ଯେତିକି ମନେ ଅଛି—ଆମର ବହୁ ପ୍ରଶ୍ନ ଉତ୍ତରରେ କମଳକୃଷ୍ଣ ବାବୁ ଗୋପବନ୍ଧୁ ଏବଂ ଗୋଦାବରୀଶ ବାବୁଙ୍କ ସମ୍ପର୍କରେ ଆସି ସେମାନଙ୍କ ଅମାୟିକ ବ୍ୟବହାର ଏବଂ ବ୍ୟକ୍ତିତ୍ୱରେ ପ୍ରଭାବିତ ହେବା କଥା କେବଳ ଯାହା କହିଥିଲେ ସେତିକି । ଗୋପବନ୍ଧୁ ଅସହଯୋଗ ଆନ୍ଦୋଳନ ପରେ ଏ ପାଖକୁ ଆଉ ନ ଆସିବା ଯୋଗୁଁ ସିଂହଭୂମରେ ତାଙ୍କ କଲା କାର୍ଯ୍ୟ ବନ୍ଦ ହୋଇଗଲା କାହିଁକି ବୋଲି ପଚାରିବାରେ—ସେ କହିଲେ ବିହାର ସରକାର ଓଡ଼ିଆ ବ୍ୟବସାୟୀମାନଙ୍କୁ ହଇରାଣ କଲେ । ତାଙ୍କୁ ମଧ୍ୟ ବହୁ ନିର୍ଯ୍ୟାତନାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

କଥା ପ୍ରସଙ୍ଗରେ ସେ ଧଲଭୂମର ନେତା ତାରାପଦ ଷଡ଼ଙ୍ଗୀଙ୍କ ଦେଶବତ୍ସଳତାର ଖୁବ୍ ପ୍ରଶଂସା କରିଥିଲେ । ଚକ୍ରଧରପୁରର କାହ୍ନୁ ପାଣି, ଖରସୂଆଁ ର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ, ସମ୍ବନ୍ଧରେ କହିଥିଲେ କି



୰ କାଶୀନାଥ ମହାପାତ୍ର
ରଇଁବଣା ଜଲ୍ଲା ସ୍କୁଲର ସର୍ବପ୍ରଥମ ଶିକ୍ଷକ
(ଜଷ୍ଟିସ ଶ୍ରୀ ହରିହର ମହାପାତ୍ରଙ୍କ ପିତା)



ପାଟନା ହାଇକୋର୍ଟର ଅବସର-ପ୍ରାପ୍ତ
ବିଚାରପତି ଶ୍ରୀଯୁକ୍ତ ହରିହର ମହାପାତ୍ର
( ଧୃଷ୍ଟା-୧୯୫ )

ଏମାନେ ଓଡିଆ ଶିକ୍ଷା ପ୍ରଚାର ପାଇଁ ଗୋପବନ୍ଧୁଙ୍କ ପରେ ଏବଂ ଗୋଦାବରୀଶ ବାବୁ ଶେଷ ବିଦାୟ ନେଇ ଗଲା ପରେ ମଧ୍ୟ ଖୁବ୍ ଚେଷ୍ଟା ଚଳାଇଥିଲେ ।

ପଚାରିଥିଲୁ··ଓଡ଼ିଶା ବିଧାନ ସଭାର ପୂର୍ବତନ ସଭ୍ୟ ବିଜୟ ପାଣିଙ୍କ କଥା । କାହ୍ନୁ ବାବୁଙ୍କ ବଡ଼ ପୁଅ ଯେ ୧୯୧୭ ପରଠାରୁ ଓଡ଼ିଶା ଆସି ରାଜନୀତି କରୁଛନ୍ତି ।

କମଳକୃଷ୍ଣ ବାବୁ ଏ ପ୍ରଶ୍ନ ଶୁଣି ଟିକିଏ ଗମ୍ଭୀର ହୋଇ ଯାଇଥିଲେ । ପରେ କ'ଣ ଚିନ୍ତାକରି କହିଲେ—ନା, ମୁଁ ତାଙ୍କ ସମ୍ବନ୍ଧରେ କୌଣସି ମତାମତ ଦେବି ନାହିଁ ।

ଆଉ ଯେତେ ଯାହା ପ୍ରଶ୍ନ କଲୁ ସେ ବିଶେଷ କିଛି କହି ପାରିଲେ ନାହିଁ । ବୟସ ହୋଇ ଯାଇଛି । ତାଙ୍କ ସ୍ମୃତିରେ ଷାଠିଏ ବର୍ଷ ତଳର ସିଂହଭୂମିର ଓଡିଆ ଶିକ୍ଷା ଆନ୍ଦୋଳନର ଟିକିନିଖି କଥା ପ୍ରାୟ ମନେନାହିଁ ।

ଜଷ୍ଟିସ୍ ହରିହର ବାବୁଙ୍କ କଥା ମନେ ପଡ଼ିଗଲା । ଚକ୍ରଧରପୁର-ଠାରେ ଗଲା ଡିସେମ୍ବରରେ ସିଂହଭୂମ ଉତ୍କଳ ସଭାରେ ତାଙ୍କ ବକ୍ତୃତା ଶୁଣିଥିଲି । ସେଠି ସେ ତାଙ୍କ ସ୍ମୃତିରୁ ଅନେକ କିଛି କହିଥିଲେ । ତାଙ୍କ ସହିତ ଏକ ସାକ୍ଷାତକାର କାମରେ ଆସିବ ବୋଲି ସ୍ଥିର କରି ସେପ୍ଟେମ୍ବର ୩୦ ତାରିଖରେ ଯାଇଁ ଦେଖାକଲି ତାଙ୍କ କଟକ ବାସ-ଭବନରେ । ଚମତ୍କାର ଲୋକ । ଯେମିତି ଅମାୟିକ ସେମିତି, ବିନୟୀ । ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର ଥିଲେ । ସେଇଠୁ ୧୯୧୭ରେ ଆସିଥିଲେ ଚାଇଁବସା ଜିଲ୍ଲା ସ୍କୁଲକୁ । ସେଠି ତାଙ୍କ ପିତା ଶ୍ରୀଯୁକ୍ତ କାଶୀନାଥ ମହାପାତ୍ର ଜିଲ୍ଲା ସ୍କୁଲରେ ପ୍ରଥମ ଓଡ଼ିଆ ଶିକ୍ଷକ ଭାବରେ ଯୋଗ ଦେଇ ଥିଲେ । କାଶୀନାଥ ବାବୁ ଗୋପବନ୍ଧୁ ଏବଂ ମୁକ୍ତାର ରାମଚନ୍ଦ୍ର ଦାଶଙ୍କ ସହିତ ପୁରୀରେ ଜାତୀୟ ଆନ୍ଦୋଳନ କାର୍ଯ୍ୟରେ ସହକର୍ମୀ ଥିଲେ । ପରେ ସ୍କୁଲ ଆସିଷ୍ଟାଣ୍ଟ ସବ୍‌ଇନ୍‌ସପେକ୍ଟର ଭାବରେ ବାଲେଶ୍ୱର ଜିଲ୍ଲା, ବୌଦ୍ଧ ପାଲଲହଡ଼ା ପ୍ରଭୃତି ଗଡ଼ଜାତ ଅଞ୍ଚଳରେ କାର୍ଯ୍ୟ କରୁଥିଲେ । ଗୋପବନ୍ଧୁଙ୍କ ଇଚ୍ଛାନୁଯାୟୀ ଚାଇଁବସା ଜିଲା ସ୍କୁଲରେ ଓଡ଼ିଆ ଶିକ୍ଷା ଦେବା ପାଇଁ ସିଂହଭୂମ ଆସିଥିଲେ । ସେଠାରେ ମଧ୍ୟ ଓଡ଼ିଆ ଆନ୍ଦୋଳନ ଓ ଓଡିଆ ଶିକ୍ଷା ପ୍ରସାରରେ ଗୋପବନ୍ଧୁଙ୍କ କାର୍ଯ୍ୟରେ ସହାୟକ ଥିଲେ ।

ହରିହର ବାବୁ ପାଟନା ଇନ୍‌ଭରସିଟିରୁ ଫାଷ୍ଟ ଡିଭିଜନ୍‌ରେ ସେକେଣ୍ଡ ହୋଇ ବୃତ୍ତିଲାଭ କରିଥିଲେ ୧୯୨୧ରେ । ରେଭେନ୍‌ସାରୁ ୧୯୨୫ରେ ବି. ଏ. ପାଶ୍ କରି ପାଟନା କଲେଜରୁ ଏମ୍. ଏ. କରିସାରିଲା ପରେ ଓଡିଶାରେ ଆଡ୍‌ଭୋକେଟ୍ ଜେନେରାଲ ଭାବରେ ଓକାଲତି କରିଥିଲେ । ତା ପରେ ପାଟନା ହାଇକୋର୍ଟ ଜଜ୍ ହୋଇଯାଇ ବହାରରେ ଦୀର୍ଘ ଦଶବର୍ଷ ଧରି ରହି ଓଡିଆଙ୍କର ଖୁବ୍ ଟେକ ରଖିଥିଲେ । ସେ ହେଉଛନ୍ତି ଓଡିଶାର 'ସବୁଜ-ଯୁଗ'ର କବି । କାଳନ୍ଦୀ, ହରିହର, ଶରତ ମୁଖାର୍ଜୀ, ବୈକୁଣ୍ଠ ପଟ୍ଟନାୟକ ଏବଂ ଅନ୍ନାଦଶଙ୍କର ରାୟ ଏ ପାଞ୍ଚଜଣ ଆଧୁନିକ ଓଡିଆ ସାହିତ୍ୟରେ ଏକ ଯୁଗ ସୃଷ୍ଟି କରିଥିଲେ । ତାଙ୍କୁ ମୋ ମନ କଥା କହିବାରୁ, ଗୋପବନ୍ଧୁଙ୍କ ସମ୍ବନ୍ଧରେ ତାଙ୍କ ସ୍ମୃତିରେ ଯାହା ଅଛି ସେ କଥା ମତେ କହିବାକୁ ଅନୁରୋଧ କରିବାରୁ ସେ ଖୁବ୍ ଆନନ୍ଦରେ ତା' କହିବେ ବୋଲି ପ୍ରତିଶ୍ରୁତି ଦେଲେ । ଏଠି ମଧ୍ୟ ପ୍ରଥମ ଦିନର ସାକ୍ଷାତକାରଟି ଭଣ୍ଡୁର ହୋଇଗଲା । ସେଇ ଟେପ୍ ରେକର୍ଡରଟିର ଗୋଳମାଳ ଯୋଗୁଁ । ମୋର ଏବଂ ତାଙ୍କର ଦୁଇଟିଯାକ କେମିତି ବିଗିଡି ଗଲା ଜାଣି ହେଲା ନାହିଁ । କିନ୍ତୁ ଦ୍ୱିତୀୟ ଦିନ ସବୁ ଠିକ୍ ଠିକ୍ ଚାଲିଲା । ମୋ ପ୍ରଶ୍ନର ଯୋଗ୍ୟ ଉତ୍ତର ସେ ଦେଲେ ତା ଖୁବ୍ ଦୀର୍ଘ ଏବଂ ତଥ୍ୟ ପୂର୍ଣ୍ଣ । ସେଥିରୁ ସବୁ ପ୍ରାୟ କାମରେ ଆସିବ ବୋଲି ବିଶ୍ୱାସ କରି ଏଠାରେ ଦେଲି ।

ମୋ' ପ୍ରଶ୍ନ—ଆପଣ ରୁଇଁବସା ସ୍କୁଲକୁ ଯିବା ଆଗରୁ କୋଉଠି ପଢୁଥିଲେ ।
ହରିହର ବାବୁଙ୍କ ଉତ୍ତର—ସତ୍ୟବାଦୀ ବନବିଦ୍ୟାଳୟରେ ।

ପ୍ରଶ୍ନ—ସେଠାରୁ ସିଂହଭୂମର କେହି ପିଲା ପଢୁଥିଲେ କି ?
ଉ—ହଁ, ତାରାପଦ ଷଡଙ୍ଗୀ ବୋଲି ଜଣେ ପଢୁଥିଲେ । ସେ ଧଳଭୂମି ଅଞ୍ଚଳର ଲୋକ ।

ପ୍ର—ଆଉ କେହି ଯାଇଥିଲେ କି ?
ଉ—ନା, ସେତେବେଳେ ମେଦିନୀପୁରରୁ କେତକ ଛାତ୍ର ଯାଇଥିଲେ ।

ପ୍ର—ତାରାପଦ ବାବୁ ତାଙ୍କ ଅଭିଭାଷଣରେ କହିଛନ୍ତି, ୧୯୧୨ ବେଳକୁ

ଗୋପବନ୍ଧୁ ସିଂହଭୂମ ଏବଂ ଧଳଭୂମ ଆସିଛନ୍ତି । କିନ୍ତୁ ଆମକୁ ଯାହା ପ୍ରମାଣ ମିଳୁଛି ୧୯୧୩ରେ କେରାରେ ଗୋଟିଏ ଓଡ଼ିଆ ପ୍ରାଇମେରୀ ସ୍କୁଲ ବସାଇବା ପାଇଁ ସେ ଉତ୍ସାହ ଦେଇଥିଲେ, କେରାର ଠାକୁର ସାହେବ ଲକ୍ଷ୍ମୀନାରାୟଣଙ୍କୁ ।

ଉ—୧୯୧୭ ବେଳକୁ ଗୋପବନ୍ଧୁ ଅନେକଥର ଯିବା ଆସିବା ଆରମ୍ଭ କଲେ ସିଂହଭୂମକୁ । ବିଶେଷ କରି ଚାଇଁବସା, ଚକ୍ରଧରପୁର ଯିବା ଆରମ୍ଭ କଲେ । କିନ୍ତୁ ଓଡ଼ିଆ ଆନ୍ଦୋଳନର ସୂତ୍ରପାତ ତାର ପ୍ରାୟ ଦୁଇତିନ ବର୍ଷ ଆଗରୁ ସେ କରିଥିଲେ । ୧୯୧୨ ମସିହାରେ ଯେତେବେଳେ ବିହାର ଓଡ଼ିଶା ପ୍ରଭିନ୍ସ ହେଲା, ସେତେବେଳଠୁ ସେ ଦିଗରେ କାର୍ଯ୍ୟ ଆରମ୍ଭ ହୋଇଛି । ମୋର ଯାହା ସ୍ମରଣ ଅଛି ୧୯୧୩ ବେଳକୁ ସେପାଖେ ଓଡ଼ିଆ ପ୍ରାଇମେରୀ ସ୍କୁଲ ସ୍ଥାପନ ହେବାର ଉଦ୍ୟମ ହୋଇଥିଲା । ବିହାର ଓଡ଼ିଶା ପ୍ରଦେଶ ହେଲା ପରେ, ସେଇ ଦିଗରେ ସମସ୍ତଙ୍କର ଧ୍ୟାନ ଆସିଲା ।

ପ୍ର—ସଠିକ କେବେ ଯାଇଥିଲେ ଆପଣ କହି ପାରିବେନି ।

ଉ—ହଁ, ମୋର ଯେତେଦୂର ସ୍ମରଣ ଅଛି, ଯେତେଦୂର ଖବର ମୁଁ ନେଇଛି ୧୯୧୩ ବେଳକୁ ସେଠାକୁ ନିଶ୍ଚିତ ଭାବରେ ଯାଇଛନ୍ତି ।

ପ୍ର - ହଁ, ଏଇକଥାଟି ମୁଁ ଖାସ୍ ଜାଣିବାକୁ ଚାହିଁଥିଲି । କାରଣ ଏଇ ୧୯୧୩ ରେ ସେ ଚାଇଁବସା ଆସି କେରା ଯାଇଥିଲେ ବୋଲି ମୁଁ କିଛି ପ୍ରମାଣ ପାଇଛି । ଆଚ୍ଛା, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ସାଙ୍ଗରେ ଗୋପବନ୍ଧୁବାବୁଙ୍କ ଜଣା ଶୁଣା କଥା ସମ୍ବନ୍ଧରେ ଆପଣ କ'ଣ ଜାଣନ୍ତି ?

ଉ - ୧୯୧୩ ବେଳକୁ ଯେତେବେଳେ ସିଂହଭୂମ ଗଲେ, ତା'ର ବହୁତ ଆଗରୁ ଆଚାର୍ଯ୍ୟଙ୍କ ସମ୍ପର୍କରେ ସେ ଆସିଥିଲେ, ଉତ୍କଳ ସମ୍ମେଳନୀ ପୀଠରେ।

ପ୍ର - ଓକିଲ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ?

ଉ - ହଁ ପୂର୍ଣ୍ଣ ତ୍ରିପାଠୀ ଚାଇଁବସାରେ ପ୍ରାକ୍ଟିସ୍ କରୁଥିଲେ । ସେ ରହୁଥିଲେ ସେଇଠି । ସେ ଉତ୍କଳ ସମ୍ମେଳନୀରେ ଯୋଗ ଦେଇଥିଲେ କି ନାଇ ମୁଁ ସେକଥା କହି ପାରିବିନି, ତେବେ ମୁଁ ନିଶ୍ଚିତ ଜାଣେ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଉତ୍କଳ ସମ୍ମେଳନୀରେ ଯୋଗ ଦେଉଥିଲେ । ସେଇ ସମୟରୁ ସିଂହଭୂମରେ ଓଡ଼ିଆ ପ୍ରଚାର କାର୍ଯ୍ୟ ଆଲୋଚନା କରୁଥିଲେ ।

ପ୍ର - 'ପଇସିକିଆ ଫଣ୍ଡ' ଆରମ୍ଭ ହୋଇଥିଲା ସିଂହଭୂମ୍‌ରେ ଏଇଟି । କେବେ ?

ଉ - ତା ଆରମ୍ଭ ହେଲା ୧୯୧୫, ୧୬ ବେଳକୁ ।

ପ୍ର - ଓଡ଼ିଶାରେ ମଧ୍ୟ ଏ ଫଣ୍ଡ କାର୍ଯ୍ୟ ସଙ୍ଗେ ଆରମ୍ଭ ହୋଇଥିଲା ?

ଉ - ହଁ, କିନ୍ତୁ ପଇସିକିଆ ଫଣ୍ଡ ଯୋଜନା ହୋଇଥିଲା, ତାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ସିଂହଭୂମ୍‌ରେ ଓଡ଼ିଆ ଶିକ୍ଷା କାର୍ଯ୍ୟର ପ୍ରସାର ।

ପ୍ର - ସିଂହଭୂମ ଉତ୍କଳ ସଭା କେବେ ଆରମ୍ଭ ହେଲା ?

ଉ - ବୋଧହୁଏ ୧୯୧୭, ୧୮ ବେଳକୁ । କାରଣ ସିଂହଭୂମ୍ ଉତ୍କଳ ସଭା ବସିଥିଲା ଜଗବନ୍ଧୁ ସିଂହଙ୍କ ଅଧ୍ୟକ୍ଷତାରେ ୧୯୨୦ରେ । ତା ପୂର୍ବରୁ ଚକ୍ରଧର-ପୁରରେ ହାଇସ୍କୁଲ କରିବା ଆରମ୍ଭ ହୋଇଯାଇଥିଲା ।

ପ୍ର - ପ୍ରଚାରକ ଅନନ୍ତ ମିଶ୍ର କେବେ ଯାଇଥିଲେ ।

ଉ - ସେ ବହୁତ ପୂର୍ବରୁ ଯାଇଥିଲେ । ଏପରିକି ୧୯୧୬ ମସିହାରେ ମୁଁ ବିଦ୍ୟାଳୟ ଛାଡ଼ିବା ପୂର୍ବରୁ ସେ ସିଂହଭୂମ୍‌ରେ ଯାଇଁ କାର୍ଯ୍ୟ କରୁଥିଲେ । କାହିଁକି, ନା ପ୍ରଚାରକ ଅନନ୍ତ ମିଶ୍ର ନାନା ଜାଗାରେ ବୁଲୁଥିଲେ । ଉତ୍କଳ ସମ୍ମେଳନୀର ପ୍ରଚାର କରୁଥିଲେ । ସେ ସମସ୍ତ ସମୟରେ ଯେତେବେଳେ ଆସନ୍ତି, ସତ୍ୟବାଦୀ ବନବିଦ୍ୟାଳୟ ସ୍କୁଲରେ ମିଟିଙ୍ଗ୍ କରି ସେ କ'ଣ କାର୍ଯ୍ୟ କରିଆସନ୍ତି ସେ ବିଷୟରେ ସୂଚନା ଦିଅନ୍ତି । ସେ ବିଷୟରେ ଅନେକ ଆଲୋଚନା ହୁଏ । ମୋର ମନେ ଅଛି ଥରେ ସେ କହିଥିଲେ—ସିଂହ-ଭୂମ୍‌ରେ ଓଡ଼ିଆମାନେ କିପରି ହନ୍ତସନ୍ତ ହେଉଛନ୍ତି । ସୁତରାଂ ୧୯୧୪ କାହିଁକି ୧୯୧୩ ପୂର୍ବରୁ ପ୍ରଚାରକ ଅନନ୍ତ ମିଶ୍ର ସିଂହଭୂମ୍‌କୁ ଯାଇଛନ୍ତି ।

ପ୍ର- - -ଆପଣ କେଉଁ ବର୍ଷ ପର୍ଯ୍ୟନ୍ତ ବୃନ୍ଦାବନରେ ରହି ପଢ଼ିଛନ୍ତି ?

ଉ- - -୧୯୧୬ରୁ ୧୯୨୧ ପର୍ଯ୍ୟନ୍ତ ।

ପ୍ର- - -ତାହେଲେ କୁହନ୍ତୁ ସିଂହଭୂମିର କେଉଁ କେଉଁ ଲୋକ ଗୋପବନ୍ଧୁଙ୍କୁ ସାହାଯ୍ୟ କରୁଥିଲେ ।

ଉ- - -କାହ୍ନୁକିଶୋର ପାଣି, ଈଶ୍ୱର ହୋତା । କମଳକୃଷ୍ଣ ପ୍ରଧାନ, ଈଶ୍ୱର ଷଡ଼ଙ୍ଗୀ, ଗଡ଼କୃଷ୍ଣ ମିଶ୍ର । ଆଉ ଜଣେ ଥିଲେ ଧାନନାଥ ପାଣ୍ଡେ । ପ୍ରକୃତରେ କହିବାକୁ ଗଲେ, ଏକଥା ବାହାରେ ପ୍ରକାଶ କରିବା ସମୀଚୀନ ହେବ କି ନାହିଁ, ମୁଁ କହିପାରିବି ନାହିଁ କିନ୍ତୁ ପ୍ରକୃତ କଥା ହେଉଚି ଏଇଆ, ଯେ ସ୍ଥାନୀୟ ଓଡ଼ିଆ ଲୋକଙ୍କ ପାଖରୁ ଯେତେ ସହାୟତା ମିଳିଥିଲା

ଚନ୍ଦଧରପୁର ସ୍କୁଲ ସ୍ଥାପନ ପାଇଁ, ତା ଅପେକ୍ଷା ଅଧିକ ସହାୟତା ମିଳିଥିଲା ଘନନାଥ ପାଣ୍ଡେଙ୍କ ଠାରୁ । ସ୍ଥାନୀୟ ଲୋକଙ୍କର ପ୍ରତ୍ୟକ୍ଷ ସହାନୁଭୂତି ଚନ୍ଦଧରପୁର ହାଇସ୍କୁଲ ସ୍ଥାପନ ପାଇଁ ମିଳିପାରି ନଥିଲା । ଘନନାଥ ପାଣ୍ଡେଙ୍କଠାରୁ ମିଳିଥିଲା । ସେ ଘର ଦେଇଥିଲେ । ଆର୍ଥିକ ସାହାଯ୍ୟ ମଧ୍ୟ ଦେଇଥିଲେ ।

ପ୍ର···ପଇସିକିଆ ଫଣ୍ଡ ପାଇଁ ସାହାଯ୍ୟ କପରି ମିଳୁଥିଲା ।

ଉ···ପଇସିକିଆ ଫଣ୍ଡ ବିଶେଷ ଭାବରେ ଓଡ଼ିଶାରେ ହିଁ ଆଦାୟ ହେଉଥିଲା ।

ପ୍ର···ଅନନ୍ତ ମିଶ୍ର ସେଠି ଗୋଟିଏ ପ୍ରେସ୍ କରିଥିଲେ, କାଗଜ ବାହାର କରିଥିଲେ ।

ଉ···ହଁ ।

ପ୍ର···ସେ କୋଉ ସାଲ କଥା ?

ଉ···ସେ ହେବ ୧୯୧୫, ୧୯୧୬ କଥା ।

ପ୍ର···ସେଥିରେ ଗୋଦାବରୀଶ ବାବୁ ଗୋପବନ୍ଧୁ ବାବୁ ଲେଖା ଲେଖି କରୁଥିଲେ ।

ଉ···ହଁ ଗୋଦାବରୀଶ ବାବୁ ଲେଖିବା କଥା ମୁଁ ଜାଣେ ।

ପ୍ର—ସେ କାଗଜ କୋଉ ପର୍ଯ୍ୟନ୍ତ ଚାଲିଥିଲା ।

ଉ—'୨୦ ବେଳକୁ ସେ କାଗଜ ବନ୍ଦ ହୋଇଗଲା ।

ପ୍ର—ଗୋଦାବରୀଶ ମିଶ୍ରଙ୍କ ସମ୍ପର୍କରେ ଆପଣ ଆସିଛନ୍ତି କି ? ତାଙ୍କ ସମ୍ବନ୍ଧରେ କିଛି କହିବେ ?

ଉ—ବହୁତ, ବହୁତ । ମୁଁ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଚି । ଗୋଟିଏ ବିଶେଷ ଘଟଣା କହୁଚି, ଏଇଆ, ଯେତେବେଳେ ଉତ୍କଳ ସମ୍ମେଳନୀ ସେଇ ଚନ୍ଦଧରପୁରଠାରେ ଡିସେମ୍ବରରେ ହେବା ସ୍ଥିର କରାଗଲା, ତା ସଙ୍ଗେ ସଙ୍ଗେ 'ଅଲ୍ ଓଡ଼ିଶା ଷ୍ଟୁଡେଣ୍ଟସ୍ କନ୍‌ଫରେନସ୍' ମଧ୍ୟ ହେବା ସ୍ଥିର କରାଗଲା । ଗୋଦାବରୀଶ ବାବୁ ମତେ କହିଥିଲେ, ଗୁଇଁବସାରେ ଛାତ୍ରମାନଙ୍କଠୁ ସେଥିପାଇଁ କିଛି ଚାନ୍ଦା ସଂଗ୍ରହ କରିବା ପାଇଁ । କିଛି ଚାନ୍ଦା ସଂଗ୍ରହ କାର୍ଯ୍ୟରେ ଲାଗିଥିଲି । ରସିଦ ଦେଇ ଚାନ୍ଦା ନେଉଥିଲି ପିଲାମାନଙ୍କଠୁ । ଏ କଥା ଜଣା ପଡିଗଲା ହେଡ୍‌ମାଷ୍ଟରଙ୍କୁ । ସେ ମତେ ଡାକିଲେ ପଚାରିଲେ

କହିଲେ—ତୁମେ କ'ଣ କଂଗ୍ରେସର ଏଜେଣ୍ଟ ହୋଇଛ ? କଂଗ୍ରେସର ଏଜେଣ୍ଟ ଭଳିଆ କାମ କରୁଛ ସ୍କୁଲ ଭିତରେ ? ନା ଗୋଦାବରୀଶ ବାବୁଙ୍କ ଏଜେଣ୍ଟ ହୋଇ ଏଠି କାର୍ଯ୍ୟ କରୁଛ ? ସେ ମୋ ଉପରେ ବିରକ୍ତି ପ୍ରକାଶ କରିଥିଲେ । ଏବଂ ମୋତେ କହିଲେ ଯେ କେତେ ଟଙ୍କା ତୁମେ ଆଦାୟ କରିଛ ? ମୁଁ ସେ ଖାତା ନେଇ ତାଙ୍କୁ ଦେଖେଇଲି । ସେତେବେଳକୁ ଶହେ ଅଠର ଟଙ୍କା ମାତ୍ର ମୁଁ ଆଦାୟ କରିଥାଏ । ସେଥିପାଇଁ ସେ ମୋ ଉପରେ ବହୁତ ବିରକ୍ତ ହେଲେ, କହିଲେ ତୁମେ ସ୍କୁଲରେ ବିନା ଅନୁମତିରେ ଏପରି ଚାନ୍ଦା ଅସୁଲ କିପରି କଲ ? ମୁଁ କହିଲି ଆଜ୍ଞା, ଏଇଟା ତ ଅଲ୍ ଓଡ଼ିଶା ଷ୍ଟୁଡେଣ୍ଟସ କନ୍‌ଫରେନ୍‌ସ ପାଇଁ କରାଯାଉଛି । ତା'ର ଉତ୍ତରରେ ସେ କହିଥିଲେ ଗୋଟିଏ କଥା—ଯାହା ଏ ପର୍ଯ୍ୟନ୍ତ ମୋ ମନରେ ଝଙ୍କାର ତୋଳୁଛି, ସେ କହିଥିଲେ··ଅଲ୍ ଓଡ଼ିଶା ଷ୍ଟୁଡେଣ୍ଟ୍‌ସ କନ୍‌ଫରେନ୍‌ସର ବୃଇଁବସା ଜିଲ୍ଲା ସ୍କୁଲ କିଛି ଭାଗୀଦାର ନୁହେଁ । ସେଇଟା ତ ଅଲ୍ ଓଡ଼ିଶା, ଏଇଟା ତ ଓଡ଼ିଶା ବାହାରର । ତମେ ଏଠୁ କାହିଁକି ଚାନ୍ଦା ତୋଳୁଛ ? ସେ ଯାହା ହେଉ ତାଙ୍କ କଥାପ୍ରତି ବିଶେଷ ଭ୍ରୂକ୍ଷେପ ନ କରି ମୁଁ ସେଇ ଚାନ୍ଦା ସଂଗ୍ରହ କାର୍ଯ୍ୟରେ ଲାଗିଥିଲି ଏବଂ ଗୋଦାବରୀଶ ବାବୁଙ୍କୁ ସେ କଥା ଜଣାଇ ଦେଲି । ଗୋଦାବରୀଶ ବାବୁ ତା'ର ଉତ୍ତରରେ ମତେ ଲେଖିଲେ ଯେ ଯଥେଷ୍ଟ ସାହସ ତୁମେ ପ୍ରକାଶ କରିଛ । ଯୋଉ ଚାନ୍ଦା ତୁମେ ସଂଗ୍ରହ କରିଛ, ତା' ଏଠିକି ପଠାଇ ଦିଅ । ଏବଂ ଆଉ ଯାହା ପାରିବ ତା ମଧ୍ୟ ସଂଗ୍ରହ କରୁଥାଅ । କିନ୍ତୁ ଦୁଃଖର କଥା ଏଇଆ, ମୁଁ ଆଉ ଛାତ୍ର ସମ୍ମେଳନୀରେ ଯୋଗ ଦେବାର ସୁଯୋଗ ପାଇପାରିଲି ନାହିଁ । ତା'ର କାରଣ··ମୁଁ ସେତେବେଳେ, କହିବାକୁ ଗଲେ ଏକ ପ୍ରକାର ନାମଯାଦା ଛାତ୍ର ଥିଲି, ପଢ଼ାପଢ଼ି ଭଲ କରୁଥିଲି । ବିହାର ଓଡ଼ିଶା ସ୍କୁଲର ସିପ୍ ପାଇବି, ସେଇଥିପାଇଁ ହେଡ୍‌ମାଷ୍ଟର ମତେ ତାଗିଦ କରି କହିଲେ । ଏବଂ ସ୍କୁଲରେ ନୋଟିସ ଦେଇଦେଲେ ଯେ, କୌଣସି ଛାତ୍ର 'ଅଲ୍ ଓଡ଼ିଶା ଷ୍ଟୁଡେଣ୍ଟ୍‌ସ କନ୍‌ଫରେନସରେ' ଚକ୍ରଧରପୁରରେ ଯୋଗ ଦେବେ ନାହିଁ । ସେଥିପାଇଁ ମୋର ପିତା ମଧ୍ୟ ମତେ ବାରଣ କଲେ । ତା ପରେ ଗୋଦାବରୀଶ ବାବୁଙ୍କ ସହିତ ଯେତେବେଳେ ଦେଖା ହେଲା ତାଙ୍କୁ ଏ ସବୁ କଥା କହିଲି । ତା'ପରେ ମତେ ସେ ଲେଖି ପଠାଇଲେ ଭଲ ହେଲା··ତୁମେ

ନଆସିଲେ ନଆସ ପଛକେ, ସେଥିପାଇଁ ଦୁଃଖିତ ହୁଅ ନାହିଁ, କନ୍‌ଫରେନ୍‌ସରେ ଯାହା କିଛି ହେବ ତା ତୁମେ ଜାଣି ପାରିବ ଏବଂ କନ୍‌ଫରେନ୍‌ସ ପରେ ଏଠାକୁ ଆସିଲେ, ମୁଁ ସବୁ କଥା କହିବି।

ପ୍ର···ଗୋପବନ୍ଧୁଙ୍କ ସଂସ୍ପର୍ଶରେ ଆପଣ ଆସିଛନ୍ତି କି ?

ଉ···ଅନେକ, ଅନେକଥର ଆସିଛି। ଗୋପବନ୍ଧୁ ଯେତେବେଳେ ପାଟଣା ଯାଉଥିଲେ ବିହାର ଓଡ଼ିଶା କାଉନ୍‌ସିଲ୍‌ରେ ଯୋଗଦେବା ପାଇଁ, ପ୍ରାୟ ପ୍ରତ୍ୟେକଥର ସେଠାରୁ ଫେରିଲାବେଳକୁ ସେ ଚକ୍ରଧରପୁର ବାଟ ଦେଇ ଚୁଇଁବସା ଆସି, କିଛି ଦିନ ରହୁଥିଲେ, ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ଯୋଉଘରେ ରହୁଥିଲେ ତା' ସାମ୍‌ନା-ସାମନି ଗୋଟିଏ ଘର ଥାଏ, ସେଇ ଘରେ ସବୁସୁବିଧା କରାଯାଇଥାଏ, ସେଇଠି ସେ ଥାଆନ୍ତି। ସେଠାକୁ ଚୁଇଁବସାର ସମସ୍ତେ ଆମେମାନେ ଯାଉଥିଲୁ। ଆମେମାନେ କହିବା ଠିକ୍ ହେବ ନାହିଁ, ପ୍ରକୃତ ପକ୍ଷରେ ଯାଉଥିଲେ ମୋର ପିତା ଏବଂ ଅନ୍ୟାନ୍ୟ ଓଡ଼ିଆ, ଅଳ୍ପ ସଂଖ୍ୟକ ବାସିନ୍ଦା ଯୋଉମାନେ ଥିଲେ ସେଇମାନେ ଯାଉଥିଲେ। କିନ୍ତୁ ମୁଁ ପିତାଙ୍କ ସାଙ୍ଗରେ ସବୁବେଳେ ଯାଉଥିଲି। ଏବଂ ମୁଁ ଜାଣୁଥିଲି ସେମାନେ ସେଇଟା ପସନ୍ଦ କରୁନାହାନ୍ତି। ମୁଁ ହଉଚି ପିଲା, ଅଳ୍ପ ବୟସର, ଏବଂ ଗୁରୁଜନମାନଙ୍କ ଆଲୋଚନାରେ ଯୋଗ ଦେବା ମୋ ପକ୍ଷେ ସମୀଚୀନ ନୁହେଁ, ଏକଥା ମୋ ପିତାଙ୍କର ଏବଂ ଅନ୍ୟାନ୍ୟମାନଙ୍କର ମଧ୍ୟ ମନରେ ଧାରଣା ଥିବାର ମୁଁ ଅନୁଭବ କରି ପାରୁଥିଲି କିନ୍ତୁ ତା ସତ୍ତ୍ୱେ ଜବରଦସ୍ତି ଗୋଡ଼ ପୂରେଇଲା ଭଳି ମୁଁ ତାଙ୍କ ସାଙ୍ଗେ ସାଙ୍ଗେ ଯାଉଥିଲି କାହିଁକି ନା ଗୋପବନ୍ଧୁଙ୍କ ଆକର୍ଷଣ ପାଇଁ ବିଶେଷ ଭାବରେ। କାହିଁକି ନା, ସେଠାରେ ଜାତୀୟତା ସୂଚକ ଯେଉଁ ଆଲୋଚନା ସବୁ ହେଉଥିଲା ମୋର ମନ ଓ ହୃଦୟଗ୍ରାହୀ ହେଉଥିଲା ସେ ସବୁ। ଏବଂ କହିବାକୁ ଗଲେ, ଏପର୍ଯ୍ୟନ୍ତ ମଧ୍ୟ ମୁଁ ଏକଥା ସ୍ୱୀକାର କରି ଆସୁଛି, ଯେ ଜାତୀୟତାର ସୂତ୍ରପାତ ମୋ ଜୀବନରେ ଯଦି ହୋଇଥାଏ, ତା କେବଳ ସେଇ ଆଲୋଚନାରୁ ହୋଇଥିଲା। ଗୋପବନ୍ଧୁଙ୍କ ସାଙ୍ଗରେ ଚୁଇଁବସାର ବାସିନ୍ଦାମାନେ ଯୋଉ ଆଲୋଚନା କରୁଥିଲେ ସେଇ ସବୁ ଶୁଣି, ଏବଂ ସେଇଥିରେ କିଞ୍ଚିତ କିଞ୍ଚିତ ଯୋଗ ଦେଇ ମୋର ଜାତୀୟତା ଭାବ ଯାହା କିଛି ଜୀବନରେ ଆସିଛି, ତାର ସୂତ୍ରପାତ ସେଇଠାରେ ହୋଇଥିଲା। ଗୋପବନ୍ଧୁ ସେଇ ସବୁ ସାନ୍ଧ୍ୟ ବୈଠକ-

ମାନଙ୍କରେ ହସ ଖୁସି ତ ଖୁବ୍ କରୁଥିଲେ ତା ଛଡ଼ା ଅତ୍ୟନ୍ତ ଗୁରୁତ୍ୱ ଦେଉଥିଲେ ଶ୍ରେଷ୍ଠ ଶ୍ରେଷ୍ଠ କଥାମାନଙ୍କ ପ୍ରତି । ଅର୍ଥାତ୍ ସ୍କୁଲରେ ବୃତ୍ତି ପାଇବା, ଜିଲ୍ଲା ସ୍କୁଲରେ ବୃତ୍ତି ମିଳିବା, ପ୍ରାଇମେରୀ ସ୍କୁଲ ପାଇଁ ଗଭର୍ଣ୍ଣମେଣ୍ଟ ଗ୍ରାଣ୍ଟ ମିଳିବା, ପ୍ରାଇମେରୀ ସ୍କୁଲମାନଙ୍କରେ ଓଡ଼ିଆ ଶିକ୍ଷକ ଟ୍ରେଣ୍ଡ ହୋଇ ଯୋଗ ଦେବା, ଏ ସବୁ କଥା ଆଲୋଚନା କରିବା ମୋର ସ୍ମରଣ ହେଉଚି । ଏବଂ ସେତେବେଳେ ସେ କହୁଥିଲେ—ନହେଲ୍ ନାହିଁ, ଏଠାରେ ଯଦି କେହି ଶିକ୍ଷକ ନମିଳୁଛନ୍ତି, ମୁଁ ଓଡିଶାରୁ ଟ୍ରେଣ୍ଡ ହୋଇଥିବା ପ୍ରାଇମେରୀ ଶିକ୍ଷକ ସବୁ ପଠେଇଦେବି । ଏଠି ସେମାନେ ରହିବେ । କପରି ସେମାନେ ଚଳିବେ, ଟଙ୍କା କୋଉଠୁ ଆସିବ, ଏ ସବୁ କଥା ମଧ୍ୟ ଆଲୋଚନା ହେଉଥିଲା । ଏସବୁ କଥା ଆଲୋଚନାରେ ଅନେକ ସମୟରେ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଆସି ଯୋଗଦେଉଥିଲେ । କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ବଡ଼ପୁଅ ପ୍ରସନ୍ନ ଆଚାର୍ଯ୍ୟ ସେତେବେଳକୁ ଗୃହିଁବସାରେ ଡେପୁଟି ମାଜଷ୍ଟ୍ରେଟ୍ ହୋଇଥାନ୍ତି । ସେ ମଧ୍ୟ ଲୁଚିଲି ଭିଳିଆ ଆସି ଏ ସାନ୍ଧ୍ୟ ସମ୍ମେଳନୀରେ ଯୋଗ ଦେଉଥିଲେ । ବ୍ରଜମୋହନ ଦ୍ୱିଚାଠୀ ମଧ୍ୟ ଆସୁଥିଲେ । କିନ୍ତୁ ଗୋପବନ୍ଧୁଙ୍କର ସେ ସମୟରେ କେତୋଟି କଥା ମୁଁ ଯଦି ଆପଣଙ୍କୁ ସୂଚନା ଦେବି ତା'ହେଲେ ଅପ୍ରାସଙ୍ଗିକ ନହୋଇପାରେ । ଗୋପବନ୍ଧୁ ଆସି ସେଠାରେ ରହିଛନ୍ତି । ଜିଲ୍ ସ୍କୁଲ ସହିତ ତ ତାଙ୍କର ପରିଚୟ ହୋଇଯାଇଚି । ଜିଲ୍ଲା ସ୍କୁଲରେ ସେତେବେଳେ ସରସ୍ୱତୀ ପୂଜା ହେବାର ଯୋଗାଡ଼ ଚାଲିଥାଏ, ସମସ୍ତେ କହିଲେ, ବିଶେଷତଃ ମାଷ୍ଟ୍ରେମାନେ କହିଲେ ଯେ—ଗୋପବନ୍ଧୁ ତ ହେଉଛନ୍ତି କାଉନସିଲ୍ ମେମ୍ବର, ସମସ୍ତଙ୍କର ଧାରଣା ଥିଲା, ବଡ଼ ଲୋକ ହୁଏତ ହୋଇଥିବେ, ଯାଅ ତାଙ୍କ ପାଖରୁ ଚାନ୍ଦା ଆଣିବ । ମୁଁ ଏବଂ ନଗେନ୍ଦ୍ରନାଥ ସରକାର ବୋଲି ଜଣେ ଯୁବକ ମୋର ସହପାଠୀ, ଆମେ ଦୁଇଜଣଯାକ ଗଲୁ । ନଗେନ୍ଦ୍ର ନାଥ ସରକାର ହଉଛନ୍ତି ସେଠାକାର ଯେ ସରକାରୀ ଓକିଲ ଥିଲେ ତାଙ୍କର ପୁଅ । ଆମେ ଦୁଇଜଣ ସେତେବେଳେ ଗୋପବନ୍ଧୁଙ୍କ ପାଖକୁ ଯାଉ ପ୍ରାୟ ଦିନ ଦୁଇଟାବେଳେ, ଦେଖିଲୁ ଗୋପବନ୍ଧୁ ବାହାର ବାରଣ୍ଡାରେ ଖମ୍ବକୁ ଆଉଜି ଠିଆ ହୋଇଛନ୍ତି, ପାଦରେ ଖଡ଼ମ । ପିନ୍ଧିବା ଲୁଗା ଉପରେ ଖଦୀ କରିଆ ଧୋତି ଖଣ୍ଡିଏ, ଖାଲି ଦେହରେ ଠିଆ ହୋଇଚନ୍ତି ।

ଆମେ ଯାଇଁ ଯେମିତ ପହଞ୍ଚିଲୁ, ସେତେବେଳେ ସେ ଟେଲ କଲା ଭଳିଆ କହିଲେ, କୁଆଡେ ସବୁ ଆସିଲ ? ମୁଁ କହିଲି ଆମମାନଙ୍କର ଅଭିପ୍ରାୟ କଥା ଏବଂ ମୋ ସାଥିରେ ଯେ ଥିଲେ ନଗେନ୍ଦ୍ର ସରକାର ସେ ମଧ୍ୟ କହିଲେ—ଆମର ଏସେଟା କିଛୁ ଚୂନ୍ଦା ସଗ୍ରହ କରବାର ଜନ୍ୟେ ।

ତାର ଉତ୍ତରରେ ସେ କହିଥିଲେ—ଆମି ତ ଏଖାନେ ଆଗନ୍ତୁକ । ଆମି ଆର କି ଦେବୋ । ଆଚ୍ଛା, ଏତକ କହି ଘର ଭିତରକୁ ଗଲେ ଏବଂ ଆଣି ପାଞ୍ଚଟି ଟଙ୍କା ଆମକୁ ଦେଲେ । ସେଇ ପାଞ୍ଚଟି ଟଙ୍କା ତାଙ୍କଠୁ ନେଇ ଆମେ ଯେତେବେଳେ ସ୍କୁଲକୁ ଫେରିଲୁ ସେତେବେଳେ ସମସ୍ତେ ଉତ୍କଣ୍ଠିତ ଭାବରେ ପଚାରିଲେ—କଂଣ ଚାନ୍ଦା ପାଇଲ ? ଆମେମାନେ ଯେତେବେଳେ କହିଲୁ, ପାଞ୍ଚଟଙ୍କା ଚାନ୍ଦା ପାଇଛୁ ବୋଲି, କାରଣ ସେତେବେଳେ କୌଣସି ଲୋକଠାରୁ ପାଞ୍ଚଟଙ୍କା ଚାନ୍ଦା ମିଳିବା କଷ୍ଟକର କଥା ଥିଲା, ସେତେବେଳେ ଗୋପବନ୍ଧୁଙ୍କର ଖ୍ୟାତି ପିଲଙ୍କ ଭିତରେ ଖୁବ୍ ବଢିଗଲା । ତା' ପରେ ପିଲାମାନେ ଆଉ ଥରେ ଦୁଇ ଥର ମଧ୍ୟ ତାଙ୍କ ପାଖକୁ ଯାଇଛନ୍ତି । ଗୋଟିଏ ସଭା କରିବା ପାଇଁ, ତାଙ୍କୁ ଡାକିବାକୁ ଯାଇଥିଲେ । କିନ୍ତୁ ତାଙ୍କର କାର୍ଯ୍ୟକ୍ରମ ଅନ୍ୟତ୍ର ଥିବାରୁ ସେ ସେଥିରେ ଯୋଗଦେଇ ପାରିଲେ ନାହିଁ ।

ଆଉ ଗୋଟିଏ ଘଟଣା ମୋର ମନେ ଅଛି ଯେ, ଖାଇବା ପିଇବାର କ'ଣ ଯୋଗାଡ଼ ହେଉଥିଲା । ସେ ଯୋଉ ବସାଘରେ ରହିଥିଲେ । କିନ୍ତୁ ଅନେକ ବିଳମ୍ବ ହୋଇଗଲା ପ୍ରାୟ ରାତି ନଅଟା ବେଳକୁ ଯେତେବେଳେ ଗୋପବନ୍ଧୁ ପଚାରିଲେ ଯେ, ଖାଇବା-ପିଇବା କେତେଦୂର ଗଲା ବୋଲି, ସେତେବେଳେ ଯୋଉ ଲୋକ ତାଙ୍କ ସାଙ୍ଗରେ ଥିଲେ, ବୋଧହୁଏ ରାମା ଥିଲା, ସେ କହିଲା, ହଁ ସବୁ ହେଇ ଯାଇଛି, କେବଳ ଚାଉଳ ପଡ଼ିନାହିଁ । 'କାହିଁକି ପଡିନ ବୋଲି ପଚାରିବାରେ' ସେ କହିଲା ଚାଉଳ ଏ ପର୍ଯ୍ୟନ୍ତ ଆସିନାହିଁ । ମୁଁ ଦେଖିଲି ଯେ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ପ୍ରଭୃତି ଯୋଉମାନେ ସେଠାରେ ଉପସ୍ଥିତ ଥିଲେ, ସେମାନେ ଅତ୍ୟନ୍ତ ବ୍ୟସ୍ତ ହୋଇଗଲେ ଏକଥା ଶୁଣିକରି, ସାଙ୍ଗେ ସାଙ୍ଗେ ଚାଉଳ ଆସିଲା । କିନ୍ତୁ ଗୋପବନ୍ଧୁ ବାବୁ ଥଟ୍ଟାରେ କହିଲେ—ଏତେ ରାତି ତ ହେଲାଣି ଆଉ କ'ଣ କରିବା । ଯାହା ତରକାରୀ

ପଡ଼ ହେଉଛି ତାଙ୍କୁ ଚାଲ ଖାଉଦେବା, ଗୃଉଲକଳ ଓଦାକର ଆଟ, ଏଠି ବାଣି ବୁଣି ପାଛିରେ ପକେଇ ଚେଷ୍ଟିବେଇ ଦେବା ।

ପ୍ର—ସ୍କଟ ସାହେବଙ୍କ ସହିତ ତାଙ୍କର ଦେଖା ସମ୍ବନ୍ଧରେ ଗୋଟିଏ କାହାଣୀ ଆପଣ ମତେ କହୁଥିଲେ ।

ଉ—ହଁ, ସ୍କଟ ସାହେବ ସେତେବେଳେ ସିଂହଭୂମ ଜିଲ୍ଲାରେ ଥିଲେ ଡେପୁଟି କମିଶନର । ତାଙ୍କ ସହିତ ଗୋପବନ୍ଧୁ ଅନେକଥର ଦେଖା କରିବାକୁ ଯିବା କାର୍ଯ୍ୟକ୍ରମ ରଖିଥାନ୍ତି । ଅନେକ ସ୍ଥାନୀୟ ସମସ୍ୟା ଥାଏ, ସେ ସମ୍ବନ୍ଧରେ ତାଙ୍କ ସହିତ ଆଲୋଚନା କରିବା ପାଇଁ ଯିବାର କଥା ଥାଏ । ସ୍କଟ ସାହେବଙ୍କୁ ଥରେ ଦେଖାକରିବାର ଆପଏଣ୍ଟମେଣ୍ଟ ସ୍ଥିର ହୋଇଥିଲା, ଯୋଉଦିନ ସନ୍ଧ୍ୟାବେଳେ ଏକଥା ପଡ଼ିଛି ତା ପରଦିନ ଏଗାରଟାବେଳକୁ ତାଙ୍କ ପାଖକୁ ଯିବା କଥା ତାଙ୍କର । ସେତେବେଳେ ଆଲୋଚନା କରି ଜଣାଗଲା, ଯେ ତାଙ୍କ ସାଙ୍ଗରେ ଆଉ କେହି ପରଦିନ ଏଗାରଟାବେଳକୁ ଯାଇ ପାରିବେ ନାହିଁ କାହିଁକି ନା ପୂର୍ଣ୍ଣ ବାବୁ ଓକିଲ ଥିଲେ । ସେ ତାଙ୍କର କଚେରୀକୁ ଚାଲିଯିବେ । ମୋ ପିତା ଶିକ୍ଷକ ଥିଲେ, ଜିଲ୍ଲା ସ୍କୁଲକୁ ଚାଲିଯାଇଥିବେ, ଅନ୍ୟାନ୍ୟମାନେ ଆଉ କେହି ତାଙ୍କ ସହିତ ଯିବାର ସୁବିଧା ନଥିଲା । ସେତେବେଳେ କଥା ପଡ଼ିଲା ଯେ କେମିତି ଗୋପବନ୍ଧୁ ଯିବେ, କାରଣ ସ୍କଟ ସାହେବଙ୍କର ଯେଉଁ ବଙ୍ଗଳା ଥିଲା, ରାସ୍ତା ପାଖ ଗେଟ୍‌ଠାରୁ ବହୁତ ଦୂରରେ ତାଙ୍କ ବଙ୍ଗଳା ତା ଭିତରେ ଥାଏ । ସୁତରାଂ ଆଗ କିପରି ଖବର ପଠେଇବେ ଜଣେ କେହି ସାଙ୍ଗରେ ନଥିଲେ, ସେଇ କଥା ନେଇ ଆଲୋଚନା ହେଉଥିଲା ।

ଗୋପବନ୍ଧୁ ଶେଷକୁ କହିଲେ—ହଉ କେହି ଯଦି ନମିଳିବେ ନମିଳନ୍ତୁ ମୁଁ ଏକୁଟିଆ ସବୁ କାମ ଚଳେଇ ଦେବି । ତାଙ୍କୁ ଯେତେବେଳେ ପଚାରିଲେ କେମିତି ଆପଣ ଏକୁଟିଆ କାମ ଚଳେଇବେ ? ସେ କହିଲେ, ଘୋଡ଼ା ଗାଡ଼ିରେ ଯିବି । ପ୍ରଥମରୁ ଘୋଡ଼ା ଗାଡ଼ି ଗେଟ୍ ପାଖରେ ରହିବ । ମୁଁ ଓହ୍ଲେଇ କରି ଆଗ ଚପରାସି ଭଳିଆ ଚାଲିଯିବି ମୋ କାର୍ଡ ନେଇକରି ସାହେବଙ୍କ ପାଖକୁ ପଠେଇ ଦେବି, ବାରଣ୍ଡାରେ କାହା ହାତରେ । ପଠେଇ ଦେଇ ପୁଣି ଫେରି ଆସି, ଗାଡ଼ିରେ ବସିଯିବି । ଯେତେବେଳେ ତାଙ୍କ

ଚତୁରସି ଆସି ମତେ ଖବର ଦେବ, ସାହେବ ଡାକୁଚନ୍ତି ବୋଲି ସେତେ-ବେଳେ ମୁଁ ପୁଣି ଗାଡ଼ିରୁ ଓହ୍ଲେଇ କରି, ଗୋପବନ୍ଧୁ ଦାସ, ଏମ୍. ଏଲ୍. ସି ହେଇ ଯାଇଁ ଦେଖା କରିବି । ଏକଥା ଶୁଣି କରି ସମସ୍ତଙ୍କ ପାଖରୁ ଅତ୍ୟନ୍ତ ହାସ୍ୟରୋଳ ଉଠିଲା, ଏବଂ ସମସ୍ତେ ଗୋପବନ୍ଧୁଙ୍କର ଏଇ କୌତୁକ କଥା ଶୁଣି ଅଭିଭୂତ ହୋଇ ପଡ଼ିଥିଲେ ।

ପ୍ର—୧୯୧୮ ବେଳକୁ ସତ୍ୟବାଦୀ ବନବିଦ୍ୟାଳୟ ଏକପ୍ରକାର ଭାଙ୍ଗିଯାଇ ଥିଲା ବୋଲି ପଣ୍ଡିତ ନୀଳକଣ୍ଠ ଦାସ ଲେଖିଛନ୍ତି ।

ଉ—ନାଁ, ୧୯୧୮ ବେଳକୁ ଭାଙ୍ଗିଯାଇନ । ଭାଙ୍ଗିଯିବାର ଉପକ୍ରମ ହୋଇ-ଥିଲା । ପ୍ରକୃତ ପକ୍ଷରେ ଭାଙ୍ଗିଗଲା ୧୯୨୧ ବେଳକୁ ଯେତେବେଳେ ଅସହ-ଯୋଗ ଆନ୍ଦୋଳନ ଖୁବ୍ ଜୋରସୋରରେ ଚାଲିଲା ସେତେବେଳେ । ଯଦିଓ ଅନେକ ଶିକ୍ଷକଙ୍କର ମତ ସେ ଦିଗରେ ନଥିଲା, ତଥାପି ଗୋପବନ୍ଧୁଙ୍କର ପ୍ରରୋଚନାରେ, ତାକୁ ଜାତୀୟ ବିଦ୍ୟାଳୟ କରିବାର ସ୍ଥିର କରାଗଲା ଏବଂ ସେତେବେଳକୁ ପୂର୍ବର ବନବିଦ୍ୟାଳୟ ଭାଙ୍ଗିଗଲା ବୋଲି କହିଲେ ଏକ-ରକମ ସତ ହୋଇପାରେ । କିନ୍ତୁ ପ୍ରକୃତପକ୍ଷରେ ଯେତେବେଳେ ଜାତୀୟ ବିଦ୍ୟାଳୟ ହେଲା ସେତେବେଳେ ମଧ୍ୟ ବନବିଦ୍ୟାଳୟର କାର୍ଯ୍ୟ ଚାଲିଥିଲା ।

ଯଦିଓ ଗୋଦାବରୀଶ ଓ କୃପାସିନ୍ଧୁ ବାବୁ ସିଂହଭୂମ୍ ଆଉ ଧଳଭୂମ୍ ଚାଲିଗଲେ ଏବଂ ପଣ୍ଡିତ ନୀଳକଣ୍ଠ ଦାସ କଲିକତା ଚାଲିଗଲେ, ତଥାପି ଆଚାର୍ଯ୍ୟ ହରିହର ଦାସ ସେଠାରେ ରହିଗଲେ । ତାଙ୍କର ନେତୃତ୍ୱରେ ସତ୍ୟବାଦୀ ସ୍କୁଲ ବନବିଦ୍ୟାଳୟ ଚାଲିଥିଲା । ଆଉ ୧୯୨୧ ଅସହଯୋଗ ଆନ୍ଦୋଳନ ପରେ, ଯେତେବେଳେ ଜାତୀୟ ବିଦ୍ୟାଳୟରେ ଚରିଣତ ହେଲା ସେତେବେଳେ ମଧ୍ୟ ଆଚାର୍ଯ୍ୟ ହରିହର ଦାସ ସେଠାରେ ରହି କାର୍ଯ୍ୟ କରୁଥିଲେ ।

ପ୍ର—୧୯୧୨ ବେଳକୁ ଦେଶ ମିଶ୍ରଣ ସମସ୍ୟା ଏକ ଗୁରୁତର ସମସ୍ୟା ରୂପେ ଦେଖା ଦେଇଥିଲା । ଓଡ଼ିଶାର ଚାରିପାଖରେ ଉପାନ୍ତ ଅଞ୍ଚଳର ଅବସ୍ଥା, ଦକ୍ଷିଣରୁ ତେଲଗୁ, ମେଦିନୀପୁରରୁ ବଙ୍ଗାଳୀମାନେ ଓଡ଼ିଶା ଭିତରକୁ ମାଡ଼ିଆସୁଥିଲେ । କିନ୍ତୁ ସେଇ ସବୁ ଉପାନ୍ତ ଅଞ୍ଚଳରେ, ଓଡ଼ିଆ ଶିକ୍ଷାର ଆନ୍ଦୋଳନ ନକରି, ସିଂହଭୂମ୍‌କୁ ବିଶେଷ ଭାବରେ ଗୁରୁତ୍ୱ ଦେଇ

ଗୋପବନ୍ଧୁ ବାବୁ ଯେ ଓଡ଼ିଆ ଶିକ୍ଷା ଆନ୍ଦୋଳନ ଆରମ୍ଭ କଲେ, ଏବଂ ଓଡ଼ିଆ ଜାତୀୟତା ଆନ୍ଦୋଳନ ମଧ୍ୟ ଆରମ୍ଭ କଲେ ପ୍ରବର୍ତ୍ତକ ଅନନ୍ତ ମିଶ୍ର ପ୍ରଭୃତିଙ୍କୁ ପଠେଇ, ଯାହା ମୂଳରେ ଅସଲ ଉଦ୍ଦେଶ୍ୟ ତାଙ୍କର କ'ଣ ଥିଲା ?

ଉ···ଗୋପବନ୍ଧୁ ବାବୁ ବଡ଼ ଦୂରଦ୍ରଷ୍ଟା ଥିଲେ । ବିହାର ଓଡ଼ିଶା ପ୍ରଦେଶ ଯେତେବେଳେ ୧୯୧୨ରେ ହେଲା, ଓଡ଼ିଶାକୁ ବିହାର ସହିତ ଯୋଡ଼େଇ ଦିଆ ଯାଇଥିଲା । ସେତେବେଳେ ଗୋପବନ୍ଧୁ ବାବୁ ଦେଖିଥିଲେ ଯେ, ବିହାର ବୋଇଲେ, ବିହାର ଭିତରେ ରହିବ ସିଂହଭୂମ୍ ଜିଲ୍ଲା । ସିଂହଭୂମ ଜିଲ୍ଲା ବୋଇଲେ, ତା ଭିତରେ ରହିବ ଦୁଇଟି କରଦ ରାଜ୍ୟ, ସରେଇକଳା-ଖରସୁଆଁ ଯୋଉଥିରେ ଓଡ଼ିଆ ରାଜା ସବୁ ରହିଚନ୍ତି । ଏବଂ ସେତେ-ବେଳକୁ ଟାଟା କମ୍ପାନୀ ବସି ସାରିଥିଲା ସାକଚୀଠାରେ, ଜାମସେଦ୍‌ପୁର-ଠାରେ, ଟାଟା କମ୍ପାନୀ ଆରମ୍ଭ ହେଇ 'କାମ' ଚାଲିଥିଲା । ସୁତରାଂ, ସିଂହ-ଭୂମକୁ କୌଣସି ପ୍ରକାର ଯଦି ଓଡ଼ିଶାକୁ ଅଣାଯାଇ ପାରିବ, ତା'ହେଲେ ଦୁଇଟି କରଦ ରାଜ୍ୟ ସେଠି ଯୋଉ ଅଛନ୍ତି, ତାଙ୍କର ସହାୟତା ମିଳିବ, ଏବଂ କାଳକ୍ରମେ ଦେଶର ଗୋଟିଏ ବଡ଼ ଶିଳ୍ପ ଅନୁଷ୍ଠାନ ମଧ୍ୟ ଓଡ଼ିଶାର ଅନ୍ତର୍ଭୁକ୍ତ ହୋଇ ପାରିବ । ଏଇ ଉଦ୍ଦେଶ୍ୟ ରଖି, ଗୋପବନ୍ଧୁ ତାଙ୍କର କାର୍ଯ୍ୟକ୍ରମ ବିଶେଷ ଭାବରେ ସମାଭୂତ କରିବାକୁ ଆରମ୍ଭ କରିଥିଲେ ।

ପ୍ରଶ୍ନ—ତା' ହେଲେ ମୁଁ ଯୋଉ ଆଲୋକପାତ କରିଚି ମୋ ବହିରେ, ୧୯୧୩ ବେଳକୁ ଗୋପବନ୍ଧୁ ଯେତେବେଳେ କେରା ଗଲେ, ସେତେବେଳକୁ ଟାଟା କମ୍ପାନୀର ନିର୍ମାଣ କାର୍ଯ୍ୟ ସମ୍ବନ୍ଧରେ ଅନେକ କିଛି ଜାଣି ଏ ସିଂହ-ଭୂମକୁ ଓଡ଼ିଶା ସହିତ ମିଶାଇବା ପାଇଁ ବିଶେଷ ଭାବରେ ଆଗ୍ରହୀ ହେଇ, ଓଡ଼ିଆ ଶିକ୍ଷା ଅନ୍ଦୋଳନ କାର୍ଯ୍ୟ ଆରମ୍ଭ କରିଥିଲେ, ତାହେଲେ ଏ ଧାରଣା ମୋର କିଛି ଭୁଲ୍ ନୁହେ ।

ଉ—ନା, ଆପଣଙ୍କର ଧାରଣା କଦାପି ଭୁଲ୍ ନୁହେଁ । ଆପଣଙ୍କର ସ୍ମରଣ ଥିବ, ଗୋପବନ୍ଧୁ ଯେତେବେଳେ ବାରିପଦାରେ ରହିଥିଲେ, ସରକାରୀ ଓକିଲ ହେଇ, ସେତେବେଳଠୁ ସେ ଜାଣିଥିଲେ ଯେ ଟାଟା କମ୍ପାନୀ, ଗୁରୁ-ମହିଷାଣୀ ପାହାଡ଼ରୁ ଲୁହା ପଥର ସବୁ ନେବାପାଇଁ କପରି ଭାବେ ଆୟୋଜନ କରିଥିଲେ, ମୟୂର ଭଞ୍ଜରେ ତାଙ୍କ ସହିତ । ସୁତରାଂ ସେ

ବିଗରେ ସମସ୍ତ ଖବର ରହିଥିଲା ତାଙ୍କ ପାଖରେ ବହୁତ ଆଗରୁ ।

ପ୍ର···ଉତ୍କଳ ସମ୍ମିଳନୀ ଯେତେବେଳେ ଚକ୍ରଧରପୁରରେ ହେଲା ଆପଣ ସେତେବେଳେ କ'ଣ ଗୃହିଁବସାରେ ଥିଲେ ।

ଉ—ହଁ, ସେ ହେଇଥିଲା ୧୯୨୦ ଡିସେମ୍ବର ୩୦ ଏବଂ ୩୧ ତାରିଖରେ ।

ପ୍ର—ଆପଣ କ'ଣ ଉପସ୍ଥିତ ଥିଲେ ମିଟିଂରେ ?

ଉ—ନା, ମୁଁ ଉପସ୍ଥିତ ନଥିଲି । ସେତେବେଳକୁ ଆମକୁ ନୋଟିସ ଦେଇ କହି ଦିଆଯାଇଥିଲା ଯେ କୌଣସି ଛାତ୍ର ଯାଇ ଉତ୍କଳ ସମ୍ମିଳନୀ, କିମ୍ବା 'ଅଲ୍ ଓଡ଼ିଶା ଷ୍ଟୁଡେଣ୍ଟସ୍ କନ୍‌ଫରେନ୍ସ୍' ଯାହା ସେତିକିବେଳେ ହବାର ଥିଲା, ଯୋଗ ନ ଦେବା ପାଇଁ ।

ପ୍ର - ସେଥିରେ ଓଡ଼ିଶାର ଯେଉଁ ବିଶିଷ୍ଟ ନେତାମାନେ ଯାଇଥିଲେ, ତାଙ୍କ ସହିତ ଗୋପବନ୍ଧୁଙ୍କର, କଂଗ୍ରେସକୁ ଓଡ଼ିଶାକୁ ଆଣିବା ପାଇଁ, ଯେଉଁ ମତ ପାର୍ଥକ୍ୟ ହୋଇଥିଲା ସେ ସମ୍ବନ୍ଧରେ ଆପଣ କିଛି ଶୁଣିଥିଲେ କି ?

ଉ - ବହୁତ ଗୃହଳ୍ୟ ସେତେବେଳେ ସୃଷ୍ଟି ହୋଇଥିଲା କାରଣ ଗୋପବନ୍ଧୁ ନାଗପୁର କଂଗ୍ରେସରୁ ଫେରି ଉତ୍କଳ ସମ୍ମିଳନୀରେ କଂଗ୍ରେସର ନନ୍‌କୋପରେସନ୍ ରିଜଲ୍ୟୁସନ ପାଶ୍ କରିବା ପାଇଁ ଚେଷ୍ଟା କରୁଥିଲେ । ଜଗବନ୍ଧୁ ବାବୁ ତାଙ୍କୁ ସେଥିରେ ସାହାଯ୍ୟ କରୁଥିଲେ । କିନ୍ତୁ ଅନ୍ୟାନ୍ୟ, ଅନେକ ଥିଲେ ଯେପରି କି ବ୍ରଜସୁନ୍ଦର ଦାସ, ମି: ମଧୁସୂଦନ ଦାସ ପ୍ରଭୃତି ଏମାନେ ସବୁ ତାଙ୍କୁ ବିରୋଧ କରୁଥିଲେ ।

ପ୍ର - ମି: ଦାସ କ'ଣ ସେ ମିଟିଂକୁ ଯାଇଥିଲେ ?

ଉ - ନା, ସେ ଯାଇ ନଥିଲେ । ସେତେବେଳକୁ ମି: ଦାସ, ବୋଧହୁଏ ବିହାର ଓଡ଼ିଶାର ମିନିଷ୍ଟର ହୋଇଥିଲେ । ବିଶ୍ୱନାଥ କର ସେ ମିଟିଂକୁ ଯାଇଥିଲେ । ଭିକାରୀ ଚରଣ ପଟ୍ଟନାୟକ ଯାଇଥିଲେ ବୋଧହୁଏ । ଲକ୍ଷ୍ମୀଧର ମହାନ୍ତି, ଏମାନେ ସବୁ ତାର ବିରୋଧ କରୁଥିଲେ ।

ପ୍ର - ବିରୋଧ କରିବାର କାରଣ କ'ଣ ଥିଲା, ଆପଣ ଅନୁମାନ କରୁଛନ୍ତି ।

ଉ - କାରଣ ହେଉଛି—ଏମାନେ ସବୁ ଥିଲେ ସରକାର ସହଯୋଗୀ ଦଳ । ଏପରିକି ଅସହଯୋଗ ଆନ୍ଦୋଳନ ଯେତେବେଳେ ଗୃହଲା ଓଡ଼ିଶାରେ,

ସେତେବେଳେ ମଧ୍ୟ ସେମାନେ ସରକାରଙ୍କ ପକ୍ଷରେ ରହି ଅସହଯୋଗ ଆନ୍ଦୋଳନକୁ ବିରୋଧ କରୁଥିଲେ । କଟକ ସହରରେ ଖଣ୍ଡେ କାଗଜ ମଧ୍ୟ ସେମାନେ ବାହାର କରୁଥିଲେ 'ସତ୍ୟ ସମାଚାର' ବୋଧହୁଏ ତା ନାଁ । ଅସହଯୋଗ ଆନ୍ଦୋଳନ ବିରୁଦ୍ଧରେ ବାହାର କଲେ କଟକ ସହରରୁ ।

ପ୍ର - ଗୋପବନ୍ଧୁଙ୍କର ଓଡ଼ିଶା ଉପକୂଳ ଅଞ୍ଚଳରେ ଯୋଉ କାର୍ଯ୍ୟକ୍ରମ ଥିଲା, ସେ ସବୁ ବିଶେଷ କରି ବଡ଼ି ମରୁଡ଼ି ଅଞ୍ଚଳରେ ସାହାଯ୍ୟ ଦେବା ଉଦ୍ଦେଶ୍ୟରେ ଆରମ୍ଭ ହୋଇଥିଲା । ତାଙ୍କର ପଲିଟିକାଲ ଲାଇଫ୍, ତାଙ୍କର ରାଜନୈତିକ କେରିଅର ଉନ୍ମେଷ ଏଇ ସମ୍ମିଳନୀରୁ ସିଂହଭୂମରୁହିଁ ହୋଇ ଥିଲା କାରଣ ନାଗପୁରରୁ ମହାତ୍ମାଗାନ୍ଧୀଙ୍କୁ କଂଗ୍ରେସକୁ ଓଡ଼ିଶା ଆଣିବାପାଇଁ ଚକ୍ରଧରପୁରରେ ଯେ ପ୍ରଥମ କଂଗ୍ରେସ ବାର୍ତ୍ତା ସେ ଉଚ୍ଚାରଣ କରିଥିଲେ, ସେଇଠୁ ତାଙ୍କର ରାଜନୈତିକ ଜୀବନର ପ୍ରଥମ ଉନ୍ମେଷ ବୋଲି ମୁଁ ବହିରେ ଲେଖିଛି । ଏ ସମ୍ବନ୍ଧରେ ଆପଣଙ୍କ ମତାମତ କ'ଣ ?

ଉ - ଏକ ପ୍ରକାର ତା' ହୋଇପାରେ । କାରଣ ପ୍ରକୃତ ପକ୍ଷରେ ଉତ୍କଳ ସମ୍ମିଳନୀ ଥିଲା ସେ ସମୟର, ସର୍ବ ପ୍ରଧାନ ଏବଂ ସର୍ବୋତ୍କୃଷ୍ଟ ଜାତୀୟ ଆନ୍ଦୋଳନର ପୀଠ ଓଡ଼ିଶାରେ । ସେଠାରେ ଅସହଯୋଗ ପ୍ରସ୍ତାବ ପାଶ୍ କରିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଏବଂ ତା କେବଳ ଗୋପବନ୍ଧୁଙ୍କ ଯୋଗୁଁ ସମ୍ଭବ ହୋଇ ପାରିଥିଲା । କିନ୍ତୁ ତା ପୂର୍ବରୁ ଗୋପବନ୍ଧୁଙ୍କର ମଧ୍ୟ ରାଜନୈତିକ କାର୍ଯ୍ୟ ଓଡ଼ିଶାରେ ଆରମ୍ଭ ହୋଇଥିଲା, କାହିଁକି 'ସମାଜ' ଯେତେବେଳଠାରୁ ସେ ପ୍ରତିଷ୍ଠା କଲେ, କେବଳ ଦୁର୍ଭିକ୍ଷ ଓ ବଢ଼ି, ସମ୍ବାଦ ପରିବେଷଣ ଭିତରେ ତାକୁ ସୀମାବଦ୍ଧ ନ କରି ଅନ୍ୟାନ୍ୟ ବିଷୟର ଆଲୋଚନା ମଧ୍ୟ ସେଥିରେ ସେ କରୁଥିଲେ । 'ସତ୍ୟବାଦୀ' ମାସିକ ପତ୍ରିକା ସେ ଯାହା ବାହାର କରିଥିଲେ ସେଥିରେ ମଧ୍ୟ ଅନ୍ୟାନ୍ୟ ସମ୍ପର୍କରେ ଅନେକ ସନ୍ଦର୍ଭ ସେ ପ୍ରକାଶ କରିଥିଲେ । ସୁତରାଂ ଗୋପବନ୍ଧୁଙ୍କର ଯେଉଁ ରାଜନୈତିକ ଚେତନା ସେ ଯେ କେବଳ ସିଂହଭୂମରେ ୧୯୨୦ ମସିହା ଡିସେମ୍ବର ମାସ ପରେ ଆରମ୍ଭ ହେଲା ଏ କଥା ବୋଧହୁଏ ଠିକ୍ ହେବ ନାହିଁ । ତେବେ ଏକଥା ନିଶ୍ଚିତ ଯେ ବ୍ୟବସ୍ଥାପକ ସଭାରେ ବିହାର

ଓଡଶା କାଉନସିଲ୍‌ର ମେମ୍ବର ଭାବରେ ଯୋଉ କାର୍ଯ୍ୟକ୍ରମ ସେ ହାତକୁ ନେଇଥିଲେ ତା'ର ପ୍ରଧାନ କାର୍ଯ୍ୟ କ୍ଷେତ୍ର ଥିଲା ସିଂହଭୂମ । ଏ ବିଷୟରେ କୌଣସି ସନ୍ଦେହ ନାହିଁ ।

ପ୍ର – ମୋର କହିବା କଥା, କଂଗ୍ରେସକୁ ଯଦି ଆମର ମହାଭାରତୀୟ ଜାତୀୟ ଅନୁଷ୍ଠାନ ବୋଲି ଆମେମାନେ କହୁ, ତା' ହେଲେ ସର୍ବଭାରତୀୟ ସ୍ତରରେ ଯୋଉ ଆନ୍ଦୋଳନ ପ୍ରଥମେ ଆରମ୍ଭ ହେଲା ମହାତ୍ମା ଗାନ୍ଧୀଙ୍କ ଦ୍ୱାରା, ତାକୁ ସେ ଓଡଶାକୁ ଆଣିବାରେ ତ ପ୍ରଧାନ ଆଉ ପ୍ରଥମ ବ୍ୟକ୍ତିଥିଲେ !
ଉ – ହଁ ସେଇଟି ଠିକ୍ କଥା, କିନ୍ତୁ ସେଇଟା ଉତ୍କଳ ସମ୍ମେଳନୀ ସେଠି ବସୁଥିଲା ବୋଲି, ସେଠି ସେ ଘଟଣା ଘଟିଲା । କିନ୍ତୁ ୧୯୨୧ ମସିହା ମାର୍ଚ୍ଚ ମାସରେ ଗାନ୍ଧି ଅସିଥିଲେ ସାକ୍ଷୀଗୋପାଳକୁ, ସେଠୁ ପୁରୀ ଗଲେ । ଏ ସବୁ କଥା ଯୋଉ ହେଲା, ସେଇ ହେଉଛି ପ୍ରକୃତ ପକ୍ଷେ ସୂତ୍ରପାତ, ଭାରତୀୟ ରାଜନୈତିକ ଚିନ୍ତାଧାରାର ପ୍ରଥମ ପ୍ରଭାବ ଓଡଶାରେ ଆରମ୍ଭ ହେଲା ସେଇ ସମୟରେ ।

ପ୍ର—ମୋର କହିବା କଥା, ସେଇଟା ଗୋଟାଏ ଯୋଗାଯୋଗ ହୋଇପାରେ କିନ୍ତୁ ସିଂହଭୂମ ଆମମାନଙ୍କ ପାଇଁ ଗୋପବନ୍ଧୁଙ୍କ ପାଦ ସ୍ପର୍ଶରେ ଏକ ପୁଣ୍ୟଭୂମି ବୋଲି ଆମେ ଗ୍ରହଣ କରିବୁ କି ନାହିଁ ?
ଉ—ହଁ, ଘଟଣା ଚକ୍ରରେ ସେଇଆ ହେଇଛି କାରଣ ତାଙ୍କର ପ୍ରଥମ ପଦକ୍ଷେପ, ମହାଭାରତୀୟ ଜାତୀୟ ଆନ୍ଦୋଳନର ପ୍ରଥମ ପଦକ୍ଷେପ ସିଂହଭୂମ୍‌ର ଚକ୍ରଧରପୁରଠାରୁ ଆରମ୍ଭ ହୋଇଛି ୧୯୨୦ ଡିସେମ୍ବର ୩୦, ୩୧ ତାରିଖରେ ।

ପ୍ର—ତାହେଲେ ତାଙ୍କର ଏ ଜନ୍ମଶତବାର୍ଷିକୀରେ ସିଂହଭୂମ୍ ପ୍ରତି, ଓଡଶା ରାଜ୍ୟ ସ୍ତରରେ କିଛି ଉଲ୍ଲେଖଯୋଗ୍ୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି କି ? ଆପଣଙ୍କ ମତାମତ କ'ଣ ?

ଉ···ଦୁଃଖର କଥା କହିବାକୁ ହେବ ଯେ ଏଇ ଗୋପବନ୍ଧୁଙ୍କ ଜନ୍ମ-ଶତ-ବାର୍ଷିକୀରେ ସିଂହଭୂମରେ ଯାହା କରିବାର କଥା ଥିଲା, ଯାହା ହେବା ଉଚିତ ଥିଲା ତା ଏ ପର୍ଯ୍ୟନ୍ତ ହେଇ ପାରି ନାହିଁ । କେବଳ ମାତ୍ର ଆପଣମାନଙ୍କର

ସେଠାକାର ସ୍ଥାନୀୟ ଅଧିବାସୀ, ଯୋଉ ଶତବାର୍ଷିକୀ ପାଳନ କରିଥିଲେ ଚକ୍ରଧରପୁରରେ ତା'ହେଉଛି ଆଉ ବିଶେଷ କିଛି ସେଠାରେ ହୋଇ ପାରିନାହିଁ ।

ପ୍ର···କ'ଣ ହେବା ଅନ୍ତତଃ ଉଚିତ ଥିଲା ବୋଲି ଆପଣଙ୍କର ଧାରଣା ?

ଉ···ମୋର ମନେ ହୁଏ, ଗୋଟିଏ କୌଣସି ସ୍ଥାୟୀ ଭାବରେ ଅନୁଷ୍ଠାନ ସିଂହଭୂମିରେ, ଗୋପବନ୍ଧୁଙ୍କ ସ୍ମୃତି ରକ୍ଷାର୍ଥ କରିବା ଉଚିତ । କେବଳ ଗୋଟିଏ ସ୍କୁଲ ବା କଲେଜ ସେପରି ନୁହେଁ, କୌଣସି ଗୋଟିଏ ବିଶିଷ୍ଟ ଜାଣିସୁଣିବା ସମ୍ପନ୍ନ ଅନୁଷ୍ଠାନ ସେଠାରେ ଯଦି ଆରମ୍ଭ କରାଯାଇ ପାରନ୍ତା ତାଙ୍କ ଶତବାର୍ଷିକୀ ବର୍ଷରେ ତାହେଲେ ପ୍ରକୃତ ପକ୍ଷରେ ଗୋପବନ୍ଧୁଙ୍କ ସ୍ମୃତି ସିଂହଭୂମିରେ ରହିଥାଆନ୍ତା ! ଆପଣ ଏକଥା ନିଶ୍ଚିତ ଭାବରେ ଜାଣନ୍ତୁ, ଯେ ସିଂହଭୂମ ବାସୀଙ୍କର ଗୋପବନ୍ଧୁଙ୍କ ପ୍ରତି ଯେପରି ଆଦର ଶ୍ରଦ୍ଧା ଏ ପର୍ଯ୍ୟନ୍ତ ରହିଛି ସେପରି ଅନ୍ୟାନ୍ୟ ବିଚ୍ଛିନ୍ନ ଅଞ୍ଚଳରେ ରହିଛି ବୋଲି କହି ହେବ ନାହିଁ । କାରଣ ସିଂହଭୂମ କ୍ଷେତ୍ରରେ ତାଙ୍କର ବହୁତ କାର୍ଯ୍ୟ ସେ କରିଯାଇଛନ୍ତି । ବହୁତ ଚିନ୍ତା ତାଙ୍କର ସେଠାରେ ପ୍ରକାଶ ପାଇଛି । ସେଥି ପାଇଁ ସିଂହଭୂମ ପ୍ରତି ତାଙ୍କର ମମତା ଥିଲା, ଏବଂ ସିଂହଭୂମବାସୀଙ୍କର ମଧ୍ୟ ତାଙ୍କ ପ୍ରତି ମମତା ଥିଲା । ସୁତରାଂ କୌଣସି ଗୋଟିଏ ସ୍ଥାୟୀ ଭାବରେ ଅନୁଷ୍ଠାନ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଯଦି ସେଠାରେ କରାଯାଆନ୍ତା ତାହେଲେ ଭଲ ହୁଅନ୍ତା ।

ଗୋଟିଏ କଳ୍ପନା କରାଯାଉଥିଲା ଯେ 'ଗୋପବନ୍ଧୁ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସୋସାଲ ଷ୍ଟଡିଜ୍' କରିବା ପାଇଁ, ଏଇ ତାଙ୍କ ଜନ୍ମ ଶତବାର୍ଷିକୀ ସମୟରେ ଗୋଟିଏ ଅନୁଷ୍ଠାନ ଗଢ଼ିବା ପାଇଁ ଆମମାନଙ୍କର ଅନେକ ଇଚ୍ଛାଥିଲା । ଯେପରି ବିହାରରେ ହେଇଛି ଅନୁଗ୍ରହ ନାରାୟଣ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ, ହୋଇଛି କେ: ବି· କେ ରାଓ ଯେପରି ମହୀଶୁରରେ କରିଛନ୍ତି, ଦୀନ ଦୟାଳ ଉପାଧ୍ୟାୟଙ୍କ ପାଇଁ ଯେମିତି ଦୀନ ଦୟାଳ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ କରାଯାଇଛି, କଲିକତାରେ ଯେପରି ସୁଭାଷ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସୋସାଲ ଷ୍ଟଡ଼ିଜ୍ କରାଯାଇଛି, ସେଇ ଭାବରେ ଯଦି ଗୋଟିଏ ରିସର୍ଚ୍ଚ ଅନୁଷ୍ଠାନ, କରାଯାଆନ୍ତା, ତା'ହେଲେ ଯାହା ଯାହା କାର୍ଯ୍ୟ ଆରମ୍ଭ କର-

ଥିଲେ ଗୋପବନ୍ଧୁ, ଯେପରି ବନ୍ୟା ସମସ୍ୟା ଗୋଟିଏ, ଓଡ଼ିଶାରେ ଖଦଡ଼ ପ୍ରଚୁରର ଗୋଟିଏ, କଥା ଥିଲା, ଶିକ୍ଷା ଆନ୍ଦୋଳନ ଏବଂ ଶିକ୍ଷା ପ୍ରସାର ଦିଗରେ ତାଙ୍କର ଯେଉଁ କାର୍ଯ୍ୟକ୍ରମ ରଖିଥିଲେ, ସେ ସମସ୍ତ କାର୍ଯ୍ୟ ଗୋପବନ୍ଧୁ ଆରମ୍ଭ କରିଥିଲେ, ତାର ଏ ପର୍ଯ୍ୟନ୍ତ ସମାପ୍ତି ହୋଇ ନାହିଁ। କି ସେଇ ସମସ୍ତ କାର୍ଯ୍ୟମାନଙ୍କରେ ଏପର୍ଯ୍ୟନ୍ତ ପୂର୍ଣ୍ଣତା ଆସି ନାହିଁ। ଏବଂ ସେ ଦିଗରେ ଅନୁଶୀଳନ କରିବା ପାଇଁ, ଏବଂ ଗୋପବନ୍ଧୁଙ୍କ ଚିନ୍ତା ଧାରାର ଅନୁଶୀଳନ କରିବା ପାଇଁ, ତାଙ୍କ ସାହିତ୍ୟର ଅନୁଶୀଳନ କରିବା ପାଇଁ ଗୋଟିଏ ସ୍ଥାୟୀ ଗବେଷଣା ଅନୁଷ୍ଠାନ ହେବା ଉଚିତ। ଯୋଉଥିରେ କି ଲୋକଙ୍କର ସହାୟତା ମିଳିବ ଏବଂ ଭବିଷ୍ୟତ୍ ପାଇଁ ମଧ୍ୟ ଅନେକ ଲୋକଙ୍କୁ ସେଇ ଉଦ୍ଦେଶ୍ୟରେ ତିଆରି କରିବାର ସୁଯୋଗ ମିଳିପାରିବ।

ପ୍ର—ସିଂହଭୂମ ଓ ଧଲଭୂମ୍‌ରେ ଯୋଉ ଶିକ୍ଷା କାର୍ଯ୍ୟ ଆରମ୍ଭ ହୋଇଥିଲା ତାହା କୋଉ ବର୍ଷ ଆଡ଼କୁ କମିଗଲା।

ଉ—ତା କମିଗଲା ୧୯୨୧ ଆଡ଼କୁ। ଅସହଯୋଗ ଆନ୍ଦୋଳନ ଯେତେବେଳେ ଆରମ୍ଭ ହେଲା।

ପ୍ର—ଗୋଦାବରୀଶ ବାବୁ କୋଉ ପର୍ଯ୍ୟନ୍ତ ଥିଲେ ?

ଉ...ସେ ୧୯୨୧ ପରେ ଚାଲିଆସିଲେ କାରଣ ସେଠି ସ୍ଥାନୀୟ ଲୋକଙ୍କଠାରୁ ଯଥେଷ୍ଟ ସହାନୁଭୂତି ମିଳିପାରିଲା ନାହିଁ।

ପ୍ର...ଏ ବିଷୟରେ ଟିକିଏ ବିଶଦ ଭାବରେ କୁହନ୍ତୁ।

ଉ...ଯେତେବେଳେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା ସେତେବେଳେ ଓଡ଼ିଶାରେ ଗୋଟିଏ ଚେଷ୍ଟା ହୋଇଥିଲା, ଯେ ସିଂହଭୂମର ଯୋଉ ଜିଲ୍ଲା କଂଗ୍ରେସ କମିଟି, ସେଇଟା ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ଅଧୀନରେ ରହିବ। କିନ୍ତୁ ସେଥିରେ ଅନେକ ପ୍ରତିରୋଧ ଆସିଲା। ବିଶେଷ ଭାବରେ ପ୍ରତିରୋଧ କରିଥିଲେ ରାଜେନ୍ଦ୍ର ପ୍ରସାଦ। କାହିଁକି ସେତେବେଳେ ବିହାରର ନେତାଏ ବୁଝିପାରୁଥିଲେ ଯଦି ସିଂହଭୂମ ଜିଲ୍ଲା କଂଗ୍ରେସ କମିଟି ଓଡ଼ିଶା ରାଜ୍ୟ କଂଗ୍ରେସ କମିଟି ଭିତରକୁ ଚାଲି ଆସିବ ତା'ହେଲେ, ସିଂହଭୂମ କାଳକ୍ରମେ ହୁଏତ ଓଡ଼ିଶା ଅନ୍ତର୍ଭୁକ୍ତ ହୋଇଯାଇପାରେ। ଏଇ ଆଶଙ୍କା କରି ସେମାନେ ତାର

ପ୍ରତିରୋଧ କରିଥିଲେ । ଗୋପବନ୍ଧୁ ବହୁତ ଚେଷ୍ଟା କରିଥିଲେ ସେ ଦିଗରେ ଓଡ଼ିଶାକୁ ଆଣିବା ପାଇଁ, କିନ୍ତୁ ତା' ସଫଳବନ୍ତ ହୋଇ ପାରି ନଥିଲା । ତା' ପରେ ଲୋକଙ୍କ ଦ୍ୱାରା ଅନ୍ୟାନ୍ୟ ଯୋଉ ପ୍ରାଇମେରୀ ସ୍କୁଲ ସବୁ ବସିଥିଲା ଗୋପବନ୍ଧୁ ଅସହଯୋଗରେ ମାତି ଯିବାରୁ ଆଉ ସେ ଦିଗରେ ଧ୍ୟାନ ଦେଇ ପାରିଲେ ନାହିଁ ଏବଂ ସେ ଦିଗରେ ସହାୟତା ଓଡ଼ିଶାରୁ ଆଉ ବିଶେଷ ଭାବରେ ମିଳିପାରିଲା ନାହିଁ । ସ୍ଥାନୀୟ ଲୋକଙ୍କର ସହାୟତା ତ କମ୍ ଥିଲା, ଆର୍ଥିକ ଅବସ୍ଥା ଦୃଷ୍ଟିରୁ ଏବଂ ଜାତୀୟତା ଜାଗରଣ ଦୃଷ୍ଟିରୁ ମଧ୍ୟ ସ୍ଥାନୀୟ ସହାୟତା ଯଥେଷ୍ଟ ମିଳିବାର ସମ୍ଭାବନା ସେଠି ନ ଥିଲା । ଏଠୁ ଓଡ଼ିଶାରୁ, ଓଡ଼ିଶା ପ୍ରାନ୍ତରୁ ଯଦି ଗୋପବନ୍ଧୁଙ୍କ ଭଳିଆ କେହି ସେ କାର୍ଯ୍ୟରେ ମନ ନିବେଶ କରିଥାଆନ୍ତେ, ତାହେଲେ ଚାଲିଥାନ୍ତା । ମୁଁ ଅଳ୍ପଦିନ ତଳେ ଯେତେବେଳେ ସିଂହଭୂମ୍ ଯାଇଥିଲି, ଦେଖିଲି କେବଳ ଗୋଟିଏ ମାତ୍ର ପ୍ରାଇମେରୀ ସ୍କୁଲ ଛଡ଼ା ଆଉ ପ୍ରାଇମେରୀ ସ୍କୁଲ ନାହିଁ ଯୋଉଠିକି ଓଡ଼ିଆ ପଢ଼ା ହେଉଚି ।

ପ୍ର—ସେତେବେଳେ କେତୋଟି ସ୍କୁଲ ଥିଲା ?

ଉ—ମୋର ମନେ ହେଉଚି ୩୨ଟି ସ୍କୁଲ ହୋଇସାରିଥିଲା । ତା ଛଡ଼ା ବିହାର ଗଭର୍ଣ୍ଣମେଣ୍ଟ ବର୍ତ୍ତମାନ ସେ ଦିଗରେ ମଧ୍ୟ ବିଶେଷ ଉତ୍ସାହ ପ୍ରକାଶ କରୁ ନାହାନ୍ତି ଯଦିଓ ଅନେକଥର ସେ ସମ୍ବନ୍ଧରେ ଶାସନ ସ୍ତରରେ ଆଲୋଚନା ହେଇଚି ତଥାପି ସେ ଦିଗରେ ଉତ୍ସାହ ବିଶେଷ ମିଳୁନାହିଁ, ସେଇଥିପାଇଁ କମିଗଲା । ଚକ୍ରଧରପୁର ହାଇସ୍କୁଲ ହୋଇ ପାରିଲା ନାହିଁ । ବିଶେଷ କରି ସ୍ଥାନୀୟ ଲୋକଙ୍କର ଉତ୍ସାହ ଅଭାବରୁ । ଅବଶ୍ୟ କିଶୋରି ପାଣି ପ୍ରଭୃତି ସେଥିରେ ଖୁବ୍ ଉତ୍ସାହୀ ଥିଲେ । କିନ୍ତୁ ସାଧାରଣ ଲୋକଙ୍କର ଉତ୍ସାହ, ସେ ଦିଗରେ ନଥିଲା । ଆର୍ଥିକ ସାହାଯ୍ୟ ମିଳିଲା ନାହିଁ, ଗୋଦାବରୀଶ ବାବୁ ବହୁ କଷ୍ଟ ଭିତରେ ଦିନକାଟି କରି, ସେଠୁ ଚାଲି ଆସିଥିଲେ । ବହଡ଼ାଗୋଡ଼ାରେ ମଧ୍ୟ ସେଇ ଅବସ୍ଥା । କିନ୍ତୁ ସୁଖର କଥା, ବର୍ତ୍ତମାନ, ଧଳଭୂମରେ ବହଡ଼ାଗୋଡ଼ା ଅଞ୍ଚଳରେ ଓଡ଼ିଆ ଶିକ୍ଷାର ପ୍ରଚଳନ ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଅଧିକ ହେଉଚି ।

ପ୍ର—ଡିସେମ୍ବର ମାସରେ ଉତ୍କଳ ସଭାର ଯୋଉ ପୁନରୁଦ୍ଧାର କାର୍ଯ୍ୟଟି ହେଲା ଚକ୍ରଧରପୁରରେ ଆପଣ ସେଠିକି ବିଶିଷ୍ଟ ଅତିଥି ହୋଇ ଯାଇଥିଲେ ମୁଁ ଜାଣେ । ମୁଁ ମଧ୍ୟ ସେଠିକି ଯାଇଥିଲି । ସେଠାରେ ଯୋଉ ସଭା ଆପଣ ଦେଖିଲେ, ଏବଂ ସେରେଇକଲା, ଖରସୁଆଁ, ଧଳଭୂମ ଅଞ୍ଚଳରୁ ଯୋଉ ଲୋକ ସବୁ ଆସିଥିଲେ, ତାଙ୍କ ସାଙ୍ଗେ ଆପଣ କଥାବାର୍ତ୍ତା କରି, ଓଡ଼ିଆ ଲୋକଙ୍କ ମନର ଅବସ୍ଥା କେମିତି ବୋଲି ଆପଣଙ୍କ ମନେ ହେଉଛି ?

ଉ—ଖୁବ୍ ଉତ୍ସାହ ରହିଛି । ସେଦିନ ମୁଁ ଲକ୍ଷ୍ୟ କଲି, ଖୁବ୍ ଉତ୍ସାହ ରହିଛି । କାରଣ ଏହା ଭିତରେ, ସିଂହଭୂମର ଅନେକ ଓଡ଼ିଆ କେବଳ ଶିକ୍ଷା କ୍ଷେତ୍ରରେ ନୁହେଁ ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ଉଚ୍ଚ ପଦକୁ ଚାଲି ଆସିଛନ୍ତି । ରାଉରକେଲାରେ ଅନେକ ଲୋକ ତାଙ୍କର ଅଛନ୍ତି, ଟାଟା ନଗରରେ ଅନେକ ଓକିଲ, ଏପରିକି ଚାଇଁବସାରେ ମଧ୍ୟ ବୋଲି, ସତର ଜଣ ଓଡ଼ିଆ ଲୋକ ଅଛନ୍ତି, ଯାହା କେବେ ଆମେମାନେ କଳ୍ପନାରେ ଆଣିପାରି ନଥିଲୁ, ସୁତରାଂ ବର୍ତ୍ତମାନ ଓଡ଼ିଆ ଲୋକଙ୍କ ଭିତରେ ଖୁବ୍ ଉତ୍ସାହ ଉନ୍ମାଦନା ଆସିଛି । ଏବଂ ଉତ୍କଳ ସଭା ଯେ ପୁନରୁଜ୍ଜୀବିତ ହୋଇଛି, ଏହା ଖୁବ୍ ସୁଖର କଥା । ମୋର ବିଶ୍ୱାସ, ସେଇ ଜରିଆରେ ଅନେକ କାର୍ଯ୍ୟ ବର୍ତ୍ତମାନ ଓଡ଼ିଆଙ୍କର ଜାତୀୟତା ଜାଗରଣ ଦିଗରେ ହୋଇ ପାରିବ ।

ପ୍ର—'ଯୋଉ ପଇସିକିଆ ଫଣ୍ଡ' ବର୍ତ୍ତମାନ ଆମେ ଶୁଣିବାକୁ ପାଉଛୁ ସେଥିରେ ବାରହଜାର ଟଙ୍କା ପର୍ଯ୍ୟନ୍ତ ଗଚ୍ଛିତ ଅଛି । ସିଂହଭୂମରେ ପୁଣି ଯଦି ଓଡ଼ିଆ ଶିକ୍ଷାର ଆନ୍ଦୋଳନ ଆରମ୍ଭ କରାଯାଏ, ସେ ବିଷୟରେ ଅନ୍ତତଃ ଆର୍ଥିକ ଅବସ୍ଥାଟା, ଖୁବ୍ ବଡ଼ ସମସ୍ୟା ହୋଇ ଦେଖାଦେବ । ଏଣୁ ସେଇ ସମସ୍ୟାର ସମାଧାନ ପାଇଁ, ଯୋଉ ପଇସିକିଆ ଫଣ୍ଡ ଅଛି, ତାକୁ ଯଦି ପୁଣି ଚାଲୁ କରି ପଇସାଏ ଜାଗାରେ ଟଙ୍କାଏ ଲେଖାଁଏ ଲୋକଙ୍କଠୁ ଚାନ୍ଦା ନେଇ, ଗୋଟିଏ ବ୍ୟବସ୍ଥା କରି, ଏଇ ଶିକ୍ଷା ଆନ୍ଦୋଳନକୁ ଗୋପବନ୍ଧୁଙ୍କ ନାଁରେ ପୁଣି ଆରମ୍ଭ କରାଯାଏ, ତା କେମିତି ହୁଅନ୍ତା ? ଏ ବିଷୟରେ ଆପଣଙ୍କ ମତାମତ କ'ଣ ?

ଉ—ମୋର ଏ ସମ୍ବନ୍ଧରେ ଧାରଣା ଟିକିଏ ଭିନ୍ନ । ମୁଁ ମନେ କରୁଛି ବର୍ତ୍ତମାନ ଯେଉଁ ପରିସ୍ଥିତି ରହିଛି ବିହାରରେ ଯେଉଁ ସ୍ୱତନ୍ତ୍ର ଗଭର୍ଣ୍ଣମେଣ୍ଟ

ରହିବ ଓଡ଼ିଶାରେ ସ୍ୱତନ୍ତ୍ର ଗଭର୍ଣ୍ଣମେଣ୍ଟ ଏମାନେ ସବୁ ଜନତା ଦଳର । ପୂର୍ବରୁ କଂଗ୍ରେସ ଦଳ ବି ଥିଲେ । ଯେ କୌଣସି ଦଳର ହୁଅନ୍ତୁ ନା କାହିଁକି, ପରଷ୍ପର ପରଷ୍ପର ପ୍ରତି ସହାନୁଭୂତି ସୂଚକ ଆଭିମୁଖ୍ୟ ଗ୍ରହଣ କରିବାରେ ବିଶେଷ ବାଧା ବୋଧହୁଏ ହେବ ନାହିଁ । କିନ୍ତୁ ମୋର ମନେହୁଏ ଏ ଦିଗରେ ଯୋଜନା ଭିନ୍ନ ପ୍ରକାର ହେବା ଉଚିତ । କିପରି, ଯଥା—ଓଡ଼ିଶାରେ ଗଭର୍ଣ୍ଣମେଣ୍ଟ ସ୍ପନସର୍ଡ଼ ଗୋଟିଏ ଟ୍ରଷ୍ଟ ଫଣ୍ଡ କରାଯାଉ । ସେଇଟି ଅନ୍ତତଃ ଦଶ ପନ୍ଦର ଲକ୍ଷ ଟଙ୍କାର ଗୋଟିଏ ସ୍ପନସର୍ଡ଼ ଟ୍ରଷ୍ଟଫଣ୍ଡ ହେଉ । ଅନ୍ୟାନ୍ୟ ସେଇପରି ହୋଇଛି । ସେଇ ଟ୍ରଷ୍ଟ ଫଣ୍ଡ ଯଦି କରାଯାଏ ଏବଂ ସେଇ ଟ୍ରଷ୍ଟ ଫଣ୍ଡର ଯାହା ଆୟ ରହିବ, ସେଇ ଆୟରୁ ଯଦି ସିଂହଭୂମ, ଏବଂ ଅନ୍ୟାନ୍ୟ ବିଚ୍ଛିନ୍ନ ଅଞ୍ଚଳରେ ଓଡ଼ିଆ ଶିକ୍ଷାର ପ୍ରସ୍ତର ଏବଂ ପ୍ରସାର ଦିଗରେ କାର୍ଯ୍ୟ ହାତକୁ ନିଆଯାଏ, ତାହେଲେ ଫଳବତୀ ହେବ ଏଥିରେ କୌଣସି ସନ୍ଦେହ ନାହିଁ । ଆପଣ ବୋଧହୁଏ ଜାଣିଥିବେ ଆନ୍ଧ୍ରରେ ସେଇପରି ହୋଇଛି । ସେମାନେ ସେଇପରି ଗୋଟିଏ ଗଭର୍ଣ୍ଣମେଣ୍ଟ ସ୍ପନସର୍ଡ଼ ଟ୍ରଷ୍ଟ ଫଣ୍ଡ କରିଛନ୍ତି ଏବଂ ଭାରତବର୍ଷର ଯେ କୌଣସି ଅଞ୍ଚଳରେ ଯଦି ବର୍ତ୍ତମାନ ଗୋଟିଏ ତେଲଗୁ ପ୍ରାଇମେରୀ ସ୍କୁଲ ବସାଯାଏ ବସେଇବା ସାଙ୍ଗେ ସାଙ୍ଗେ ଅତି କମ୍‌ରେ ତିନିହଜାର ଟଙ୍କା ସେଠାରୁ ସାହାଯ୍ୟ ମିଳିପାରେ । ସିଂହଭୂମିରେ ଯଦି ବର୍ତ୍ତମାନ ପ୍ରାଇମେରୀ ସ୍କୁଲ ପୁଣି ବସେଇବାକୁ ହେବ ତାହେଲେ ଆର୍ଥିକ ସାହାଯ୍ୟ ଯୋଗାଡ଼ କରିବା ପାଇଁ ଏଇ ପ୍ରକାର ଗୋଟିଏ ଟ୍ରଷ୍ଟ ଫଣ୍ଡ ଯୋଜନା ଦ୍ୱାରା କରାଯାଇ ପାରିବ । ଯା କଲେ ଅନ୍ତତଃ ଶାସନଗତ କୌଣସି ବୈଷମ୍ୟ ସମସ୍ୟା ଉଠିବ ନାହିଁ ।

କାହିଁକି ନା ଆପଣ ଜାଣନ୍ତି ବୋଧହୁଏ, ଚକ୍ରଧରପୁରରେ ଗୋଟିଏ ମାଇନର ସ୍କୁଲ ଅଛି, ସେ ସ୍କୁଲକୁ ସାହାଯ୍ୟ କରିବା ପାଇଁ ଓଡ଼ିଶା ସରକାର ବୋଧହୁଏ ବାର ହଜାର ଟଙ୍କା ବାର୍ଷିକ ଗ୍ରାଣ୍ଟ କିଛି ବର୍ଷ ଦେଉଥିଲା । ସେଥିରେ ବିହାର ଗଭର୍ଣ୍ଣମେଣ୍ଟ ଖୁସି ନୁହନ୍ତି । ବିହାର ରାଜ୍ୟ ଭିତରେ କୌଣସି ଓଡ଼ିଆ ସ୍କୁଲକୁ ଯଦି ଓଡ଼ିଶା ଗଭର୍ଣ୍ଣମେଣ୍ଟ ସାହାଯ୍ୟ ଦିଏ, ହୁଏତ ବିହାର ଗଭର୍ଣ୍ଣମେଣ୍ଟ ସେଇଟାକୁ ସୁନଜରରେ ନଦେଖିପାରେ, କିନ୍ତୁ ଟ୍ରଷ୍ଟ ଫଣ୍ଡ ଯଦି କରାଯାଏ, ଏବଂ ସେଥିରୁ ଯଦି ଏ ପ୍ରକାର ସାହାଯ୍ୟ

ହଉଥାଏ, ସେଥିରେ କୌଣସି ଆପତ୍ତି କରିବାର, କାହାର କାରଣ ରହିବ ନାହିଁ ।

ପ୍ର—ବଙ୍ଗାଳିମାନଙ୍କର ଜାମସେଦପୁରରେ ଅନେକଗୁଡ଼ିଏ ସ୍କୁଲ ଏବଂ କଲେଜଟିଏ ବି ରହିଛି । ସେଥିରେ ତ କାହାଁକି ବିହାର ସରକାର କିଛି ଆପତ୍ତି କରୁ ନାହାନ୍ତି । କିନ୍ତୁ ଓଡ଼ିଆମାନଙ୍କର ହେଲେ ତାଙ୍କର କାହିଁକି ବିତୃଷ୍ଣା ଭାବ ଆସୁଛି ।
ଉ—ତା'ର କାରଣ ରହିଛି, ଆପଣ ଜାଣନ୍ତି ସିଂହଭୂମ୍ ବେଙ୍ଗଲରେ ଯାଇଁ ମିଶିବ ଏ କଳ୍ପନା କାହାର ନାହିଁ, କିନ୍ତୁ ସିଂହଭୂମ ଓଡ଼ିଶାରେ ମିଶିବ ଏ ଯୋଜନା ଆମର ସବୁବେଳେ ରହି ଆସିଛି । ସେ କଥା ବିହାର ସରକାର ଜାଣନ୍ତି, ସେଇଥିପାଇଁ ଓଡ଼ିଆମାନଙ୍କୁ ନିରୁତ୍ସାହିତ କରିବା ଯେତେଦୂର ସମ୍ଭବ ସେତେଦୂର ସେମାନେ ଚେଷ୍ଟା କରୁଛନ୍ତି ।

ପ୍ର—ଆପଣ ଯେତେବେଳେ ଗୁଇଁବସାରେ ଥିଲେ, ଜାମସେଦ୍‌ପୁର କେବେ ଯାଇଛନ୍ତି ?
ଉ—ହଁ, ଯାଇଥିଲି, ହରୀସିଂହ ମିଶ୍ରଙ୍କ ସାଙ୍ଗରେ ମୁଁ ଥରେ ଯାଇଥିଲି । ହରୀସିଂହ ମିଶ୍ର ଗୋପବନ୍ଧୁଙ୍କ ଶିଷ୍ୟ ଥିଲେ । ସେ ଟାଟାରେ କାମ କରିଥିଲେ ଅସିଷ୍ଟାଣ୍ଟ ହେଡ୍‌ମାଷ୍ଟ୍ର ହୋଇ । ତାଙ୍କୁ ସମସ୍ତେ ଗୋପବନ୍ଧୁ ଏବଂ ତାଙ୍କ ଗୋଷ୍ଠି ସବୁ ତାଙ୍କୁ ମାଷ୍ଟ୍ରେ ମାଷ୍ଟ୍ରେ ବୋଲି ଡାକୁଥିଲେ । ଏବଂ ବହୁତ ଖାତିର ମଧ୍ୟ କରୁ ଥିଲେ । ଏବଂ ଅନେକ ସମୟରେ ତାଙ୍କ ଉପଦେଶ ମଧ୍ୟ ସେ ଗ୍ରହଣ କରୁଥିଲେ । ଏପରିକି ଆର୍ଥିକ ସାହାଯ୍ୟ ମଧ୍ୟ ସେ ଗୋପବନ୍ଧୁଙ୍କୁ ସମୟ ସମୟରେ କରୁଥିଲେ । ସେ ମୋର ମାମୁଁ ଅଜା ହେଉଥିଲେ । ସେ ଥରେ ଗୁଇଁବସା ଆସିଥିଲେ ଏବଂ ମୁଁ ଏବଂ ମୋ ପିତା ତାଙ୍କ ସାଙ୍ଗରେ ସାକ୍‌ଚୀ ଯାଇଥିଲୁ । ସେତେବେଳେ ବୋଧହୁଏ ଆପଣଙ୍କର ପିତା ସେଠି ଥିଲେ । ଏବଂ ସେ ଆମକୁ ନେଇ ଟାଟା କାରଖାନା ପ୍ରଭୃତି ବୁଲେଇ ଦେଖେଇଥିଲେ ।

ପ୍ର—ତାଙ୍କ ନା' ଆପଣଙ୍କର ବୋଧହୁଏ ମନେ ନାହିଁ ।
ଉ—ହଁ ତାଙ୍କୁ ଡାକୁଥିଲେ 'ନାୟକ' ବାବୁ ବୋଲି ।



୰ ପଣ୍ଡିତ ବିଶ୍ୱନାଥ ମିଶ୍ର
ଜାମସେଦ୍‌ପୁର କେ· ଏମ୍· ପି· ଏମ
ହାଇସ୍କୁଲର ପ୍ରଥମ ଓଡ଼ିଆ ଶିକ୍ଷକ
ପୃଷ୍ଠା—୧୪୦



୰ କାହ୍ନୁକିଶୋର ପାଣି
ଚକ୍ରଧରପୁରର ଓଡ଼ିଆ ଜାତୀୟବାଦୀ
ନେତା । ପୃଷ୍ଠା-୯୯



ପଣ୍ଡିତ ଉଦୟନାଥ ମିଶ୍ର
କେ·ଏମ୍·ପି· ଏମ୍‌ର ଦ୍ୱିତୀୟ ଓଡିଆ ଶିକ୍ଷକ



୰ ଉମାଚରଣ ତ୍ରିପାଠୀ
କେରାର ଓଡିଆ ଜାତୀୟବାଦୀ ନେତା
ପୃଷ୍ଠା-୧୩୭

ପ୍ର—ଆପଣଙ୍କର ଯିବା ସେଠିକି କୋଉ ସାଲ କଥା ହେବ ?
ଉ—ସେ ହେବ ୧୯୧୮ ।

ପ୍ର—ହଁ ୧୯୦୭ରେ ଟାଟା କମ୍ପାନୀ ଆରମ୍ଭ ହୋଇଥିଲା । ୧୯୧୮ ବେଳକୁ କେବଳ ସାକ୍‌ଚୀ ଏଇଆଡ଼ି ଥିଲା ।
ଉ···ଆଉ କିଛି ନ ଥିଲା । ତାକୁ 'ସାକ୍‌ଚୀ' 'ସାକ୍‌ଚୀ' ବୋଲି ସମସ୍ତେ କହୁଥିଲେ ।

ପ୍ର···ଆଚ୍ଛା ସିଂହଭୂମରେ ବର୍ତ୍ତମାନ ଯଦି ଶିକ୍ଷାର ଆନ୍ଦୋଳନ କାର୍ଯ୍ୟ ଆରମ୍ଭ କରାଯାଏ ଆପଣ ସେଥିରେ ଟିକିଏ ସକ୍ରୀୟ ଅଂଶ ଗ୍ରହଣ କଲାପରି ଆପଣଙ୍କର ଅବସ୍ଥା ଅଛି କି ?
ଉ···ଖୁବ୍ ଆନନ୍ଦରେ ଗ୍ରହଣ କରିବି । କାରଣ ମୁଁ ସିଂହଭୂମ ନିକଟରେ ଲୁଚଙ୍କି । ମୁଁ ଆସି ଉତ୍କଳ ସାହିତ୍ୟ ସମାଜକୁ କହିଚି—ସାମୟିକ ସଭା ସମ୍ମେଳନୀ ପ୍ରଭୃତି ସେପାଖେ କରିବାକୁ ।

ପ୍ର···ଆପଣ ଧଳଭୂମର ଆଉ ଜଣେ ବିଶିଷ୍ଟ କର୍ମୀଙ୍କ ସମ୍ବନ୍ଧରେ କିଛି ଜାଣନ୍ତି କି ? ବହଡାଗୋଡ଼ାର ଫଣିଭୂଷଣ ମିଶ୍ର । ତାଙ୍କର ବଡ଼ ଭାଇ ନିଲୋଚନ ମିଶ୍ର, ଗୋପବନ୍ଧୁ ବାବୁ ଏବଂ ଗୋଦାବରୀଶ ମିଶ୍ରଙ୍କୁ ତାଙ୍କ ଘରେ ରଖେଇ ଖୁବ୍ ଚର୍ଚ୍ଚା କରୁଥିଲେ । ତାଙ୍କ ସାନ ଭାଇ ଫଣିଭୂଷଣ ମିଶ୍ରଙ୍କୁ ସତ୍ୟବାଦୀ ବନବିଦ୍ୟାଳୟରେ ପଢ଼ିବାକୁ ପଠାଇଥିଲେ । ମୁଁ ତାଙ୍କୁ ବ୍ୟକ୍ତିଗତ ଭାବେ ଜାଣିଥିଲି । ବଡ଼ ନିଃସ୍ୱାର୍ଥପର ଲୋକ ।
ଉ···ନା, ମୁଁ ତାଙ୍କୁ ଜାଣି ନଥିଲି ।

ପ୍ର···କେରାର ଉମାପଦ ତ୍ରିପାଠୀ, ବ୍ରଜମୋହନ ତ୍ରିପାଠୀଙ୍କ ପୁଅ । ସେ ଜୀବନର ଶେଷ ପର୍ଯ୍ୟନ୍ତ ବିହାର ସହିତ ଲଢ଼ିଥିଲେ । ଶୁଣିଚି ବିହାରର ସେ ସମୟର ମୁଖ୍ୟମନ୍ତ୍ରୀ ଶ୍ରୀକୃଷ୍ଣ ସିଂହ କୁଡ଼େଇକଲା ଗାଁ'ରେ ଉମାପଦ ତ୍ରିପାଠୀଙ୍କୁ କୁଆଡ଼େ କହିଥିଲେ—ଆପ୍ ଏକଲଖ ରୁପେୟା ଲିଜିଏ । ଔର ଆନ୍ଦୋଳନ ଛୋଡ଼ ଦିଜିଏ । ଉମାପଦବାବୁ ଜବାବ ଦେଇଥିଲେ—ଆପ୍ ଦୋ ଲଖ ଲିଜିୟେ-ଔର ସିଂହଭୂମ ଛୋଡ଼ ଦିଜିୟେ ।
ଉ···ନାଁ, ତାଙ୍କୁ ମଧ୍ୟ ମୁଁ ଜାଣେନା ।

ପ୍ର···ଆମର ସାହିତ୍ୟିକ ବନ୍ଧୁ କାଳନ୍ଦୀ ଚରଣ ପାଣିଗ୍ରାହି ଯେତେବେଳେ ଉତ୍କଳ ସାହିତ୍ୟ ସମାଜର ସଭାପତି ଥିଲେ, ମୁଁ .ସେତେବେଳେ 'ସିଂହଭୂମ୍ ଓଡ଼ିଆ ସାହିତ୍ୟ ସମାଜ' ତରଫରୁ ଚିଠି ଲେଖିଥିଲି ଯେ କେବଳ ରାମଚନ୍ଦ୍ର ଭବନର ଚୂଡ଼କାନ୍ଥ ଭିତରେ ଉତ୍କଳ ସାହିତ୍ୟ ସମାଜକୁ ଆବଦ୍ଧ ନରଖି, ଯେପରି ନିଖିଳ ବଙ୍ଗୀୟ ସାହିତ୍ୟ ପରିଷଦର ଅଧିବେଶନ ବସୁଛି ସାରା ଭାରତବର୍ଷର ବିଭିନ୍ନ ପ୍ରଦେଶରେ ସେଇପରି ଆପଣ ଅନ୍ତତଃ ସିଂହଭୂମରେ ତାର ଅଧିବେଶନ କରନ୍ତୁ ଏବଂ ଓଡ଼ିଶାର ଉପାନ୍ତ ଅଞ୍ଚଳମାନଙ୍କରେ ଉତ୍କଳ ସାହିତ୍ୟ ସମାଜର ବୈଠକ ହେଉ । ସେ ଏ ପ୍ରସ୍ତାବକୁ ଖୁବ୍ ପସନ୍ଦ କରିଥିଲେ । କିନ୍ତୁ କାହିଁ ଏପର୍ଯ୍ୟନ୍ତ ତାର କିଛି ବ୍ୟବସ୍ଥା ହେବା ମୁଁ ଦେଖିଲି ନାହିଁ । ଆପଣେ ସବୁଜ ସାହିତ୍ୟ ସମିତିର ଜଣେ ପ୍ରଧାନ ଓ ବିଶିଷ୍ଟ ସାହିତ୍ୟିକ ଥିଲେ । ଆପଣ ଅନ୍ତତଃ ଏଠାରେ ଯୋଉ 'ଉତ୍କଳ ସାହିତ୍ୟ ସମାଜ' ଅଛି ତାଙ୍କ ଉପରେ କିଛି ପ୍ରଭାବ ପକେଇ ସିଂହଭୂମିରେ ଏବଂ ଉପାନ୍ତ ଅଞ୍ଚଳରେ ଯେପରି ଓଡ଼ିଆ ସାହିତ୍ୟ ପ୍ରଚାରର କିଛି କାର୍ଯ୍ୟାନୁଷ୍ଠାନ ହୁଏ ସେ ବିଷୟରେ ଚେଷ୍ଟା କରିବେ କି ?

ଉ—ନିଶ୍ଚୟ କରିବି ।

ପ୍ର—ଓଡ଼ିଶା ସରକାର ଏ ଶତ ବାର୍ଷିକୀରେ ସିଂହଭୂମିରେ କିଛି କାର୍ଯ୍ୟ କଲେ ନାହିଁ । ଅବଶ୍ୟ ଆଗରୁ କଂଗ୍ରେସ ଥିଲା । ଏବେ 'ଜନତା' ଆସିଛି, ସାଂସ୍କୃତିକ ବିଭାଗ ମନ୍ତ୍ରୀ ଏବଂ ଶିକ୍ଷା ମନ୍ତ୍ରୀ ଉଭୟେ ଏକ ଶତବାର୍ଷିକୀ ସଭାରେ ଏକମାସ ତଳେ, ବିଚ୍ଛିନ୍ନାଞ୍ଚଳରେ ଥିବା କଳକାରଖାନାମାନଙ୍କରେ ଓଡ଼ିଆ ଶ୍ରମିକମାନଙ୍କ ଦୁଃଖ ଦୁର୍ଦ୍ଦଶା କଥା ଅନୁଧ୍ୟାନ କରିବେ ବୋଲି କହିଛନ୍ତି । ଅନ୍ତତଃ ସାଂସ୍କୃତିକ ବିଭାଗ ମନ୍ତ୍ରୀ ସେଇ ସଙ୍ଗେ ସିଂହଭୂମିରେ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତିର ପ୍ରଚାର ଦିଗରେ କିଛି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ କେମିତି ହୁଅନ୍ତା ?

ଉ—ଯାହା ଆଶା କରାଯାଉଥିଲା ସେତେବେଳର କଂଗ୍ରେସ ସରକାରଙ୍କ-ଠାରୁ ତା ତ ସେମାନେ କରିନାହାନ୍ତି । ପ୍ରଥମରୁ ଯାହା କହିଥିଲେ, ସେସବୁ କେବଳ ପ୍ରଚାର ମୂଳକ, ତାଙ୍କ ନିଜ ନିଜର ସ୍ୱାର୍ଥ ପାଇଁ ଚେଇଁଚା କରି-ଥିଲେ । କିନ୍ତୁ ପ୍ରକୃତପକ୍ଷରେ ଗୋପବନ୍ଧୁଙ୍କ ଶତବାର୍ଷିକୀରେ କୌଣସି

ମହାପୂତା ସେ ବେଳର ସରକାରଙ୍କ ଠାରୁ ଆସିଲା ନାହିଁ । ଯଦି ଗୋଟିଏ ସ୍ଥାୟୀ ଅନୁଷ୍ଠାନ କରିବାରେ ବର୍ତ୍ତମାନର ସରକାର ଆଗଭର ହୁଅନ୍ତେ ତା'ହେଲେ ସେ ଦିଗରେ କିଛି କାର୍ଯ୍ୟ ସରକାର କରିଛନ୍ତି ବୋଲି କହି ହେବ । ବିଶେଷ କରି ସିଂହଭୂମି ପାଇଁ ଯଦି ଗୋଟିଏ ଟ୍ରଷ୍ଟ ଫଣ୍ଡ ଆରମ୍ଭ କରାଯାଇ ପାରନ୍ତା ସରକାରଙ୍କ ସାହାଯ୍ୟରେ, ମୁଁ କହୁନାହିଁ ଯେ ସରକାର କେବଳ ଟଙ୍କା ସେ ଫଣ୍ଡକୁ ଦେବେ ବୋଲି, କିନ୍ତୁ ସରକାର ଯଦି ସେ ଫଣ୍ଡ ଆରମ୍ଭ କରନ୍ତେ, ତାହାହେଲେ ଯାଇଁ ଓଡ଼ିଆ ଶିକ୍ଷା ପ୍ରଗତି ସିଂହ-ଭୂମିରେ ହୋଇ ପାରନ୍ତା । ତା' ନହେଲେ କ୍ରମଶଃ କ୍ରମଶଃ ଓଡ଼ିଆ ଭାଷା, ସିଂହଭୂମିରୁ ଲୋପ ପାଇଯିବ ।

ପ୍ର—ରାଜନୈତିକ ଦୃଷ୍ଟିରୁ ସିଂହଭୂମ ବୋଧହୁଏ ଆଉ ଓଡିଶା ସହିତ ମିଶିବାର ସମ୍ଭାବନା ନାହିଁ । ଆଶା ଛାଡିଦେବା କି ସମ୍ପୂର୍ଣ୍ଣ ଭାବରେ ?

ଉ...ଛାଡିବା ଉଚିତ୍ ନୁହେଁ । ଯଦିଓ ସମ୍ଭାବନା କମ୍ । ତଥାପି ଆମ-ମାନଙ୍କର ଯାହା ନ୍ୟାଯ୍ୟ ଦାବୀ ତାକୁ ଅକ୍ଷୁନ୍ନ ରଖିବାକୁ ହେବ ।

ପ୍ର...ତାକୁ ଅକ୍ଷୁନ୍ନ ରଖିବାକୁ ହେବ ବୋଧହୁଏ ଶିକ୍ଷା, ସାହିତ୍ୟ ଏବଂ ସାଂସ୍କୃତିକ କାର୍ଯ୍ୟକ୍ରମ ଭିତରେ ।

ଉ...ଏକମାତ୍ର ।

ପ୍ର—ତା'ହେଲେ ଓଡିଶା ସରକାରଙ୍କ ଉପରେ ପ୍ରଭାବ ପକା ଇଏହା କଲେ କେମିତି ହୁଅନ୍ତା ।

ଉ—ହଁ, ବର୍ତ୍ତମାନ ଯୋଉମାନେ ଶାସନରେ ମୁଖ୍ୟ ସ୍ଥାନ ଗ୍ରହଣ କରିଛନ୍ତି ସେମାନଙ୍କ ସହିତ ଆଲୋଚନା କଲେ ଏ ଦିଗରେ କୌଣସି କାର୍ଯ୍ୟକ୍ରମ ଗ୍ରହଣ କରାଯାଇ ପାରିବ । କାରଣ ସେମାନଙ୍କର କୌଣସି ବିରୋଧ ଭାବ ନାହିଁ ।

ପ୍ର—ଏ ଦିଗରେ ସିଂହଭୂମରୁ କେତେଜଣ ଏବଂ ଓଡ଼ିଶାରୁ କେତେ ଜଣକୁ ନେଇ ଗୋଟିଏ କମିଟି କରି, ସରକାରଙ୍କ ସହିତ ଆଲୋଚନା କରିବା ପ୍ରସ୍ତାବକୁ ଆପଣ ଅନୁମୋଦନ କରୁଛନ୍ତି କି ?

ଉ—ହଁ, ସେଇଟି କରାଯାଉ । ନିଶ୍ଚୟ କିଛିନା କିଛି ଫଳ ଫଳିବ ।

ପ୍ର—ସେ ଦାୟିତ୍ୱ ନେବାର ଆପଣଙ୍କର କୌଣସି ଆପତ୍ତି ନାହିଁ ।
ଉ—ମୋର ଆପତ୍ତି ନାହିଁ ।

ପ୍ର—ବ୍ୟକ୍ତିଗତ ଭାବରେ ଯଦି କିଛି କହିବାର ଥାଏ ମତେ କୁହନ୍ତୁ ।
ଉ—ଆଉ କ'ଣ କହିବି । ମୁଁ ଅତ୍ୟନ୍ତ ଖୁସି ହେବି ଯଦି ସିଂହଭୂମିରେ ଗୋପବନ୍ଧୁଙ୍କର କାର୍ଯ୍ୟକ୍ଷେତ୍ରର କିଛି ପ୍ରକୃତ ପ୍ରସାର ବର୍ତ୍ତମାନ ଘଟି ପାରିବ । ଯଦି ବାସ୍ତବିକ ଓଡ଼ିଆ ଆନ୍ଦୋଳନ ସେଠୁ ଚାଲିଯାଏ, ଏବଂ ଶିକ୍ଷାର ପ୍ରଚ୍ଛର ଯଦି କମିଯାଏ, ତା'ହେଲେ ବୁଝିବାକୁ ହେବ, ଯେ ଗୋପବନ୍ଧୁ ଯେ କାର୍ଯ୍ୟ ଆରମ୍ଭ କରିଥିଲେ, ତାକୁ ତ ଆମେ ଫଳବତୀ କରିପାରିଲେ ହିଁ ନାହିଁ, ବରଂ ତାଙ୍କ କାର୍ଯ୍ୟ ଧ୍ୱଂସ କରିବାରେ ଆମେମାନେ ପରୋକ୍ଷରେ ହେଉ ବା ପ୍ରତ୍ୟକ୍ଷରେ ହେଉ ସହାୟ ହେଉଥାଉଁ ।
ମୁଁ—ଧନ୍ୟବାଦ । ଆପଣଙ୍କର ଅନେକ ସମୟ ନେଲି । ଆପଣ ଧୈର୍ଯ୍ୟର ସହିତ ମୋ ପ୍ରଶ୍ନ ଗୁଡ଼ିକର ଉତ୍ତର ଦେଲେ । ନମସ୍କାର ।

ଏଇଠି ଜାମସେଦ୍‌ପୁରରେ ଓଡ଼ିଆ ଶିକ୍ଷା କେବେ ଆରମ୍ଭ ହୋଇ-ଥିଲା ଟିକିଏ କହିଦେଲେ ଭଲ ହେବ ।

୧୯୧୭ ବେଳକୁ ଚାଇଁବସା ଜିଲ୍ଲାସ୍କୁଲରେ ଓଡ଼ିଆ ଶ୍ରେଣୀ ଖୋଲି ଥିଲା । ଜାମସେଦପୁରଠାରେ ଟାଟା କମ୍ପାନୀ ପରିଚାଳିତ କେ. ଏମ୍. ପି. ଏମ୍. ହାଇସ୍କୁଲରେ ଓଡ଼ିଆ ଛଡ଼ା ଅନ୍ୟାନ୍ୟ ଭାଷାରେ ଶିକ୍ଷା ଦିଆଯାଉଥିଲା ।

ଓଡ଼ିଆ କ୍ଲାସ ପ୍ରଥମେ ଆରମ୍ଭ ହେଲା ୧୯୨୫ରେ, କମ୍ପାନୀ କର୍ତ୍ତୃ-ପକ୍ଷଙ୍କ ସହିତ ଅନେକ ଲଢ଼େଇ ଝଗଡ଼ା ପରେ । ସ୍ୱର୍ଗତଃ ପରମାନନ୍ଦ ମହାପାତ୍ର ଏଥିପାଇଁ ବିଶେଷ ଚେଷ୍ଟା କରିଥିଲେ । ଓଡ଼ିଆ ଶ୍ରମିକମାନଙ୍କ ପିଲାମାନଙ୍କୁ, ସେମାନଙ୍କ ମାତୃଭାଷାରେ ପଢ଼ିବାକୁ ଟାଟା କମ୍ପାନୀ କର୍ତ୍ତୃପକ୍ଷ ସୁଯୋଗ ଦେବା ଉଚିତ—ଯୁକ୍ତି ଉପରେ ଆଗରୁ ଚିଠି ଦିଆ ନିଆ ଚାଲିଥିଲା ।

ମୁଁ ସେ ସ୍କୁଲରେ ପ୍ରଥମ ଓଡ଼ିଆ ଛାତ୍ର । ପ୍ରଥମ ପଣ୍ଡିତ ହେଉଛନ୍ତି ବୀରନରସିଂହପୁରର ସ୍ୱର୍ଗତଃ ବିଶ୍ୱନାଥ ମିଶ୍ର । ମୋ ପରେ ଛ' ସାତ ଜଣ ପିଲା ଆସି ନାଁ ଲେଖାଇଲେ । ସେମାନଙ୍କ ଭିତରେ ମଧୁରଧର ସ୍ୱାଇଁ ଥିଲେ ମୋର ସହପାଠୀ ।

ବୈଦ୍ୟନାଥ ମିଶ୍ରେ, ଜାମସେଦପୁର ଓଡ଼ିଆମାନଙ୍କ ପାଖରେ 'ବଡ ପଣ୍ଡିତେ' ଭାବରେ ପରିଚିତଥିଲେ । ଏପରି ଆଦର୍ଶ ଶିକ୍ଷକ ଆଜି କାଲି ଖୁବ୍ ବିରଳ । ସେ ଏକାଧାରରେ ଶିକ୍ଷକ ଏବଂ ଅଭିଭାବକ ଭାବରେ ଛାତ୍ରମାନଙ୍କର ଭଲ ମନ୍ଦ କଥା ବୁଝୁଥିଲେ । ତାଙ୍କର ସାନ ଭାଇ ପଣ୍ଡିତ ଉଦୟନାଥ ମିଶ୍ର ମଧ୍ୟ ଶିକ୍ଷକ ଭାବରେ ସେ ସ୍କୁଲରେ ନିଯୁକ୍ତି ପାଇଥିଲେ । 'ସାନ ପଣ୍ଡିତେ' ଭାବରେ ଉଦୟନାଥ ସାର୍ ଏବେ ବି ସାରା ଜାମସେଦପୁରରେ ସମ୍ମାନିତ । ଯାଙ୍କର ଏକ ବିଶେଷତ୍ୱ ଟାଟା ସ୍କୁଲର ସବୁ ବିଜାତୀୟ ଶିକ୍ଷକମାନଙ୍କ ସହିତ···ସେମାନେ ହିନ୍ଦିରେ ବା ବଙ୍ଗଳାରେ କହିଲବେଳେ ଏ ଓଡିଆରେ କହନ୍ତି ଏବଂ ତାଙ୍କର ଓଡ଼ିଆ କହିବା ଜାତୀୟତା ଭାବଟିକୁ ହିନ୍ଦି, ବଙ୍ଗଳା ଶିକ୍ଷକମାନେ ମଧ୍ୟ ପ୍ରଶଂସିତ ଦୃଷ୍ଟିରେ ଗ୍ରହଣ କରନ୍ତି ।

ମୋ ସାହିତ୍ୟିକ ଜୀବନର ଆରମ୍ଭ ମୂଳରେ ବଡ ପଣ୍ଡିତଙ୍କ ଉତ୍ସାହ ଏବଂ ସାନ ପଣ୍ଡିତଙ୍କ ପ୍ରଶଂସା, କଥା ମୁଁ କେବେ ଭୁଲି ପାରିବି ନାହିଁ ।

ବର୍ତ୍ତମାନ ଜାମସେଦ୍‌ପୁରରେ ଟାଟା କମ୍ପାନୀ ଦ୍ୱାରା ପରିଚାଳିତ ଗ୍ଲେଟ ବଡ ସ୍କୁଲମାନଙ୍କରେ ଓଡ଼ିଆ ଛାତ୍ରଙ୍କ ସଂଖ୍ୟା ସବୁ ମିଶି ପ୍ରାୟ ଏକ ହଜାର ପାଖାପାଖି ହେବ । ବହୁ ଓଡିଆ ଶିକ୍ଷକ ଦକ୍ଷତାର ସହିତ କାର୍ଯ୍ୟ କରି ସୁନାମ ଅର୍ଜନ କରିଛନ୍ତି । ସେମାନଙ୍କ ଭିତରେ ଅନେକ, କବି ଗାଳ୍ପିକ, ଏବଂ ସୁସାହିତ୍ୟିକ ବି ଅଛନ୍ତି । ସେଠୁ ପାଶ୍ କରି ସାରି କମ୍ପାନୀର ବିଭିନ୍ନ ଡିପାର୍ଟମେଣ୍ଟରେ କାର୍ଯ୍ୟ କରୁଥିବା ବ୍ୟକ୍ତିଙ୍କ ଭିତରେ ଅନେକ କବି ଓ ସାହିତ୍ୟିକ ଅଛନ୍ତି ଏବଂ ସେମାନଙ୍କ ଦ୍ୱାରା ଲିଖିତ ଅନେକ କବିତା ଓ ଗଳ୍ପ ପୁସ୍ତକ ମଧ୍ୟ ପ୍ରକାଶ ପାଇଛି । ଏ ସବୁ ସାହିତ୍ୟ ସାଧନା ଭିତରେ ବହିର୍ଭାଞ୍ଚଳ ସିଂହଭୂମରେ ଓଡିଆ ଭାଷା ଓ ସାହିତ୍ୟର ଟେକ ରଖିବା ଯେ ଏକମାତ୍ର ଉଦ୍ଦେଶ୍ୟ ସମସ୍ତଙ୍କର, ଏବଂ ଏ ଉଦ୍ଦେଶ୍ୟ ପଛରେ ଯେ ଗୋପବନ୍ଧୁଙ୍କ ଆଦର୍ଶ କାମ କରୁଛି···ଏହା ନିଃସନ୍ଦେହରେ କୁହାଯାଇପାରେ ।

ଓଡିଆ ଶ୍ରମିକମାନଙ୍କ ଭିତରେ କେବଳ ରୋଜଗାର କରିବା ଲିପ୍ସା ନୁହେଁ ବହିର୍ଭାଞ୍ଚଳ ସିଂହଭୂମ୍‌ରେ ଓଡିଆ ସଂଗଠନ କପରି ମଜବୁତ୍ ହେବ ଏ ଜାତୀୟତା ଭାବ ଖୁବ୍ ଦେଖିବାକୁ ମିଳେ । ଅନ୍ୟାନ୍ୟ ପ୍ରଦେଶର ଶ୍ରମିକମାନଙ୍କର ସାମାଜିକ ତଥା ସାଂସ୍କୃତିକ ଅନୁଷ୍ଠାନ ସହିତ

ଚାଲି ରଖି ଓଡ଼ିଆ ଭାଇମାନଙ୍କର ସାମାଜିକ ଓ ସାଂସ୍କୃତିକ ଚେତନା ମଧ୍ୟ ଯଥେଷ୍ଟ ପ୍ରଖର ଆଉ ବିଦଗ୍ଧ । ଜାମସେଦ୍‌ପୁରରେ ଗୃହୀତ କୋପରେଟିଭ୍ ସୋସାଇଟି ରହିଛି । ଏବଂ ସେଥିରୁ ଦୁଇଟି ସୋସାଇଟିର ଦ' ଦ' ମହଲାର ପ୍ରକାଣ୍ଡ କୋଠା ମଧ୍ୟ ସହରର ମଧ୍ୟ ସ୍ଥଳରେ ରହିଛି । ସାମାଜିକ ଅନୁଷ୍ଠାନ ଭାବରେ 'ଉତ୍କଳ ଅସୋସିଏସନ' ଏବଂ 'ଗୋଲମୁରୀ ଉତ୍କଳ ସମାଜ' ଏ ଦୁଇଟି ସଂସ୍ଥା ଖୁବ୍ ପ୍ରସିଦ୍ଧ ଏବଂ ପ୍ରତିଷ୍ଠିତ । ଉତ୍କଳ ଆସୋସିଏସନ ଭବନଟି ଏକ 'ମାସିଭ୍ ବିଲ୍‌ଡିଙ୍ଗ୍' । ଏ ଭବନଟି ତିଆର କରାଇବାରେ ସ୍ୱର୍ଗତଃ ଗୋକୁଳାନନ୍ଦ ମହାନ୍ତି ଓ ସୀମାଦ୍ରୀ ଦାଶ, ଏ ଦୁଇ ବ୍ୟକ୍ତିଙ୍କ ଚେଷ୍ଟା ଖୁବ୍ ପ୍ରଶଂସନୀୟ । ଗୋକୁଳାନନ୍ଦ ବାବୁ ଜଣେ ନିରବଚ୍ଛିନ୍ନ ଜାତୀୟତାବାଦୀ କର୍ମୀ ଥିଲେ । ଗୋଲମୁରୀ 'ଉତ୍କଳ ସମାଜ' ହଲ୍ ତିଆର କରାଇବାରେ ଖେମ ମହାନ୍ତିଙ୍କର ଯଥେଷ୍ଟ ତ୍ୟାଗ ଥିଲା । ସାମ୍ପ୍ରତିରେ, ଉତ୍କଳ ଆସୋସିଏସନ ବିଲ୍‌ଡିଙ୍ଗର ହଲ୍‌ଟିକୁ 'ଗୋପବନ୍ଧୁ ସଦନ' ଭାବରେ ନାମିତ କରାଯାଇଛି । ଗୋପବନ୍ଧୁ ଜନ୍ମ-ଶତବାର୍ଷିକୀର ଉଦ୍‌ବୋଧନ ଦିନ ଏହି ଭବନରୁ ଗୋପବନ୍ଧୁଙ୍କ 'ଦିବ୍ୟଜ୍ୟୋତି' ବାହାରି ବିରାଟ ପଟୁଆରରେ ସହରର ଗୁରିଆଡ଼େ ପରିକ୍ରମା କରିଥିଲା ।

୧୯୨୧ ପର୍ଯ୍ୟନ୍ତ, ସିଂହଭୂମରେ ଓଡ଼ିଆ ଜାତୀୟତା ଆନ୍ଦୋଳନ କାର୍ଯ୍ୟ ଚଳାଉଥିବା ସମୟରେ ଗୋପବନ୍ଧୁ ବାବୁ ଗୋଦାବରୀଶ ବାବୁ ଏବଂ ପ୍ରଚାରକ ଅନନ୍ତ ମିଶ୍ର ବହୁବାର ଜାମସେଦ୍‌ପୁର ଆସି, ସିହଭୂମ ଉତ୍କଳ ସଭାର ପରିପୃକ୍ତି ପାଣ୍ଠି ପାଇଁ ଚାନ୍ଦା ସଂଗ୍ରହ କରି ନେଇଛନ୍ତି ।

ଗୋପବନ୍ଧୁ ଜନ୍ମ-ଶତବାର୍ଷିକୀ ପାଳନ ଅବକାଶରେ ସିଂହଭୂମିର ବିଭିନ୍ନ ସହର ଏବଂ ଗ୍ରାମାଞ୍ଚଳରେ ଯେଉଁ ସଭାସମିତିମାନ କରାଯାଇଛି, ଜାମସେଦ୍‌ପୁରରେ ଅନୁଷ୍ଠିତ ହୋଇଥିବା ସଭାମାନଙ୍କରେ ଯେପରି ପାଞ୍ଚ ଦଶ ହଜାର ଲୋକଙ୍କର ସମାଗମ ହେଲା ଏବଂ ଯେପରି ଉତ୍କଣ୍ଠାରେ ଶ୍ରୋତାମାନେ ମନ୍ତ୍ର-ମୁଗ୍ଧ ହୋଇ ଗୋପବନ୍ଧୁଙ୍କ ସମ୍ପର୍କରେ ଶୁଣିବାକୁ ଆଗ୍ରହ ଦେଖାଇଲେ ସେ ହୃଦୟଗ୍ରାହୀ ଦୃଶ୍ୟ ଓଡ଼ିଶାରେ ଅନ୍ୟ କୌଣସି ସ୍ଥାନରେ ହୁଏତ ଦେଖିବା ସମ୍ଭବ ହୋଇନଥିବ ।

ପ୍ରଥମ ଦିନ ସଭାରେ ମୁଁ ଲକ୍ଷ କରିଛି ଯେପରି ହଜାର ହଜାର ସଂଖ୍ୟାରେ ଏଠିକା ଲୋକେ ଧାଇଁ ଆସିଛନ୍ତି ଗୋପବନ୍ଧୁଙ୍କ ସମ୍ପର୍କରେ ଶ୍ରୋତାମାନଙ୍କର ବକ୍ତୃତା ଶୁଣିବାକୁ ନୁହେଁ, ଷାଠିଏ ବର୍ଷ ପରେ ଗୋପବନ୍ଧୁଙ୍କୁ ଥରେ ଆଖିରେ ଦେଖିବା ପାଇଁ ।

ଗୋପବନ୍ଧୁ ଏଠି ବଡ଼ ପ୍ରତ୍ୟକ୍ଷ । ସିଂହଭୂମିର ପ୍ରତ୍ୟେକ ଓଡ଼ିଆଙ୍କ ମନରେ ଆଉ ପ୍ରାଣରେ ଗୋପବନ୍ଧୁଙ୍କ ଭାବମୂର୍ତ୍ତି ବାସ୍ତବିକ ସବୁଦିନ ଧ୍ରୁବର ଆଉ ଶାଶ୍ବତ ! !

## ॥ ଶ୍ରଦ୍ଧାଞ୍ଜଳି ॥

କଥା ଅନେକ ରହିଗଲା, ଲେଖି ହେଲା ନାଇ ।

ଘଟଣା ଅନେକ ଛପିଗଲା ଜାଣି ହେଲା ନାଇ ।

ଏଇଠି ସେ ସୃଷ୍ଟି କରିଥିଲେ ଇତିହାସ । ଏଇଠି ସେ ଆରମ୍ଭ କରିଥିଲେ ଜାତୀୟ କାବ୍ୟର ଲେଖା ।

'ବନ୍ଦିନୀ'ଙ୍କୁ ଏଇଠି ସେ ବାନ୍ଧିଥିଲେ ମମତାରେ ।

ଶିକ୍ଷାର ପ୍ରଦୀପ ଜାଳି ଜାତୀୟ ସଂସ୍କୃତିକୁ ଚହଲାଇ ଥିଲେ ଏଇଠି ।

ମହାଭାରତୀୟ ଜାତୀୟ କଂଗ୍ରେସର ବାଣୀ ସମଗ୍ର ଓଡ଼ିଆ ଜାତି ଉଦ୍ଦେଶ୍ୟରେ ପ୍ରଥମେ ଉଚ୍ଚାରଣ କରିବାରେ ଏଇଠି ତାଙ୍କର ବିଦ୍ରୋହୀ ଏବଂ ବିପ୍ଳବୀ ରୂପଟି ଉଦ୍ଭାସିତ ହୋଇ ଉଠିଥିଲା ।

ଏଠି ତାଙ୍କ କାହାଣୀ ଅସରନ୍ତି ।

ଏଇଠି ତାଙ୍କ କୀର୍ତ୍ତି କୋଣାର୍କର କାରୁକାର୍ଯ୍ୟ ପରି ଅପୂର୍ବ ଆଉ ଅସାମାନ୍ୟ ! !

'ବନ୍ଧିତ' ଓ 'ନିଗୃହୀତ'ର ହାତଧରି ତଳୁ ଉଠାଇବାରେ ଏଇଠି ସେ ମହାତ୍ମା ଗାନ୍ଧୀଙ୍କଠୁ ବଳି ମହାନ୍ ।

ନରଙ୍କରେ ଅନ୍ଧକାର ଭିତରୁ ଆଲୋକକୁ ନେବାରେ ଏଇଠି ସେ ବିଶ୍ୱକବି ରବୀନ୍ଦ୍ରନାଥଙ୍କଠାରୁ ବଳି ମରମୀ ଏବଂ ଦରଦୀ ।

ସିଂହଭୂମିର ମାଟିରେ ସେ ଅମୃତର ପୁତ୍ର ।

ଏଠି ସମୟର ପ୍ରତିଟି ମୁହୂର୍ତ୍ତ ତାଙ୍କ ସାର୍ଥକ ଜନ୍ମର-ଶିହରଣରେ ସ୍ପନ୍ଦମାନ ।

ଏଠି ତାଙ୍କ 'ଜନ୍ମ-ଶତ-ବାର୍ଷିକୀ'ର ଉଦ୍‌ଯାପନ କାରୁଣ୍ୟ ନାହିଁ ଅଛି ଉଦ୍‌ବୋଧନର ଶଙ୍ଖଧ୍ୱନି !

ଏ ଧ୍ୱନି ମନ୍ଦ୍ରିତ ହେଉଥିବ ··· ଯୁଗ ଯୁଗ ଧରି ମହାକାଳର ଚେତନାରେ, ବିଶ୍ୱବିକାଶର ମଙ୍ଗଳମୟ ଧାରାରେ ନିଜ୍ୟର ଯୋଗରକ୍ଷି ।

ତଥାପି ଜନ୍ମ-ଶତ-ବାର୍ଷିକୀ ପାଳନ ବର୍ଷଟିର ଶେଷ୍ ଦିନରେ ଯଦି କିଛି କହିବାକୁ ପଡ଼େ ଆନୁଷ୍ଠାନିକ-ଧର୍ମ ରକ୍ଷା କରିବା ଦୃଷ୍ଟିରୁ ତେବେ ଏତିକି କହିବି···

ସେପାଖେ ବିଚ୍ଛିନ୍ନାଞ୍ଚଳ ସିଂହଭୂମିରେ ଛିନ୍ନମସ୍ତା ଉତ୍କଳ ମାତାର ଦୀର୍ଘଶ୍ୱାସ···

ଏ ପାଖେ ସତ୍ୟବାଦୀ ବନ-ବିଦ୍ୟାଳୟର ଧ୍ୱଂସାବଶେଷ ର ଘୋର ହାହାକାର···

ଏଇ ଶୂନ୍ୟତା ଭିତରେ ଶତ-ବାର୍ଷିକୀର ଯୋଉ ବର୍ଷଟି ଓଡ଼ିଶାରେ କଟିଗଲା, ଫୁଲ, ଦୀପ, ଧୂପର ଅର୍ଚ୍ଚନାରେ ଏବଂ ବହୁ ବକ୍ତୃତାର ହଟ୍ଟ-ଗୋଳ ଭିତରେ ଅଥଚ ସୁଦୂର ସିଂହଭୂମିରେ, ରାଜ୍ୟସ୍ତରୀୟ କମିଟି ତରଫରୁ ହେଉ ବା କୌଣସି ଅନୁଷ୍ଠାନ ତରଫରୁ ହେଉ, ଟିକିଏ ଶ୍ରଦ୍ଧାଞ୍ଜଳି ଦେଇ ଆସିବାରେ ଯୋଉ ଦାୟିତ୍ୱହୀନତା ପ୍ରକାଶପାଇଲା, ସେ ଅବସ୍ଥାରେ ଏ ଲେଖକ ଓଡ଼ିଶାର ପ୍ରାଣ-କେନ୍ଦ୍ର କଟକର 'ଗୋପବନ୍ଧୁ ବାଗ୍'ରେ ବସିଥିବା ଉତ୍କଳମଣିଙ୍କ ନିଶ୍ଚଳ ମୂର୍ତ୍ତି ଆଗରେ କ'ଣ କହିବ, କ'ଣ ଦେବ, କିଛି ଭାବି ପାରୁ ନାହିଁ···ଶ୍ରଦ୍ଧାଞ୍ଜଳି ନା ଅଶ୍ରୁ-ଅର୍ଘ୍ୟ !!

······